# ଗୃହ ଲକ୍ଷ୍ମୀ

## ଚତୁର୍ଥ ଭାଗ



৺ ଜଗବନ୍ଧୁ ସିଂହ

୩ୟ ସଂସ୍କରଣ




୧୯୫୯

ମୂଲ୍ୟ ଦୁଇଟଙ୍କା ପଚିଶ ନୂଆପଇସା ମାତ୍ର

# ଭୂମିକା

ଗୃହଲକ୍ଷ୍ମୀ ୩ୟ ଭାଗ ପ୍ରକାଶ ପାଇଛି ଏବଂ ଅନ୍ତର ମହଲରେ ପ୍ରବେଶ କରି ମା, ଭଉଣୀ, କନ୍ୟା ଝିଅମାନଙ୍କୁ ଆପ୍ୟାୟିତ କରିପାରିଛି ବୋଲି ବିଶ୍ୱାସ । ତେଣୁ ଅନେକ ବନ୍ଧୁଙ୍କ ଅନୁରୋଧରେ ୪ର୍ଥ ଭାଗ ଲେଖିବାକୁ ସାହସ କଲି । ଗୃହଲକ୍ଷ୍ମୀ ପୁସ୍ତକ ଲୋକପ୍ରିୟ ହୋଇଥିବାର ଦେଖି ଲାଭ ଆଶାରେ ପୁସ୍ତକଗତ ବିଷୟଗୁଡ଼ିକୁ କିଛି କିଛି ସଂଯୋଗ ବିଯୋଗ କରି "ଉତ୍କଳଲକ୍ଷ୍ମୀ" ନାମ ଦେଇ ଅନ୍ୟ ଗୋଟିଏ ପୁସ୍ତକ ପ୍ରକାଶ କରି ବିକ୍ରୀ କରୁଥିବାର ଦେଖିଲି । ଏହା ଗୃହଲକ୍ଷ୍ମୀର ମାହାତ୍ମ୍ୟ ବୋଲି ମନେ କରୁଛି । ତଥାପି ନୀତି ଦୃଷ୍ଟିରୁ ଜଣକର ଲେଖାକୁ ଅନ୍ୟ ଲୋକର ବୋଲି ପ୍ରକାଶ କରିବା ମହାପାପ । ଆଶାକରେ ପାଠକମାନେ ପୁସ୍ତକ କିଣିବା ସମୟରେ ସତର୍କ ହେବେ । ଅସଲ ଲେଖା, ନକଲ ଲେଖା ସହଜରେ ଧରାପଡ଼ିଯିବ । "ଡାଳ ପରେ ଡାଳ ପୁଣି ଡାଳ ତାର ପରେ ଏତେ ଡାଳ ସତ୍ତ୍ୱେ ଫୁଟି ଦିଶୁଛି ତା ଦେହ ।" ଅସଲ ନକଲ ପୁସ୍ତକ ମେଳ କରିଦେଲେ ଏହି ତତ୍ତ୍ୱ ଜଣାଯିବ । ଅଧିକ ଲେଖିବା ଅନାବଶ୍ୟକ ।

ଗୃହଲକ୍ଷ୍ମୀର ଉଦ୍ଦେଶ୍ୟ ସ୍ତ୍ରୀଶିକ୍ଷା । ସ୍ତ୍ରୀମାନେ ଘରେ ବସି ସଂସାରର ଅନେକ କଥା ଜାଣିପାରିବେ ଏବଂ ତଦନୁସାରେ ଆପଣାର ଜ୍ଞାନ ବୃଦ୍ଧିକରି ଘରେ ଘରେ ଗୃହଲକ୍ଷ୍ମୀ ହୋଇପାରିବେ । କେବଳ ପଢ଼ିଲେ ହେବ ନାହିଁ । ଯାହା ପଢ଼ିଲେ ଯାହା ଜାଣିଲେ ସେହି ପ୍ରକାରେ ଜୀବନକୁ ଗଢ଼ିବା ଦରକାର । ହିନ୍ଦୁ ଗୃହରେ ରମଣୀର ସ୍ଥାନ

ବଡ ଉଚ୍ଚରେ । ଯେଉଁମାନେ କହନ୍ତି ହିନ୍ଦୁର ରମଣୀକୁ ବଡ ନୀଚ ସ୍ଥାନ ଦେଇଛୁ ସେମାନେ ନିତାନ୍ତ ଭ୍ରାନ୍ତ, ସେମାନେ ବୋଧହୁଏ ଶାସ୍ତ୍ର ପଢ଼ିନାହାନ୍ତି । ହିନ୍ଦୁରମଣୀ ନିଜ ଗୁଣରେ ନିଜେ ସମାଜରେ ପରିଚିତା, ପୂଜ୍ୟା, ନମସ୍ୟା । ସୀତା, ସାବିତ୍ରୀ, ଦମୟନ୍ତୀ, ଦୁର୍ଗା, ଦୁର୍ଗାବତୀ ପ୍ରଭୃତି ଆର୍ଯ୍ୟରମଣୀଗଣ ଆଜି ସମାଜରେ ପୂଜା ପାଉଛନ୍ତି । ସେମାନେ ସ୍ୱୟଂ ପରିଚିତା, ସୀତା କେବଳ ରାମଙ୍କ ପତ୍ନୀ ବୋଲି ପରିଚିତା ନୁହନ୍ତି । ସେ ସତୀ, ସତୀତ୍ୱହିଁ ତାଙ୍କର ମହଦ୍‌ଗୁଣ । ମିସେସ୍ ରାମ ବୋଲି କେଉଁ ଶାସ୍ତ୍ରରେ ଲେଖା ନାହିଁ । ଯେଉଁଠି ଦେଖିବ ସୀତା ରାମ । ସୀତାଙ୍କର ଏଥିରୁ ଦେଖାଯାଏ ଅଗ୍ରାସନ । ଏହିପରି କେବଳ ସୀତାରାମ ନୁହେଁ, ଉମାମହେଶ୍ୱର, ରାଧାକୃଷ୍ଣ, ଲକ୍ଷ୍ମୀନାରାୟଣ ଇତ୍ୟାଦି । ଏହା ହିନ୍ଦୁର ଆଦର୍ଶ । ସେହି ଆଦର୍ଶ ଅନୁସାରେ ହିନ୍ଦୁର ବିବାହ ବେଳେ କନ୍ୟା ଆଗରେ ବର ପଛରେ ଯାଏ । ହିନ୍ଦୁର ବିବାହ ବନ୍ଧନ ଏକ ଅଚ୍ଛେଦ୍ୟ ବନ୍ଧନ । ସମ୍ପଦବେଳେ ବା ବିପଦ-ବେଳେ ହିନ୍ଦୁରମଣୀ ସହଧର୍ମିଣୀ ସକଳ ଧର୍ମକାର୍ଯ୍ୟ ହିନ୍ଦୁ ସହଧର୍ମ୍ମିଣୀ ସହିତ କରେ । ଏ ଆଦର୍ଶ ସତ୍ତ୍ୱେ ଯଦି କେହି କହେ ଯେ ହିନ୍ଦୁ ସମାଜରେ ନାରୀର କିଛି ସ୍ଥାନ ନାହିଁ ତହିଁକି ନାଚାର । ବର୍ତ୍ତମାନ ପାଶ୍ଚାତ୍ୟ ପବନ ଆସି ଭାରତରେ ମନ୍ଦ ମନ୍ଦ ଭାବରେ ବହୁଛି । ପାଶ୍ଚାତ୍ୟ ନାରୀ ବର୍ତ୍ତମାନ ଭାରତୀୟ ନାରୀ ସମାଜର ଆଦର୍ଶ । ପାଶ୍ଚାତ୍ୟ ସଭ୍ୟତା ଭାରତର ଆଦର୍ଶ । ଏହି ଆଦର୍ଶ ଲାଭ କରିବାକୁ ଭାରତର ନରନାରୀ ବର୍ତ୍ତମାନ ବ୍ୟାକୁଳ । ଭାରତ ତାର ଜାତୀୟ ଆଦର୍ଶକୁ ଫିଙ୍ଗି ଦେଇ ଅନ୍ୟ ଦେଶର ଆଦର୍ଶକୁ ଆଣି ଘରେ ପୂରାଉଛି । ଏହା ଫଳ କଣ ହେବ ? "ଅତୋଭ୍ରଷ୍ଟ ତତୋଭ୍ରଷ୍ଟ କୁମ୍ଭକାର ଭକ୍ଷ୍ୟର ବତ୍ ।" ଗୀତା କହୁଛି, "ସ୍ୱଧର୍ମ୍ମେ ନିଧନଂ ଶ୍ରେୟଃ ପରଧର୍ମ୍ମୋ ଭୟାବହଃ ।"

ପାଶ୍ଚାତ୍ୟ ଆଦର୍ଶ ପ୍ରସୂତ ସ୍ତ୍ରୀଶିକ୍ଷା, ସ୍ତ୍ରୀ ସ୍ୱାଧୀନତା, ଯୁବକ ଯୁବତୀଙ୍କ ଏକତ୍ର ପଠନ ପାଠନ, ସ୍ତ୍ରୀ ସ୍ୱାତନ୍ତ୍ର୍ୟ, ସ୍ତ୍ରୀ ସ୍ୱେଚ୍ଛାନୁବର୍ତ୍ତୀତା ସାହେବାଣୀ ଛବ ଛଟକ, ଗ୍ଭଲଚଲନ, ଆଗ୍ଭର, ବ୍ୟବହାର, ଅଶନ, ବସନ, ଭୂଷଣ, ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ, ସାମୟିକ ବିବାହ ବନ୍ଧନ, ଗ୍ଭଡ଼ପତ୍ର ଇତ୍ୟାଦି ଅନେକ ଆବର୍ଜନା ପ୍ରବେଶ କରି ଭାରତୀୟ ସମାଜକୁ ବ୍ୟତିବ୍ୟସ୍ତ କରୁଛି । ରକ୍ଷଣଶୀଳମାନେ ହା ହତୋସ୍ମି ହୋଇ ଗ୍ଭହିଁଛନ୍ତି । ନବ୍ୟସଭ୍ୟ ଯୁବକ ସମାଜ ଏ ପରିସ୍ଥିତିକି ଆନନ୍ଦ ଅର୍ଘ୍ୟ ଦେଇ ବରଣ କରୁଛି, ଏହି ବ୍ୟାମୋହ ଭାରତକୁ ଗ୍ରାସ କରୁଛି । ଏ ପରିସ୍ଥିତି ଗୃହଲକ୍ଷ୍ମୀ ନାରୀ ସମାଜ ଉପରେ କେତେଦୂର ପ୍ରଭାବ ପକାଇବ କହିପାରୁ ନାହିଁ । ତଥାପି କର୍ତ୍ତବ୍ୟାନୁରୋଧରେ ସାନ୍ନିପାତିକ ରୋଗୀଙ୍କ ବୃତାନ୍ତର ବଟିକା ଦେବା ନ୍ୟାୟରେ ଗୃହଲକ୍ଷ୍ମୀ ସମାଜ ସମକ୍ଷରେ ଠିଆ ହେବାକୁ ସାହସ କରୁଛି । ଭାରତରୁ ଭାରତୀୟ ସଭ୍ୟତା ଏକାବେଳକେ ମୂଳପୋଛ ହୋଇନାହିଁ ପୁନଶ୍ଚ ମହାତ୍ମା ଗାନ୍ଧୀ ପ୍ରଭୃତି ଏ ଯୁଗର ନେତାମାନେ ପୁଣି ଭାରତୀୟ ସଭ୍ୟତାକୁ ଫେରାଇ ଆଣିବାକୁ ଡାକ ପକାଇଛନ୍ତି । କାଟି ପିନ୍ଧି କୁଟି ଖାଅ ନୀତି ପ୍ରଗ୍ଭର କରୁଛନ୍ତି । ପାଶ୍ଚାତ୍ୟ ସଭ୍ୟତା ଭାରତର ଗତି ମୁକ୍ତିଦାତା, ତ୍ରାତା ନୁହେ ବୋଲି କେତେ ଲୋକ ବୁଝୁଛନ୍ତି । ତେଣୁ ବିଗ୍ଭରୁଛି ଗୃହଲକ୍ଷ୍ମୀ ନିଜ ଶକ୍ତି ବଳରେ ପ୍ରଭାବ ବିସ୍ତାର କରିପାରେ ।

ଆର୍ଯ୍ୟନାରୀ ଭାରତର ଲକ୍ଷ୍ମୀ ସରସ୍ୱତୀ ।<br>
ଘରେ ଘରେ ଅଦ୍ୟାବଧି ପୂଜା ପାଉଛନ୍ତି ॥<br>
ସୀତା ସାବିତ୍ରୀର ଦେଶ ଏ ପୁଣ୍ୟ ଭାରତ ।<br>
ସଂସ୍କୃତି ସଭ୍ୟତା ତାର ଅଟୁଛି ସ୍ୱତନ୍ତ୍ର ॥

( । )

ଆଦର୍ଶ ପୁରୁଷ ନାସ୍ତି ଏନେ ଭାରତର ।
ଜଗତର ଗୁରୁ ଥିଲେ ମନରେ ସୁମର ॥
ରଖି ନ ପାରିବ ଯେବେ ସେ ଯଶ କୀରତି ।
ଲଭିବ ଭାରତ ଅବିଲମ୍ବେ, ଅଧୋଗତି ॥
ପ୍ରାଚୀନ ଆଦର୍ଶ ଧରି କଲେକ ପ୍ରଗତି ।
ପୁଣି ଭାରତ ଲଭିବ ସକଳ ଉନ୍ନତି ॥
ସ୍ୱଧର୍ମେ ନିଧନ ଶ୍ରେୟ ଗୀତି ଭାରତର ।
ସେ ଧର୍ମ୍ମ ନ ଛାଡ଼ ଭାରତୀୟ ନାସ୍ତି ନର ॥
ଗୃହେ ଗୃହେ ଲକ୍ଷ୍ମୀରୂପା ହୋଇଲେ ରମଣୀ ।
ଶାନ୍ତି ସୁଖ ବିରାଜିବ ଗୃହେ ଗୃହେ ପୁଣି ॥

ଶ୍ରୀ ଜଗବନ୍ଧୁ ସିଂହ



## ସୂଚିପତ୍ର

# ଗୃହଲକ୍ଷ୍ମୀ

## ପ୍ରଥମ ପରିଚ୍ଛେଦ

ସ୍ତ୍ରୀ—ହଇହେ ଆଉ ଗୃହଲକ୍ଷ୍ମୀ ଲେଖିବ ନାହିଁ କି ?

ସ୍ୱାମୀ—ଖାଲି ଗୁଡ଼ାଏ ଲେଖିଲେ ତ ହେବ ନାହିଁ, ଲେଖାକୁ ପଢ଼ୁଛନ୍ତି କେତେ ଜଣ ? ଖାଲି ପଢ଼ିଲେ ତ ହେବ ନାହିଁ, ପଢ଼ିକରି କାର୍ଯ୍ୟରେ କରୁଛନ୍ତି କେତେ ଜଣ ? ଯେତିକି ଲେଖା ହେଲାଣି ସେଇତକ ପାଳି କାମ କରୁଥିଲେ ସବୁ ଗୃହରେ ଲକ୍ଷ୍ମୀ ବିରାଜମାନ କରି ସାରନ୍ତେଣି । ତା କିଏ କେଉଁ କରୁଛନ୍ତି ? ଯାହା ପଢ଼ିଲେ ସବୁ ତ ଭଣ୍ଡାରି ଜଲାରେ ଗଳି ଯାଉଛି । ମନ ଧ୍ୟାନ ଦେଇ କାର୍ଯ୍ୟରେ କଲେ ସିନା ହେବ ।

ସ୍ତ୍ରୀ—ଭଣ୍ଡାରି ଜଲା କିଏ ମ ?

ସ୍ୱାମୀ—ସେ କଥା ଜାଣ ନାହିଁ ? ଭଣ୍ଡାରି କାନ ଫୋଡ଼ି ଦେଇଥାଏ, ଗୋଟାଏ ଗୋଟାଏ ଜଲା ବା ଫୋଡ଼ ଥାଏ । ଭଣ୍ଡାରି ଜଲା ବୋଇଲେ କାନ । କହନ୍ତି ନାହିଁ—ଏକାନେ ପଶି ସେ କାନେ ଗଲା । ତା ଅର୍ଥ କେବଳ ଶୁଣୁଛନ୍ତି, ମାତ୍ର କାର୍ଯ୍ୟରେ କିଛି କରୁ ନାହାନ୍ତି ।

ସ୍ତ୍ରୀ—ଏକାଦିନକେ କିଏ ସବୁ ଶିଖି ପକାଇବେ, ଶିଖୁ ଶିଖୁ ଶିଖିବେ ସିନା !

ସ୍ୱାମୀ—ମୁଁ ତ କହୁନାହିଁ ସମସ୍ତେ ଏକାଦିନକେ ଶିଖିବେ । ମୁଁ କହୁଛି ସେ ଦିଗକୁ ମନ ଯାଉନାହିଁ । ମନ ନ ଗଲେ ହଜାରେ ପୋଥି ପଢ଼ିଲେ କଣ ହବ ? ମନକୁ ଯେଉଁ ଆଡ଼କୁ ନେବ ସେଆଡ଼େ ସେ ଲାଗି ରହିବ । ମନ ଚଞ୍ଚଳ କଲେ କିଛି କରି ପାରିବ ନାହିଁ । ଉଦ୍ଧବ ଶ୍ରୀକୃଷ୍ଣଙ୍କୁ ଅନେକ ତତ୍ତ୍ୱ ପଚାରିଲେ, ଶେଷକୁ ମହାପ୍ରଭୁ କହିଲେ—

ମନ ତୋହର ନିଜ ଗୁରୁ
ଉଦ୍ଧବ କେତେ ତୁ ପଚାରୁ ।

ଖାଲି ତତ୍ତ୍ୱ କଥା ପଚାରି ଗୁଡ଼ାଏ ଶୁଣିଲେ କି ଲାଭ ଅଛି ? ମନ ସେ ଦିଗକୁ ଯାଉ, ତତ୍ତ୍ୱ କଥାକୁ କାର୍ଯ୍ୟରେ ଲଗାଉ, ତେବେ ବାଞ୍ଛିତ ଫଳ ପାଇବ । ସେହିପରି ଗୃହଲକ୍ଷ୍ମୀ ପୁସ୍ତକ ପଢ଼ି ତାର ମର୍ମ୍ମ ବୁଝି ତାକୁ କାମରେ ଲଗାଅ ।

ସ୍ତ୍ରୀ—ଆମେ ଯେତେ ପାରୁ ତେତେ କାମରେ ଲଗାଉଛୁଁ । ଏକାବେଳକେ ଠିକିଗିଲା କଥାକୁ କିଏ ପାରିବ ! ଘରେ ତ ବାର ଜଞ୍ଜାଳ, ବାର ପାଇଟି, ଆମର କଣ ଗୋଟାଏ ପାଇଟି ହୋଇଛି ? ଆମେ ତ ପାଇଟି କରି କୁରୁମ ହୋଇ ଗଲୁଣି ।

ସ୍ୱାମୀ—ସତେ ! ତେମେ ତ କାହିଁ କୁରୁମ ହେବା ପରି ମୋ ଦିବ୍ୟ ଚକ୍ଷୁକୁ ଦିଶୁ ନାହିଁ ? ତେମେ ତ ମଣିଷ ପରି ମଣିଷ ଦେଖୁଛି—ଆଉ କୁରୁମ ହେବା ଲକ୍ଷଣ ତ କିଛି ଦିଶୁ ନାହିଁ । ଯଦି ହୋଇଥାଅ ତେବେ ତ ଗୋଟାଏ ଯଶ କୀର୍ତ୍ତି ତମ ନାମରେ ଇତିହାସ ଲେଖି ରଖିବ ।

ସ୍ତ୍ରୀ—କୁରୁମ ନା ବିଖ୍ୟାତ ହେଲି କାହିଁକି ?

ସ୍ୱାମୀ—ଜାଣି ନାହିଁ କାହିଁକି ? ଆହେ ସେମାନେ ଗୁଣ୍ଡିଚା ମନ୍ଦିର ତିଆରି ହେଉଥିବା ବେଳେ ପଥର ବୋହି ବୋହି କୁରୁମ ହୋଇଗଲେ । କେଉଁ ଯୁଗରେ ଇନ୍ଦ୍ରଦ୍ୟୁମ୍ନ ମହାରାଜା ଗୁଣ୍ଡିଚାମନ୍ଦିର ତୋଳାଇଥିଲେ । ସେକାଳରୁ ଆଜି ପର୍ଯ୍ୟନ୍ତ ଲୋକେ ଏହି କଥା କୁହାକୁହି ହେଉଛନ୍ତି । ଏ ତ ଊଣା ଭାଗ୍ୟର କଥା ନୁହେଁ ।

ସ୍ତ୍ରୀ—ମୋ ଭାଗ୍ୟକଥା କାହିଁକି କହୁଛ ! ମୋ ଭାଗ୍ୟ ତ ପୋଡ଼ି ବୋଇଲେ ଜଳଯାଉଛି । କେତେ ଲୋକ ମରି ଯାଉଛନ୍ତି ମୁଁ ନିଆଁ ଲଗିକି ମରଣ ହେଉ ନାହିଁ । କଳିକାଳରେ ଯେ ମରିଯାଉଛି ସେ ତରି ଯାଉଛି ।

ସ୍ୱାମୀ—ଆହେ ମରିବା ଟା ତ ମଣିଷ ହାତରେ ନାହିଁ । ଲୋକେ ଇଚ୍ଛାକଲେ କିମ୍ବା ଏପରି ତୁଣ୍ଡରେ କହିଲେ ଯେବେ ମରି ଯାଉ-ଥାନ୍ତେ, ତେବେ କେହି ଏକଥା ତୁଣ୍ଡରେ ଧରନ୍ତା ନାହିଁ । ମଣିଷ ଶରୀର ଗୋଟାଏ ଘଣ୍ଟା, ବିଧାତା ତେଣୁ ଏ ଘଣ୍ଟାରେ ଚାବି ଦେଇ ଛାଡ଼ି ଦେଇଛି । ଯେତେବେଳେ ଚାବି ସରିଯିବ, ସେତେବେଳେ କେହି ମୁହୂର୍ତ୍ତେ ରଖି ପାରିବ ନାହିଁ ।

ହାବୋଡ଼ ଯିବ ସେ ଅତର୍କେ ଆସି,
ଗଳାରେ ଲଗାଇ ଦେବ ଦୃଢ଼ ଫାଶୀ ।
ଅଚେତା କରି ସେ ନେଇଯିବ ଟାଣି,
କେଉଁଠାକୁ ନେବ ନ ପାରିବ ଜାଣି ।
ନିତିପ୍ରତି ଲୋକ ଦେଖୁଛୁ ଏମନ୍ତ,
ତଥାପି ପାଞ୍ଚଇ ଜୀଇବ ନିୟତ ।
ପଛେ ବସି କାଳ କରେ ମୃଦୁ ହାସ,
ଧନ୍ୟ ରେ ମାନବ ଧନ୍ୟ ତୋ ବିଶ୍ୱାସ ।

ବିଶ୍ୱାସେ ପିଉଛି ଏ ବିଷୟ-ବିଷ,
ପୃଥିବୀ ଜିଣିବ ବାନ୍ଧୁଛି ସାହସ ।

ସ୍ତ୍ରୀ—ହଁ, ସେ କଥା ତ ନିତି ଦେଖୁଥାଇଁ, ଶୁଣୁଥାଇଁ, ତଥାପି ମଣିଷ ଆପଣାକୁ ଅମର ବୋଲି ବିଶ୍ୱାସ କରି ସବୁକାମ କରେ । ମଣିଷ ବିଷୟ ନେଇ ଏପରି ପାଗଳ ହୋଇପଡେ ଯେ ସମୟରେ ଈଶ୍ୱରଙ୍କୁ ଭୁଲିଯାଏ । ଆହାର, ନିଦ୍ରା, ଭୟ, ମୈଥୁନକୁ ନେଇ ପ୍ରଧାନ ସମ୍ବଳ କରି ବସେ । ଏ ସବୁ ଗୁଡ଼ାକ ପଶୁ-ଧର୍ମ । ଏ ବିଷୟରେ ପଶୁ ଓ ମଣିଷ ମଧ୍ୟରେ କିଛି ପ୍ରଭେଦ ନାହିଁ ।

ସ୍ୱାମୀ—ସଂସାରରେ ଏକଥା ନିତି ଦେଖାଯାଉଛି । କେତେ ଜଣ କାର୍ଯ୍ୟରେ କରୁଛନ୍ତି ?

ସ୍ତ୍ରୀ—କାର୍ଯ୍ୟରେ କରୁନାହାନ୍ତି ସତ, କିନ୍ତୁ କାର୍ଯ୍ୟରେ କରୁଥିଲେ ଲୋକେ ଏତେ କାମ କରି ପାରନ୍ତେ ନାହିଁ । ମୃତ୍ୟୁ ଚିନ୍ତା ସବୁବେଳେ ମନେ ପକାଇଲେ ଲୋକେ କିଛି କାମ କରି ପାରିବେ ନାହିଁ ।

ସ୍ୱାମୀ—ହଁ, ସେକଥା କେତେକ ପରିମାଣରେ ସତ । ମଣିଷ ମରିବା କଥାଟାକୁ ଭାରି ଡରେ । କିନ୍ତୁ ମାୟା ହେତୁ ସେ ମନେକରେ ସେ ବହୁକାଳ ବଞ୍ଚିବ । ବଞ୍ଚିବା ଆଶାରେ ମନୁଷ୍ୟ ସବୁ କାମ କରେ । ମଣିଷ ଯେତେଦିନ ବଞ୍ଚିଥିବ କର୍ମ କରିଯିବ । କର୍ମ କରିବା ମଣିଷର ଧର୍ମ । ମରିଯିବ ବୋଲି ସେ ଖାଲି ବସି ରହିବ, ଏହା ମଣିଷର ଧର୍ମ ନୁହେଁ । ପ୍ରାଣୀ ମାତ୍ରକେ ଅବଶ୍ୟ ଦିନେ ମରିବେ । ଏ କଥାଟି ନିର୍ଘଣ୍ଟ ସତ୍ୟ । ଏତ ଜଣାଶୁଣା କଥା । ତେବେ ପ୍ରାଣ ଥିବାଯାକେ ମଣିଷ କର୍ମ କରିଯିବ ।

ସ୍ତ୍ରୀ—କହୁଛ ତ ମଣିଷ ଦିନେ ନିଶ୍ଚୟ ମରିବ । ତେବେ ଏତେ ଜଞ୍ଜାଳରେ ପଶିବ କାହିଁକି ?

ସ୍ୱାମୀ—ଜଞ୍ଜାଳରେ ନ ପଶି କରିବ କଣ ? ମଣିଷ ତ ପୁଣି ଖାଇବ ! ଭଗବତ କହୁଛି :—

ଏ ଜୀବ ଆହାର ଲମ୍ପଟେ,
ବନ୍ଧନ ଭବସିନ୍ଧୁ ତଟେ ।

ଆହାର ସଙ୍ଗେ ମଣିଷ ଜୀବନଟା ବନ୍ଧା ରହିଛି । ଏହି ଖାଦ୍ୟ ପାଇଁ ସବୁ ଜଞ୍ଜାଳରେ ମଣିଷ ପଶେ । ମୁଁ ଖାଇବି ଜଞ୍ଜାଳଜାଲ କ୍ରମେ କ୍ରମେ ପ୍ରସାରିତ ହୋଇ ମୋ ପରିବାର ଖାଇବ, ମୋ ଗ୍ରାମ ଖାଇବ, ମୋ ଜିଲ୍ଲା ଖାଇବ, ମୋ ପ୍ରଦେଶ ଖାଇବ, ମୋ ଦେଶ ଖାଇବ, ମୋ ଜାତି ଖାଇ ପିଇ ପିନ୍ଧି ସୁଖରେ ରହିବ ଇତ୍ୟାଦିରେ ପରିଣତ ହୁଏ । ମଣିଷ ଏହି ବାସନା ଚରିତାର୍ଥ କରିବାପାଇଁ ଆପଣା ଆପଣା ମଧ୍ୟରେ, ଦେଶ ଦେଶ ମଧ୍ୟରେ, ଜାତି ଜାତି ମଧ୍ୟରେ, ନାନା ପ୍ରକାର କଳଗୋଳ, ମାରପିଟ, ଯୁଦ୍ଧ ଆଦି କରେ । ସବୁ ଯୁଦ୍ଧର ମୂଳକାରଣ ଏହି ଖାଦ୍ୟ ପ୍ରଶ୍ନ ।

ସ୍ତ୍ରୀ—ମହାଭାରତ ଯୁଦ୍ଧ କଣ ଏ ଖାଦ୍ୟପ୍ରଶ୍ନ ହେତୁ ହୋଇଥିଲା ?

ସ୍ୱାମୀ—ନୁହେଁ କଣ ? ଦୁର୍ଯ୍ୟୋଧନ ଚାହିଁଥିଲା ନିଜେ ରାଜା ହୋଇ ସବୁ ଭୋଗ କରିବ, ପାଣ୍ଡବମାନଙ୍କୁ କିଛି ଦେବ ନାହିଁ । ଶେଷରେ ପାଣ୍ଡବମାନେ ଖାଇବାକୁ ନ ପାଇ ବାରଦ୍ୱାର ଖୁଣ୍ଟିପିଣ୍ଡା ହେଲେ । ବିରାଟ ଘରେ ଅନ୍ନ ପାଇଁ ନାନାକର୍ମରେ ନିଯୁକ୍ତ ହେଲେ । କେତେ କଷ୍ଟ ପାଇଲେ, ଶେଷରେ ବନବାସୀ ହେଲେ ।

ସ୍ତ୍ରୀ—ବର୍ତ୍ତମାନ ଯେଉଁ ଯୁଦ୍ଧ ଇଉରୋପରେ ଲାଗିଛି, ସେ କଣ ସେହି ଖାଦ୍ୟ ପାଇଁ ଲାଗିଛି ?

ସ୍ୱାମୀ—ନିଶ୍ଚୟ, ଜର୍ମ୍ମାନୀର ଇଚ୍ଛା ସେ ସବୁ ରାଜ୍ୟକୁ ଗ୍ରାସ କରି ତା ଅଧୀନରେ ରଖିବ । ବେଶି ରାଜ୍ୟ ମିଳିଲେ ବେଶି ଧନଲାଭ ହେବ, ଜର୍ମ୍ମାନୀ ଲୋକେ ଖାଇ ପିଇ ଆହୁରି ସୁଖରେ ରହିବେ । ଏହି ହେତୁ ହାଣକାଟ, ମାରି, ଗୁଳିଗୋଳା ପକାଇ ଗ୍ରାମ ଘର ଦ୍ୱାର ଧ୍ୱଂସ କରି । ଜର୍ମ୍ମାନୀ ଏହି ଇଚ୍ଛାରେ ଯେ ବିରୁଦ୍ଧାଚରଣ କଲା, ତାକୁ ମାରିଦିଅ, ତା ଘର ପୋଡ଼ିଦିଅ, ତା ଗ୍ରାମ ନଷ୍ଟ କରି ଦିଅ । ଏହି ଯାହା ତ ବର୍ତ୍ତମାନ ଇଉରୋପରେ ଲାଗିଛି । କେତେଦିନ ଯେ ଲାଗିବ ଭଗବାନଙ୍କୁ ଜଣା ।

ସ୍ତ୍ରୀ—ଜର୍ମ୍ମାନୀ ରାଜ୍ୟ ନେବ ତ ନେବ, ଏ ଲୋକଗୁଡ଼ାଙ୍କୁ ମାରିପକାଉଛି, ଘରଦ୍ୱାର ପୋଡ଼ି ପକାଉଛି କାହିଁକି ?

ସ୍ୱାମୀ—ଏପରି କଲେ ଜର୍ମ୍ମାନୀର ପ୍ରତାପ ଦେଖି ଲୋକେ ଡରିଯିବେ, ଭୟରେ ରାଜ୍ୟ ଛାଡ଼ିଦେବେ । ଯେଉଁମାନେ ଡରି ଯାଉଛନ୍ତି, ସେମାନେ ଜର୍ମ୍ମାନୀଠାରେ ଶରଣ ପଶି ଯାଉଛନ୍ତି । ଯେଉଁମାନେ ବିଚାରୁଛନ୍ତି ଜର୍ମ୍ମାନୀ କ'ଣ ଆମଠାରୁ ଏଡ଼େ ବଳୁଆ ! ଆଚ୍ଛା, ଦେଖାଯାଉ । ଆମେ ରାଜ୍ୟ ଛାଡ଼ିବୁଁ ନାହିଁ । ବଳ କଷାକଷି ହେବା । ମରିଗଲେ ଯିବା ପଛକେ ଶରଣ ପଶିବା ନାହିଁ । ତାଙ୍କ ସଙ୍ଗେ ଲଢ଼ାଲଢ଼ି, ବଳ ପରୀକ୍ଷା ଚାଲିଛି । ଯାହାର ବେଶି ଯୋର୍ ହେବ ମୁଲକ ତାର ହେବ ।

ସ୍ତ୍ରୀ—ଆଗେ ଯେପରି ମାଲ କୁସ୍ତି ହେଉଥିଲା, ପାଇକ ଖଣ୍ଡାୟତମାନେ ଲଢ଼ାଲଢ଼ି ହେଉଥିଲେ, ଏବେ କଣ ସେହିପରି ଲଢ଼ାଲଢ଼ି ହେଉଛନ୍ତି ?

ସ୍ୱାମୀ—ଆହେ ନାହିଁ ହେ । ଏବେ ତ ଆକାଶରେ ଉଡ଼ାଜାହାଜରେ ରହି ଯୁଦ୍ଧ କରୁଛନ୍ତି । ଉପରୁ ଗୁଳିଗୁଳା ପଡ଼ୁଛି,

ସେଥିରୁ ନିଆଁ ବାହାରି ମଣିଷ, ଘରଦ୍ୱାର ପ୍ରଭୃତି ପୋଡ଼ି ଭସ୍ମ କରି ଦେଉଛି । ଏଣେ ବଡ଼ ବଡ଼ ତୋପମାନ ମଗମଗ ହେଉଛନ୍ତି । ଏଥିରେ ଦିନକେ କୋଟି କୋଟି ଟଙ୍କା ଖର୍ଚ୍ଚ ହେଉଛି, ମଣିଷ ମାରି ସେମାନଙ୍କ ରାଜ୍ୟ ନେବାପାଇଁ ଏତେ ଆୟୋଜନ ଏତେ ଖର୍ଚ୍ଚ । କେତେ ପ୍ରକାର ଅସ୍ତ୍ର ବାହାରୁଛି । ଆଗ୍ନେୟାସ୍ତ୍ର, ମେଘାସ୍ତ୍ର, ମୋହନାସ୍ତ୍ର, କେତେ ଅସ୍ତ୍ର ।

ସ୍ତ୍ରୀ—ଜର୍ମାନିର କଣ କିଛି ଖର୍ଚ୍ଚ ହେଉ ନାହିଁ ?

ସ୍ୱାମୀ—କ୍ଷତି ଉଭୟ ପକ୍ଷର । ଉଭୟ ପକ୍ଷର ଧନଜନ କ୍ଷତି ହେଉଛି । ଯେ ଯେତେ ଧନ ବ୍ୟୟ କରି ପାରିବ, ଯେତେ ଜନବଳ ଜୁଟାଇ ପାରିବ, ଶେଷରେ ସେ ଜିତିବ ।

ସ୍ତ୍ରୀ—ଆଚ୍ଛା, ଆମ ଦେଶରେ କଣ ଏପରି ଆକାଶ ଯାନ, ଜଳଯାନ ନ ଥିଲା ?

ସ୍ୱାମୀ—ଥିଲା । ରାମାୟଣ ପଢ଼ିଛ ପରା ? ରାମଚନ୍ଦ୍ର ପୁଷ୍ପକ ଯାନରେ ଲଙ୍କାରେ ଯୁଦ୍ଧ ସାରି ଫେରିଲେ । ଇନ୍ଦ୍ରଜିତ ମେଘ ଉପରେ ଥାଇ ଯୁଦ୍ଧ କରୁଥିଲା । ମହାଭାରତ ଯୁଦ୍ଧରେ ତ କେତେ ପ୍ରକାର ଅସ୍ତ୍ର ବ୍ୟବହୃତ ହୋଇଥିଲା—ନାଗଫାଶ,ଭୁଜବାଣ,ବଜ୍ରବାଣ, ମାଳବାଣ, ମୋହନାସ୍ତ୍ର, ଆଗ୍ନେୟାସ୍ତ୍ର, ସମ୍ମୋହନାସ୍ତ୍ର, ମେଘାସ୍ତ୍ର ପ୍ରଭୃତି ସବୁ ଥିଲା । ଆକାଶ ଯାନ, ମଟର ଯାନ ସବୁ ଥିଲା । ତାର ଆକାର ନାନା ପ୍ରକାରର ଥିଲା । ଜଣ ଜଣକର ଗୋଟାଏ ଗୋଟାଏ ଆକାରର ଥିଲା—ବୃଶ୍ଚିକ ବାହନ, ବୃଷଭ ବାହନ, ମଇଁଷି ବାହନ, ଢ଼ିଙ୍କି ବାହନ ଇତ୍ୟାଦି ଇତ୍ୟାଦି । ତୋପବାଜି, ବମ୍ବାଜି, ହାଉଇ ପ୍ରଭୃତି କେତେ ପ୍ରକାରର ବାଣ । ଏବେ ଏଥିରୁ କେତେକ ଅଛି ।

ସ୍ତ୍ରୀ—ହଇହେ, ଆମ ଦେଶରେ କଣ ବେତାର ଯନ୍ତ୍ର ଥିଲା ?

ସ୍ୱାମୀ—ଥିଲାମ, ସବୁ ଥିଲା । ପଢ଼ିନାହଁ, ଦ୍ୱାରକାରେ ଥାଇ ଶ୍ରୀକୃଷ୍ଣ ଗରୁଡ଼କୁ ଡାକିଲେ । ସେ ରମ୍ୟକ ଦ୍ୱୀପରୁ ତତ୍‌କ୍ଷଣାତ୍ ଆସି ପହଞ୍ଚିଲା । ଆହୁରି ଅନେକ ଅଦ୍ଭୁତ କଥାମାନ ଥିଲା । ଆମ ଦେଶବାସୀ ମନୋବିଜ୍ଞାନର ଚରମସୀମାକୁ ଯାଇଥିଲେ, ଏ ଶରୀର ଛାଡ଼ି ଅନ୍ୟ ଶରୀରରେ ପଶି ଯାଉଥିଲେ । ହନୁମାନ ପରା ଭ୍ରମର ରୂପରେ ଯାଇ ଅଶୋକବନରେ ସୀତାଙ୍କୁ ଠାବ କରିଥିଲା । ଶଙ୍କରାଚାର୍ଯ୍ୟ ତ ପରକାୟ ପ୍ରବେଶ କରିଥିଲେ । ଯୋଗୀମାନେ ଛ ଛ ମାସ ମାଟିତଳେ ପୋତି ହୋଇ ରହୁଥିଲେ । ନାରଦ ପାଦୁକା ଯନ୍ତ୍ରରେ ଆକାଶ ପାତାଳ ବୁଲୁଥିଲେ । ସବୁ ଥିଲା, ସବୁ ଯାଇଛି । ଆମ ଦେଶ ଅଜ୍ଞାନ ଅନ୍ଧାରରେ ବୁଡ଼ି ରହିଛି ।

ସ୍ତ୍ରୀ—ଆଚ୍ଛା ହଇ ହେ ! ଆମ ଘରେ ଯେଉଁ ବିଜୁଳିବତି ଖଞ୍ଜା ଯାଇଛି, ବିଜୁଳି ପଙ୍ଖା ଖଞ୍ଜା ଯାଇଛି, ଯେପରି ପାଣିକଳ ହୋଇଛି, ଏ ସବୁ କଣ ଥିଲା ?

ସ୍ୱାମୀ—ଥିଲା ହେ, ସବୁ ଥିଲା । ରାମାୟଣରେ ପଢ଼ିଥିବ ତ ରାବଣ ଅଗ୍ନି, ବରୁଣ, ବାୟୁ, ଏମାନଙ୍କୁ ଚାକର କରି ରଖିଥିଲା । ଏମାନେ ତାର ସେବା ଖଟୁଥିଲେ । ଏ ବର୍ଣ୍ଣନାରୁ ବୁଝି ପାରୁ ନାହଁ, ଏ ସେହି କଥାକୁ କବି ବର୍ଣ୍ଣନା କରିଛନ୍ତି । ଦେଖୁନାହଁ ବିଜୁଳି ଆଲୁଅ ଆମ ଘରେ ସବଦା ବନ୍ଧା ହୋଇ ରହିଛି । ହାତ ମାରି ଡାକିଲେ ଆସି ଆଲୁଅ ଦେଲା, କାମ ସରିଲେ ଯା କହି ହାତ ମାରିଦେଲେ ତା କୋଠରୀରେ ଯାଇ ବିଶ୍ରାମ କଲା । ଅଗ୍ନିଙ୍କ ଆମ ଦେଶରେ ଦେବତା ବୋଲି କହନ୍ତି, ପୂଜା କରନ୍ତି । ବରୁଣଦେବତା ସେହିପରି କାମ ଖଟୁଛନ୍ତି, ବାୟୁ ଦେବତା ପଙ୍ଖା କରୁଛନ୍ତି ।

ସ୍ତ୍ରୀ—ଆଚ୍ଛା ଏ ସବୁ ଯେବେ ଥିଲା, ଏବେ ଲୋକେ କରି ପାରୁ ନାହାନ୍ତି କାହିଁକି ?

ସ୍ୱାମୀ—ଲୋକଙ୍କର ସେପରି ଶିକ୍ଷା ଦୀକ୍ଷା ନାହିଁ, ତେଣିକି ମନ ଗଳାଇ ନାହାନ୍ତି । ମନ ନ ଗଳାଇ ପାରିଲେ କେଉଁ କାମ ହେବ ? ଭାଗବତ କହୁଛି ପରା:—

ମନ ତୋହର ନିଜଗୁରୁ,
ଉଦ୍ଧବ କେତେ ତୁ ପଚାରୁ ।

ସ୍ତ୍ରୀ—ସେ ଦେଶ ଲୋକେ ଏତେ କାମ କରି ପାରୁଛନ୍ତି, ଆମ ଦେଶ ଲୋକେ କାହିଁକି କରିପାରୁ ନାହାନ୍ତି ? ଆମ ଦେଶ ପାଠ କଣ ସେ ଦେଶକୁ ଗଲା ଭାରି ?

ସ୍ୱାମୀ—ଯାଇଛି, ସବୁ ଯାଇଛି । ଜର୍ମାନୀ ଦେଶରେ କେତେ ବଡ଼ ବଡ଼ ପଣ୍ଡିତମାନେ ଦିନରାତି ଲାଗିପଡ଼ି ଆମ ଦେଶ ପୋଥିପତ୍ର ନେଇ ପଢ଼ୁଛନ୍ତି, ତାଙ୍କ ଦେଶ ଭାଷାରେ ତର୍ଜମା କରୁଛନ୍ତି । ସେଥିରେ କଣ ସାର ଅଛି ତା'ସବୁ ବୁଝିଛନ୍ତି । ବେଦବେଦାନ୍ତ, ଗୀତା, ରାମାୟଣ, ମହାଭାରତ ଆଦି ସବୁ ଗ୍ରନ୍ଥ ସେ ଦେଶରେ ପଢ଼ା ହେଉଛି । ଆମଦେଶ ପାଠୁଆ ବାବୁମାନଙ୍କର ବିଶ୍ୱାସ,ଏଥିରେ ଯାହା ସବୁ ଲେଖା ଅଛି, ସବୁ ମିଛ । ସେ ଦେଶଲୋକେ ମନେ କରୁଛନ୍ତି, ହିନ୍ଦୁଜାତି ଦିନେ ଭାରି ଜ୍ଞାନୀ ଥିଲେ । ସେମାନେ ଯାହା ଲେଖି ଯାଇଛନ୍ତି ସେଥିରେ ଅବଶ୍ୟ ସତ୍ୟ ଅଛି । ସେ ସତ୍ୟକୁ କିପରି କାର୍ଯ୍ୟରେ ପରିଣତ କରିବା ପାଇଁ ଦିନ ରାତି ଚିନ୍ତା କରୁଛନ୍ତି । ଯାହାର ମନ ଯେତେ, ତାହାର ପ୍ରଭୁ ତେତେ । ଯାହାର ଯେପରି ଭାବନା, ପ୍ରଭୁ ତାକୁ ସେହିପରି ବୁଦ୍ଧିବାଟ ଦେଖାଇ ଦିଅନ୍ତି । ଲକ୍ଷ୍ମୀ ସରସ୍ୱତୀଙ୍କି ଯେ ସେବିଲା, ସେ ତାରି । ଲକ୍ଷ୍ମୀଙ୍କ ପାଏ ଉଦ୍‌ଯୋଗୀ

ପୁରୁଷ । ଅଳସୁଆ ଲୋକେ କେବଳ କପାଳ କପାଳ ହୋଇ ଧନ କଟାନ୍ତି । ସେ ଦେଶ ଲୋକଙ୍କର ସବୁ ଦିନ ଚିନ୍ତା—କି ଉପାୟ ଧରିଲେ, କି ପଦାର୍ଥ ନିର୍ମାଣ କଲେ, ଅନ୍ୟଦେଶରୁ ଧନ ଟାଣି ଆଣିବା । ଆମ ଦେଶ ଲୋକଙ୍କର କଣ ସେ ଚିନ୍ତା ଅଛି ? ଏ ଓଳିକି ଖାଇବାକୁ ଥିଲେ ଆର ଓଳିକି ପରିଶ୍ରମ କରିବାକୁ ଲୋକେ ନାରାଜ । ଗାନ୍ଧି ବୁଢ଼ା କାନ୍ଦି କାନ୍ଦି ଥକିଲା, ସୂତାକାଟି ଲୁଗା ପିନ୍ଧ ବୋଲି ଯେତେ କହିଲା, ତା କଥାକୁ କେହି ପସନ୍ଦ କଲେ ନାହିଁ କି କଲେ ନାହିଁ, ଆଉ ବେଶି କଥା ଦୂରେ ଥାଉ ।

ସ୍ତ୍ରୀ—ହଇହେ, ସେ ଦେଶ ଲୋକେ କାହିଁକି ଏତେ ପ୍ରକାର ଶିଳ୍ପ ବାଣିଜ୍ୟ କରି ପାରୁଛନ୍ତି, ଆମଦେଶ ଲୋକେ ତେଣିକି ମନ ଦେଉ ନାହାନ୍ତି ?

ସ୍ୱାମୀ—କାହିଁକି ଏ କଥା ବୁଝି ପାରୁନାହଁ ? ଆମ ଦେଶ ଲୋକେ ଅଳ୍ପକେ ସନ୍ତୁଷ୍ଟ । ପଖାଳ ଭାତ ଶାଗ ଭଜା ହେଲେ ସନ୍ତୁଷ୍ଟ ହୋଇଯାନ୍ତି । ଭାରତବର୍ଷ କୃଷିପ୍ରଧାନ ଦେଶ । ପ୍ରତ୍ୟେକ ଗୃହସ୍ଥ ଯେଡ଼େ ଦରିଦ୍ର ହେଉ, ତାର ଖଣ୍ଡେ ଘର ଅଛି, ମାଣେ ଦି'ପା ଜମି ଅଛି । ବାଡ଼ି ଘରେ ଶାଗ ମୁଗ କରିଦେଲେ ଚଳିଗଲା । ପଖାଳ ଶୁଖୁଆପୋଡ଼ା ବା ପଖାଳ ଶାଗ ବା କିଛି ନ ହେଲେ ଲୁଣ ଲଙ୍କାମରିଚ ହେଲେ କଂସାଏ ଖାଇଦେବେ । ତେଣୁ ବେଶି ପରିଶ୍ରମ କରି ଗୁଡ଼ାଏ ରୋଜଗାର କରିବାକୁ ମନ ବଳାନ୍ତି ନାହିଁ । ଓଳିକୁ ଥିଲେ ଆର ଓଳିକି କାମ କରନ୍ତି ନାହିଁ । ଭାରତବର୍ଷଟା ପୁଣି ଧର୍ମ-ପ୍ରଧାନ ଦେଶ । ଅନ୍ନଦାନ ମହାପୁଣ୍ୟ ବୋଲି ଲୋକଙ୍କର ବିଶ୍ୱାସ । ଏଣେ ବହୁତ ମଠବାଡ଼ି, ଦେଉଳଦେବମନ୍ଦିର ଅଛି । ଏଥିରେ ବହୁତ ଖଇରାତ ସମ୍ପତ୍ତି ଛଞ୍ଚା ଅଛି । ଯେଉଁଠି ହାତ ପତାଇଲେ ସହଜରେ

ମୁଠାଏ ମିଳିଯାଉଥିଲା । ଏହି କାରଣରୁ ଆମ ଦେଶରେ ମାଗିବା ବାବାଜୀ ଭିକାରୀ ସଂଖ୍ୟା ବେଶି । ଏମାନେ କେବଳ ପରାନ୍ନ-ଭୋଜୀ । କାହା ଦ୍ୱାରକୁ କେହି ଅନ୍ନ ମାଗି ଆସିଲେ ତାକୁ କିଛି ନ ଦେଇ ଫେରାଇ ଦେବା ମହାପାପ ବୋଲି ଲୋକମାନଙ୍କର ବିଶ୍ୱାସ ଏପର୍ଯ୍ୟନ୍ତ ଅଛି । ଏହି କାରଣରୁ ଅଧିକାଂଶ ଲୋକ ପରିଶ୍ରମ-କାତର ।

ସ୍ତ୍ରୀ—ଇଂଲଣ୍ଡ ମହାଦେଶରେ କଣ ଏପରି ଚଳନ ନାହିଁ ?

ସ୍ୱାମୀ—ନାହିଁ ହେ ; ସେ ଦେଶରେ ଅଧିକାଂଶ ଲୋକଙ୍କର ଜମିବାଡ଼ି, ଘରଦ୍ୱାର ନାହିଁ । ସେମାନେ ଭୋଜନାଳୟରେ ଖାଆନ୍ତି ଓ କେଉଁଠି କାହା ବାରଣ୍ଡାରେ ଶୋଇପଡ଼ନ୍ତି । ଅଧିକାଂଶ ଲୋକ ମଜୁରି ଖଟି ଖାଇ ଚଳନ୍ତି । ମଜୁରି ନ ମିଳିଲେ ଲୋକରେ ହାହାକାର କରନ୍ତି ଏବଂ ସରକାର ତାଙ୍କୁ ଖାଇବାକୁ ଦିଅନ୍ତି । ସେ ଦେଶ ଲୋକମାନଙ୍କର ଖାଇବା ଚିନ୍ତା ବେଶୀ ଏବଂ ସଦାସର୍ବଦା ସେମାନେ ସେହି ଚିନ୍ତାରେ ବ୍ୟସ୍ତ । କିପରି କି ଉପାୟରେ ଅନ୍ୟ ଦେଶରୁ ଧନ ଆଣି ଖାଇ ପିଇ ଚଳିବେ, ସେହି ଚିନ୍ତାରେ ତାଙ୍କର ସର୍ବଦା ମଥା ଘୂରୁଛି ଏବଂ ତାଙ୍କୁ ନାନା ପ୍ରକାର ବୁଦ୍ଧି ଦେଖା ଯାଉଛି । ଆମ ଦେଶ ଲୋକେ ତ ମୋଟେ ସେ ଚିନ୍ତା କରନ୍ତି ନାହିଁ । ତାଙ୍କୁ ସେପରି ବୁଦ୍ଧି ଦିଶେ ନାହିଁ । ଆଜି ଏତିକି ଥାଉ ।



# ଦ୍ୱିତୀୟ ପରିଚ୍ଛେଦ

## ଗୟାଶ୍ରାଦ୍ଧ

ସ୍ତ୍ରୀ—ହଇହେ, ତେମେ ପରା ଗୟାଶ୍ରାଦ୍ଧ କରି ଯାଇଥିଲ ? ଗୟାଶ୍ରାଦ୍ଧ କଲେ ପରା ଆଉ ଶ୍ରାଦ୍ଧ କରାଯାଏ ନାହିଁ ? ତୁମ୍ଭେ ଶ୍ରାଦ୍ଧ ଦିନ ପୁଣି କାହିଁକି— ଭୋଜ, ଉତ୍ସର୍ଗ, ବ୍ରାହ୍ମଣଭୋଜନ ଏସବୁ କରୁଛ ମ ?

ସ୍ୱାମୀ—ହଁ, ମୁଁ ଶ୍ରାଦ୍ଧ ଦେବାକୁ ଗୟା ଯାଇଥିଲି । ଦି'ଥର ଯାଇ ସେଠାରେ ପିଣ୍ଡ ଦେଇ ଆସିଛି । ଗୟାରେ ପିଣ୍ଡ ଦେଲେ ଆଉ ଶ୍ରାଦ୍ଧ ହୁଏ ନାହିଁ ବୋଲି ଲୋକେ କହନ୍ତି ସତ, କିନ୍ତୁ ଶ୍ରାଦ୍ଧ କଲେ କିଛି ଦୋଷ ନାହିଁ । ବରଂ ଲାଭ ଅଛି ।

ସ୍ତ୍ରୀ—ଗୟାରେ ପିଣ୍ଡ ଦେଲେ ପରା ପିତୃପୁରୁଷମାନେ ପ୍ରେତ ଯୋନିରୁ ମୁକ୍ତ ହୋଇ ସ୍ୱର୍ଗକୁ ଚାଲିଯାନ୍ତି ? ଯେବେ ସେ କଥା ସତ, ତେବେ ଆଉ କାହାକୁ ପିଣ୍ଡ ଦେବ ?

ସ୍ୱାମୀ—ଆହେ, ଶ୍ରଦ୍ଧାରେ ସେ କାର୍ଯ୍ୟମାନ କରାଯାଏ ବୋଲି ତା ନାମ ଶ୍ରାଦ୍ଧ । ପିତା ମାତା ପୁତ୍ରର ଜୀବନ୍ତ ଦେବତା । ଈଶ୍ୱର ସୃଷ୍ଟିକର୍ତ୍ତା । ସବୁ କାର୍ଯ୍ୟର ମୂଳରେ ସେ ଅଛନ୍ତି ସତ, କିନ୍ତୁ ଏ ସଂସାରରେ ଦେଖିବାକୁ ଗଲେ ପିତାମାତା ସନ୍ତାନ ଜନ୍ମର ମୂଳ କାରଣ । ପିତାମାତା ସଂଯୋଗରେ ପୁତ୍ରର ଉତ୍ପତ୍ତି । ତେଣୁ ପିତାମାତା ପୁତ୍ରର ସୃଷ୍ଟିକର୍ତ୍ତା ଏବଂ ପାଳକ, ଯାହାଙ୍କ ହେତୁ ମଣିଷ ଜନ୍ମଲାଭ କଲା ।

ସେ ତା ପକ୍ଷରେ ପରମ ପୂଜନୀୟ ପରମ ଦେବତା, ପରମ ନମସ୍ୟ ଏବଂ ପରମ ଆରାଧ୍ୟ। ପୁତ୍ର ଯେବେ ଏତକ ନ ବୁଝେ, ସେ ମହା ପାଷାଣ୍ଡ ଏବଂ ଅକୃତଜ୍ଞ। ପୁତ୍ର ପକ୍ଷରେ ପିତା ମାତା ପରମ ଶ୍ରଦ୍ଧା ଓ ଭକ୍ତିର ପାତ୍ର।

ପିତା ସ୍ୱର୍ଗ, ପିତା ଧର୍ମ, ପରମ ଦେବତା
ପରମ ତପ ଆବରି ସେ ଜନମ ଦାତା।
ପିତା ତୁଷ୍ଟ ହେଲେ ସବୁ ଦେବତାଏ ତୁଷ୍ଟ
ଯେ ପୁତ୍ର ଏହା ନ ବୁଝେ ମହା ମୂର୍ଖ ଦୁଷ୍ଟ।
ଜନନୀ ଜନମ ଭୂମି ସ୍ୱର୍ଗଠାରୁ ଶ୍ରେଷ୍ଠ
ପରମ ପୂଜ୍ୟ ନମସ୍ୟ ଆରାଧ୍ୟ ବରିଷ୍ଠ।

ପିତାମାତାଙ୍କ ନାମ ସ୍ମରଣ କରିବା, ସେମାନଙ୍କୁ ଶ୍ରଦ୍ଧା ସହିତ ପୂଜା କରିବା ପୁତ୍ରର ପ୍ରଧାନ ଧର୍ମ ଓ କର୍ତ୍ତବ୍ୟ। ସେମାନଙ୍କ ମୃତ୍ୟୁ ଦିବସରେ ବିଶେଷ ଭାବରେ ସେମାନଙ୍କ ନାମ ସ୍ମରଣ କରି ପୂଜା କରିବାକୁ ହୁଏ। ଏହା ଶ୍ରାଦ୍ଧର ପ୍ରଧାନ ଉଦ୍ଦେଶ୍ୟ। ଲୋକ ଶିକ୍ଷା ପାଇଁ ଗୟାରେ ପିଣ୍ଡଦେଇ ମଧ୍ୟ ଶ୍ରାଦ୍ଧ କରିବା ବିଧି ନ କଲେ ପିଲାମାନେ ମନେ କରିବେ ଯେ ଆମଘରେ ଶ୍ରାଦ୍ଧ ହୁଏ ନାହିଁ, ସୁତରାଂ ସେମାନେ ନ କରି ପାରନ୍ତି।

ସ୍ତ୍ରୀ—ଶ୍ରାଦ୍ଧ ପ୍ରତିବର୍ଷ ନିଜ ଗୃହରେ କରାଯାଉଛି, ଗୟାରେ ପିଣ୍ଡ ଦେଲେ ଅଧିକ କି ଫଳ ହେବ ?

ସ୍ୱାମୀ—ସ୍ଥାନର ସେପରି ମାହାତ୍ମ୍ୟ ଅଛି ବୋଲି ଶାସ୍ତ୍ର ଲେଖୁଛି। ମହାଜନମାନେ ସେ ସ୍ଥାନକୁ ପ୍ରଧାନ ସ୍ଥାନବୋଲି ମାନିଆସିଛନ୍ତି। ରାମଚନ୍ଦ୍ର ସେଠାରେ ପିଣ୍ଡଦାନ କରିଥିଲେ। ଆବହମାନ କାଳରୁ ସେ ସ୍ଥାନର ମାହାତ୍ମ୍ୟ ଅଛି ବୋଲି ଲେଖା ଯାଉଛି। ଗୟା ପୁଣି ତିନି

ସ୍ଥାନରେ ଅଛି । ଗୟାରେ ଶିର ଗୟା, ପିଠାପୁରରେ ନାଭି ଗୟା, ଯାଜପୁରରେ ପାଦଗୟା । ଏ ତିନି ସ୍ଥାନରେ ପିଣ୍ଡ ଦିଆଯାଏ । ମୁଁ ଦୁଇ ସ୍ଥାନରେ ପିଣ୍ଡ ଦେଇଛି, କେବଳ ପାଦଗୟାକୁ ଯାଇପାରି ନାହିଁ । ସବୁଠାରୁ ଶିର ଗୟାରେ ପିଣ୍ଡଦାନ ପ୍ରସିଦ୍ଧ ବୋଲି ଶାସ୍ତ୍ର କହୁଛି ।

ସ୍ତ୍ରୀ—ସମସ୍ତେ କଣ ଗୟାରେ ପିଣ୍ଡଦାନ କରୁଛନ୍ତି ?

ସ୍ୱାମୀ—ମୁଁ ତ ଦେଖିଲି ହଜାର ହଜାର ଲୋକ ପିଣ୍ଡଦାନ କରୁଛନ୍ତି ! ଆମ ଓଡ଼ିଶାରୁ ବେଶିଲୋକ ଯାଉନାହାନ୍ତି ସିନା, ପଶ୍ଚିମ ପ୍ରଭୃତି ଦେଶର ବହୁତ ଲୋକ ପିଣ୍ଡ ଦିଅନ୍ତି । ସେ ଅଞ୍ଚଳ ଲୋକେ ବର୍ଷକେ ଥରେ ତୀର୍ଥଯାତ୍ରା କରନ୍ତି । ଦେଖୁନାହିଁ, ସେ ସବୁ ଅଞ୍ଚଳର ଲୋକେ ଜଗନ୍ନାଥ ଦର୍ଶନକୁ ଆସି କେତେ ଧନ ଦେଇ ଯାଉଛନ୍ତି ।

ସ୍ତ୍ରୀ—ପୁତ୍ର ଶ୍ରାଦ୍ଧ କରିବ ବୋଲି ଲେଖାଅଛି, ନା ଗୟାରେ ପିଣ୍ଡଦାନଟା ଦେବ ବୋଲି ଲେଖା ଅଛି ମ ? .

ସ୍ୱାମୀ—ନାହିଁ ହେ, ଗୟାରେ ପିଣ୍ଡଦାନ କଥା ଲେଖାଅଛି । ପୁତ୍ରର ତିନିଗୋଟି କର୍ତ୍ତବ୍ୟ ବୋଲି ଶାସ୍ତ୍ର କହୁଛି, ଯଥା:—୧—ଜୀବତ୍ୱେ ବାକ୍ୟ କରଣଂ—ଅର୍ଥାତ୍ ପିତା ଜୀଇଥିବା ବେଳେ ଯେଉଁ ଆଦେଶ ଦେବେ ତାହା ଅକ୍ଷରେ ଅକ୍ଷରେ ପାଳିବ, ୨—ମୃତାହେ ଭୂରି ଭୋଜନଂ—ଅର୍ଥାତ୍ ମୃତାହରେ ପିତା ଯେଉଁଦିନ ମୃତ ହୋଇ ଥିଲେ ସେ ଦିନ ଲୋକଙ୍କୁ ପେଟପୂରି ଖାଇବାକୁ ଦେବ, ୩—ଗୟାୟାଂ ପିଣ୍ଡଦାନଂ ଚ—ଅର୍ଥାତ୍ ଗୟାରେ ପିଣ୍ଡଦାନ—ଏ ତିନି କାର୍ଯ୍ୟ ପୁତ୍ରର ପ୍ରଧାନ କର୍ତ୍ତବ୍ୟ ।

ସ୍ତ୍ରୀ—ପିତାମାତାଙ୍କୁ ଭକ୍ତିକଲେ କଣ କିଛି ଫଳ ଅଛି ?

ସ୍ୱାମୀ—ଶାସ୍ତ୍ର ତ ଏ କଥା କହୁଛି 'ପିତରି ପ୍ରୀତିମାପନ୍ନେ ପ୍ରୀୟନ୍ତେ ସର୍ବ ଦେବତା ।' ପିତା ସନ୍ତୁଷ୍ଟ ହେଲେ ସବୁ ଦେବତା ସନ୍ତୁଷ୍ଟ ହୁଅନ୍ତି । ମହାଭାରତ ପ୍ରଭୃତିରେ ଏକଥା ଲେଖା ଅଛି । ଜଣେ ବୈଷ୍ଣବ ତପସ୍ୟା କରୁଥିଲେ । ବହୁକାଳ ତପସ୍ୟା କଲେ । ତାଙ୍କ ତପସ୍ୟାର ଉଦ୍ଦେଶ୍ୟ ଥିଲା ଯେ ସେ ଯାହାକୁ ଚାହିଁବେ ସେ ଭସ୍ମ ହୋଇଯିବ । କେତେକାଳ ତପସ୍ୟା କଲାପରେ, ଦିନେ ଗଛ ମୂଳରେ ବସିଥିଲେ, ତା ଉପରକୁ ଏକ ଦୃଷ୍ଟିରେ ଚାହିଁଲେ । ସେ ବୃକ୍ଷ ଉପରେ କପୋତଟିଏ ବସିଥିଲା । ସେ କପୋତଟି ହଠାତ୍ କେଜାଣି କାହିଁକି ତଳକୁ ଖସିପଡ଼ି ବୈଷ୍ଣବଙ୍କ ହୋମ କୁଣ୍ଡରେ ପଡ଼ି ଭସ୍ମ ହୋଇଗଲା । ତପସ୍ୱୀ ପାଇଁଲେ ତାଙ୍କ ତପସ୍ୟା ସିଦ୍ଧ ହେଲା । ସେ ଯାହାକୁ ଚାହିଁବେ ସେ ଭସ୍ମ ହୋଇଯିବ ।

ବୈଷ୍ଣବ ତପସ୍ୟାରୁ ଉଠି ନଗର ଭିତରକୁ ଭିକ୍ଷା କରିଗଲେ । ଜଣେ ବ୍ରାହ୍ମଣ ଦ୍ୱାରରେ ଉପସ୍ଥିତ ହେଲେ । ସେ ବ୍ରାହ୍ମଣର ଗୋଟିଏ ପୁଅ । ସେ ଭାରି ପିତୃଭକ୍ତ । ଯେତେବେଳେ ବ୍ରାହ୍ମଣ ଶୋଇଛି ପିଲାଟି ପିତାଙ୍କ ଚରଣ ସେବା କରୁଛି । ବ୍ରାହ୍ମଣ ଘୋର ନିଦ୍ରାରେ ଶୋଇଛନ୍ତି, ପିଲାଟି ପାଦ ମକ୍ଷାରୁଛି । ଏଣେ ଦ୍ୱାରମୁହଁରେ ତପସ୍ୱୀ ବହୁବାର ଡାକଦେଲେ । ପିଲାଟି ପିତାଙ୍କ ନିଦ୍ରାଭଙ୍ଗ ହେବା ଭୟରେ ପାଟିକରି ଜବାବ ଦେଇ ପାରୁ ନାହିଁ କିମ୍ବା ଉଠି ଯାଇ ପାରୁନାହିଁ । ତପସ୍ୱୀ ବହୁତ ଡକାପକାଇଲେ । କେହି ନ ଶୁଣିବାରୁ ସେ ବଡ଼କ୍ରୁଦ୍ଧ ହେଲେ । ଇତିମଧ୍ୟରେ ହଠାତ୍ ବ୍ରାହ୍ମଣର ନିଦ୍ରାଭଙ୍ଗ ହେଲା । ବ୍ରାହ୍ମଣ ଉଠି ତପସ୍ୱୀ ଡାକ ଶୁଣିଲା, ପୁଅକୁ କହିଲା ଯାଅ କେହି ଅତିଥି ଡାକୁଛି । ପୁଅ ଯାଇ ଦେଖେ ଜଣେ ତପସ୍ୱୀ । ପୁଅକୁ ଦେଖି ତପସ୍ୱୀ ଏକ ଦୃଷ୍ଟିରେ ଚାହିଁଲେ । ସାତ ଆଠବର୍ଷର ପିଲା, ସେ କହିଲା—ତପସ୍ୱୀ

ମନେ କରୁଛ କି ତମେ ଯେପରି କପୋତକୁ ଭସ୍ମ କରିଦେଲ ମୋତେ ସେହିପରି ଭସ୍ମ କରିଦେବ ? ମୁଁ ତ ପିତୃସେବାରେ ନିଯୁକ୍ତ ଥିଲି, ଆସନ୍ତି କିପରି ? ତପସ୍ୱୀ ଏ କଥା ଶୁଣି ଅବାକୁ ହେଲେ । ତପସ୍ୱୀ ମନେ ପାଞ୍ଚିଲେ—ଘୋର ବନ ମଧ୍ୟରେ ଯେଉଁ ଘଟଣା ହେଲା, ଏ ବାଳକ କିପରି ସେ କଥା ଜାଣିଲା ! ଏ ବାଳକଠାରେ ନିଶ୍ଚୟ କିଛି ଅଦ୍ଭୁତ ଶକ୍ତି ଅଛି । ଏପରି ମନରେ ବିଚାରି କରି ତପସ୍ୱୀ ବାଳକକୁ କହିଲେ "ତୁମ୍ଭେ ମୋର ଗୁରୁ ହୁଅ ।"

ସ୍ତ୍ରୀ—ବାଳକ କଣ ତାକୁ ଦୀକ୍ଷା ଦେଲା ?

ସ୍ୱାମୀ—ନାହିଁ, ବାଳକ କହିଲା ଯାଅ, ''ଅମୁକ ଜଙ୍ଗଲରେ, ଜଣେ ବ୍ୟାଧ ଅଛି, ତା ପାଖକୁ ଯାଇ ତାଙ୍କୁ ଗୁରୁ କର ।" ତପସ୍ୱୀ ଯାଇ ତାଙ୍କ ନିକଟରେ ପ୍ରବେଶ ହେଲେ । ଦେଖିଲେ ବ୍ୟାଧ ପକ୍ଷୀ ମାରି ବିକ୍ରୟ କରି ଜୀବିକା ନିର୍ବାହ କରେ । ମନେ ମନେ ବିଚାରିଲେ ଏ ତ ଏ ପ୍ରକାର ଲୋକ, ଏ କିପରି ଗୁରୁ ହେବ । ବ୍ୟାଧ ଆସି ତପସ୍ୱୀଙ୍କୁ ଦେଖିବା ମାତ୍ରକେ ପଚାରିଲା, 'ଆପଣଙ୍କୁ ସେ ବାଳକ ପଠାଇଦେଲା କି ? ଆପଣ ତପସ୍ୟା କରୁଥିବା ବେଳେ କପୋତଟିଏ ଅଗ୍ନି କୁଣ୍ଡରେ ପଡ଼ିଗଲା । ଆପଣ ବିଚାରିଲେ ଆପଣଙ୍କ ତପସ୍ୟା ସିଦ୍ଧ ହୋଇଛି ! ତପସ୍ୱୀ ଶୁଣି ଅବାକ୍ ହେଲେ, କହିଲେ ସେ ତାଙ୍କୁ ଗୁରୁ କରିବେ । ବ୍ୟାଧ କହିଲା, ଦେଖ, ତୁମ୍ଭେ ପିତାଙ୍କ ଅନୁମତି ନ ନେଇ ବାହାରି ଆସିଛ, ତୁମ୍ଭ ତପସ୍ୟା ସିଦ୍ଧ ହେବ ନାହିଁ । ତୁମ୍ଭେ ଘରକୁ ଫେରିଯାଅ, ପିତାଙ୍କ ଅନୁମତି ନେଇ ଆସିବ । ତପସ୍ୱୀ ଦେଖିଲେ ବ୍ୟାଧ ପକ୍ଷୀ ମାରେ ସତ, କିନ୍ତୁ ସେ ବଡ଼ ପିତୃମାତୃଭକ୍ତ ପିତାମାତାଙ୍କ ସେବା ନ କଲେ ସେ ଜଳ ଗ୍ରହଣ କରନ୍ତି ନାହିଁ । ପିତା ମାତାଙ୍କୁ

ସେ ଦେବତା ତୁଲ୍ୟ ପୂଜା କରନ୍ତି । ଏହି ପ୍ରକାର ଅଟଳ ଅଚଳ ପିତୃ ମାତୃଭକ୍ତି ହେତୁ ସେ ପରମ ଜ୍ଞାନୀ ଓ ସର୍ବଜ୍ଞ ।

ସ୍ତ୍ରୀ—ରାମଚନ୍ଦ୍ର ତ ପିତୃଭକ୍ତ ଥିଲେ, ବୃଷକେତୁ ତ ପରମ ପିତୃଭକ୍ତ ଥିଲେ ; ଏକଥା କଣ ଭାରତରେ ନୂଆ କଥା !

ସ୍ୱାମୀ—ଆହେ, କଥାଟା କଣ ନୂଆ ବୋଲି କହୁଛି । ସବୁ ଥିଲା, ଏବେ ସେ କଥା କେହି ପାଳୁ ନାହାନ୍ତି । ଏବେ ତ ବାପକୁ ସାପ ସଙ୍ଗେ ତୁଳନା କଲେଣି ! ନୀତି ନିୟମ ଧର୍ମଉପଦେଶ ସବୁ ଶାସ୍ତ୍ରରେ ଅଛି । ତାକୁ କାର୍ଯ୍ୟରେ ନ କଲେ ଫଳ କଣ ? ଶ୍ରାଦ୍ଧ ଅର୍ଥ ସେହି ପିତୃପୁରୁଷ-ମାନଙ୍କ ପ୍ରତି ଶ୍ରଦ୍ଧାର ଏକ ନିଦର୍ଶନ । ହିନ୍ଦୁମାନେ ପିତୃପୁରୁଷଙ୍କ ପ୍ରତି ଶ୍ରଦ୍ଧା କରୁଥିଲେ ବୋଲି ଯେ ଅନ୍ୟ ପ୍ରତି ଅଶ୍ରଦ୍ଧା କରୁଥିଲେ, ତା ନୁହେଁ । ସେମାନେ ସାରା ପୃଥିବୀକୁ ଗୋଟିଏ କୁଟୁମ୍ବ ବୋଲି ମନେ କରୁଥିଲେ । ତର୍ପଣ କଲାବେଳେ ପୃଥିବୀର ଯାବତୀୟ ପ୍ରାଣୀଙ୍କୁ ପାଣି ଦେଉଥିଲେ । ହିନ୍ଦୁମାନଙ୍କର ବିଶ୍ୱାସ—ସବୁ ପ୍ରାଣୀଙ୍କ ହୃଦୟରେ ନାରାୟଣ ଅଛନ୍ତି । ସମସ୍ତଙ୍କ ସହିତ ସମସ୍ତଙ୍କର ସମ୍ବନ୍ଧ ଅଛି । ଭାଗବତ କହୁଛି—

କାଷ୍ଠ ପାଷାଣ ତରୁ ତୃଣ
ବସନ୍ତି ଅନାଦି କାରଣ ।

ଏ ଭାବ କ୍ରମେ ଲୋକଙ୍କ ମନରୁ ଲୋପ ହୋଇ ଆସୁଛି ।

ସ୍ତ୍ରୀ—ଶ୍ରାଦ୍ଧବେଳେ ପିତୃପୁରୁଷଙ୍କ ଆବାହନ କରାଯାଏ ପରା ? ସେମାନେ କଣ ଆସନ୍ତି ?

ସ୍ୱାମୀ—ଆସୁଥିବେ ! ଆଚ୍ଛା, ଭୂତ ପ୍ରେତ ଆସିବା କଥା ତ ଶୁଣିଥିବ । ଏବେ କେତେକ ଯନ୍ତ୍ର ବାହାରିଛି, ସେ ଯନ୍ତ୍ର ସାହାଯ୍ୟରେ ଡାକିଲେ ସେମାନେ ଆସୁଛନ୍ତି, କଥା କହୁଛନ୍ତି ; ଯାହା

ପଗ୍ଭରିଲେ ଜବାବ ଦେଉଛନ୍ତି । ଏକଥା ଯେବେ, ତେବେ ମନ୍ତ୍ର ସାହାଯ୍ୟରେ ସେମାନଙ୍କୁ ଆବାହନ କଲେ ନ ଆସୁଥିବେ କାହିଁକି ? ମନ୍ତ୍ରର ବହୁତ ଶକ୍ତି ଅଛି । ସେ ତ ଗୋଟାଏ ଅଲଗା ବିଦ୍ୟା । ସାଧନା କଲେ ତାହାର ଫଳାଫଳ ଜଣା ପଡ଼ିବ ।

ସ୍ତ୍ରୀ—ଆମେ ମାଇପେ ଏତେ ମନ୍ତ୍ର ଯନ୍ତ୍ର କଥା କଣ ଜାଣୁ ମ ?

ସ୍ୱାମୀ—ବିଦ୍ୟା ସାଧନା ପାଇଁ ମାଇପେ କଣ ମରଦ କଣ କିହେ ? ଆମ ଦେଶରେ ମାଇପେ ତ ଗୁଣିବିଦ୍ୟାରେ ବିଖ୍ୟାତ ହୋଇଥିଲେ ! ଶୁଣି ନାହିଁ, ନଟେଇ ଧୋବଣୀ, ପିଟେଇ ସଉରୁଣୀ-ମାନେ ଭାରି ଗୁଣି ଜାଣିଥିଲେ । କାମାକ୍ଷା ଦେଶରେ ତ ସ୍ତ୍ରୀ ଲୋକମାନେ ଭାରି ଗୁଣି ଜାଣନ୍ତି ବୋଲି ଲୋକେ କହନ୍ତି । ସରସ୍ୱତୀଙ୍କି ଯେ ଆରାଧନା କଲା, ସେ ତାର ହେଲେ ।

ସ୍ତ୍ରୀ—ତେମେ ତ ସବୁ ବର୍ଷ ତର୍ପଣ କର, ତର୍ପଣ ବେଳେ କଣ ପିତୃପୁରୁଷମାନେ ଆସନ୍ତି ?

ସ୍ୱାମୀ—ନ ଆସନ୍ତି ବୋଲି କିଏ କହିବ ! ମୃତ ଲୋକର ଆତ୍ମାକୁ ଡାକିଲେ ଯେବେ ସେ ଆସେ, ତେବେ ପିତୃପୁରୁଷ ନ ଆସିବେ କାହିଁକି ? ଏବେ ତ ଏ ବିଷୟରେ ବହୁତ ପୁସ୍ତକ ଲେଖା ଯାଉଛି, କେତେ ଯନ୍ତ୍ର ବାହାରୁଛି । ଏ ଯନ୍ତ୍ର ସାହାଯ୍ୟରେ ଯେ କୌଣସି ମୃତ ଲୋକକୁ ଡାକିଲେ ସେ ଆସିବ, ଜବାବ ଦେବ, ଯାହା ପଗ୍ଭରିବ ତାର ଉତ୍ତର ସଙ୍କେତରେ କହିଦେବ—ଏବେ ତ ଏଭଳି ପୁଣି ଦେଖାଯାଉଛି, ସେକଥା ମିଛ ହେବ କାହିଁକି ?

ସ୍ତ୍ରୀ—ଆଚ୍ଛା ହଇହେ, ଆଗେ ତ ଗାଁଟି ଥିଲାବେଳେ ଜଇମିଶ୍ରଙ୍କ କଣ ପୁରୋହିତ କାମ କରୁଥିଲେ, ବର୍ତ୍ତମାନ ତ ଧୂନ୍ଦ ମିଶ୍ରେ

କରୁଛନ୍ତି । ପୂର୍ବରେ ଚନ୍ତାମଣି ଶତପଥୀଙ୍କ ବଂଶ କରୁଛନ୍ତି । ଆଚ୍ଛା; ପୁରୋହିତ ନ ହେଲେ କଣ ନିଜେ କଲେ କିଛି ଦୋଷ ଅଛି ?

ସ୍ୱାମୀ—ଦୋଷ କିଛି ନାହିଁ । ନିଜେ କରି ପାରିଲେ ହେଲା । ସମସ୍ତେ ସେ ବିଧିବିଧାନ ମନ୍ତ୍ରଗୁଡ଼ାକ ଜାଣନ୍ତି ନାହିଁ । ଆଗେ ବ୍ରାହ୍ମଣମାନେ ଏହି କାର୍ଯ୍ୟକୁ ବ୍ୟବସାୟ କରିଥିଲେ । ସେମାନେ ସେ ପାଠଗୁଡ଼ିକ ଭଲଭାବେ ଜାଣୁଥିଲେ । ଏହି ହେତୁ ସେମାନେ ପୁରୋହିତ କରି ପେଟ ପୋଷୁଥିଲେ । ଏବେ ବ୍ରାହ୍ମଣମାନେ ଆଉ ସେ ପାଠ ପଢ଼ୁ ନାହାନ୍ତି । ସଂସ୍କୃତ ପାଠ କ୍ରମେ ଊଣା ହୋଇ ଆସୁଛି । କ ବ ଚ କରି ମନ୍ତ୍ର ଗାଇ ଦେଉଛନ୍ତି । ତହିଁର ଅର୍ଥ ବୁଝୁ ନାହାନ୍ତି । ଆଜକାଲି ଯଜମାନ କି ପୁରୋହିତ କେହି ମନ୍ତ୍ର ଜାଣୁ ନାହାନ୍ତି, ଫଳ ଫଳିବ କିପରି ? ନିଜେ ଯେବେ ପାଠଗୁଡ଼ିକ ଉତ୍ତମରୂପେ ବୁଝିଶୁଝି କରି ପାରିବ ତେବେ ଭଲ । କେତେ ଜଣ ପୁରୁଣାକାଳିଆ ବ୍ରାହ୍ମଣ ଅଛନ୍ତି, ସେମାନଙ୍କ ଅନ୍ତେ କର୍ମକର୍ମାଣି ଆଉ ହୋଇ ପାରିବ ନାହିଁ ବୋଲି ଜଣା ଯାଉଛି ।

ସ୍ତ୍ରୀ—ସାହେବମାନେ ତ ଶ୍ରାଦ୍ଧ ତର୍ପଣ କରୁ ନାହାନ୍ତି, ତାଙ୍କର କଣ କ୍ଷତି ହେଉଛି ?

ସ୍ୱାମୀ—ଲାଭ ତ କିଛି ହେଉ ନାହିଁ ! କଥାଟା ଯେବେ ଭଲ ତେବେ କଲେ ଲାଭ ଅଛି ; ନ କଲେ କ୍ଷତି ଥାଇପାରେ । ତେବେ ସେ କ୍ଷତିଟା ନ ଧରିଲେ ଜଣାଯିବ ନାହିଁ । ସେମାନେ ସେ କଥା ମନକୁ ଆଣନ୍ତି ନାହିଁ । ସେ ଦେଶରେ ସେପରି ଚଳନ ନାହିଁ । କେହି ତ କରନ୍ତି ନାହିଁ, ସେ କଥା କାହା ମନକୁ ଆସେ ନାହିଁ । ଆଚ୍ଛା ଆଜି ଏତିକି ଥାଉ ।

---

# ତୃତୀୟ ପରିଚ୍ଛେଦ

ରଖିଲେ ହରି ମାରିବ କିଏ,

ମାରିଲେ ହରି ରଖିବ କିଏ ?

ସ୍ତ୍ରୀ— ହଇହେ, ଖବରକାଗଜରେ ଭାଓଲ ସନ୍ନ୍ୟାସୀ ମୋକଦ୍ଦମା କଥା କିଣ କେତେ ଥର ଲେଖା ଯାଉଛି ! ସେ କଥା କିଣ ?

ସ୍ୱାମୀ—ସେ କଥାରୁ ଜଣାଯାଏ, "ରଖିଲେ ହରି ମାରିବ କିଏ, ମାରିଲେ ହରି ରଖିବ କିଏ ?" ଭଗବାନ ଯାହାକୁ ରକ୍ଷା କରିବେ ତାକୁ କେହି ମାରିପାରିବେ ନାହିଁ । ପୁଣି ଭଗବାନ ଯାହାକୁ ମାରିବେ ତାକୁ କେହି ରକ୍ଷା କରି ପାରିବ ନାହିଁ । ଏଥିର ଦୃଷ୍ଟାନ୍ତ ପୁରାଣରେ ବହୁତ ଅଛି । କେତେ ତ ପୁରାଣ ଅଛି, ତେମେ ତ କେତେ କଥା ପଢ଼ିଛ ! ସେ ତ ସବୁ ଶୁଣା କଥା । କେତେ ଲୋକ କହନ୍ତି— ଏଗୁଡ଼ାକ ମିଛ ଗଳ୍ପ । ଭାଓଲ ସନ୍ନ୍ୟାସୀ କଥା ଏବକାଳର ଦେଖା କଥା । ସେ କଥା ଶୁଣିଲେ ଲୋକ ଆଶ୍ଚର୍ଯ୍ୟାନ୍ୱିତ ନ ହୋଇ ରହି ପାରିବ ନାହିଁ ।

ସ୍ତ୍ରୀ—ସେ କଥା କିଣ ଟିକିଏ ମୂଳରୁ କହିଲ । କେତେଥର ଏଠୁ କାଣ୍ଡେ ସେଠୁ କାଣ୍ଡେ ପଢ଼ିଲି, ମନେ ରହିଲା ନାହିଁ ମ ।

ସ୍ୱାମୀ—ମନ ଦେଇ ପଢ଼ିଲେ ତ ରହନ୍ତା ! ଆଚ୍ଛା ଶୁଣ, କହୁଛି । ଭାଓଲ ବୋଲି ଗୋଟିଏ ରାଜ୍ୟ ଅଛି । ସେ ରାଜ୍ୟର ଜଣେ ରାଜା, ତାଙ୍କର ତିନି ପୁଅ । ବଡ଼ ପୁଅ ଓ ସାନ ପୁଅ ମରିଛନ୍ତି, କେବଳ

ମଝିଆଁ ପୁଅ ଅଛି । ତା ନାମ ରମେନ୍ଦ୍ର ନାରାୟଣ । ବୁଢାରଜା ମରିଯିବା ପରେ ସମ୍ପତ୍ତିରେ ତିନ ପୁଅଙ୍କର ସମାନ ଅଂଶ ଥିଲା । ବଡ଼ ପୁଅଙ୍କ ସ୍ତ୍ରୀ ଗୋଟିଏ ଅଂଶର ମାଲିକାଣୀ ହେଲେ । ସାନପୁଅଙ୍କ ମୃତ୍ୟୁ ପରେ ତାଙ୍କ ସ୍ତ୍ରୀ ଗୋଟିଏ ଅଂଶର ମାଲିକାଣୀ ହେଲେ । ମଝିଆଁ ପୁଅ ତାଙ୍କ ଅଂଶରେ ମାଲିକ ଥିଲେ । ରମେନ୍ଦ୍ରଙ୍କ ସ୍ତ୍ରୀର ନାମ ବିଭାବତୀ ଦେବୀ । ବିଭାବତୀର ଗୋଟିଏ ଝିଅ ଅଛି । ଦୈବାତ୍ ରମେନ୍ଦ୍ର ପୀଡ଼ିତ ହେଲେ, ପୀଡ଼ା କ୍ରମେ ବୃଦ୍ଧି ହେଲା । ଡାକ୍ତରମାନଙ୍କ ପରାମର୍ଶ ଅନୁସାରେ ରମେନ୍ଦ୍ରଙ୍କୁ ଦାର୍ଜିଲିଂଠାକୁ ନିଆଗଲା ।

ସ୍ତ୍ରୀ—ଦାର୍ଜିଲିଂ କେଉଁଠି ? ସେଠାକୁ କାହିଁକି ତାଙ୍କୁ ନିଆଗଲା ?

ସ୍ୱାମୀ—ଦାର୍ଜିଲିଂ ହେଉଛି ହିମାଳୟ ନିକଟରେ । ହିମାଳୟ ଆମ ଭାରତବର୍ଷର ଉତ୍ତର ମୁଣ୍ଡରେ । ସେ ପର୍ବତ ଭାରି ଉଚ୍ଚ ପର୍ବତ । ତା ଉପରେ ଖାଲି ବରଫ । ସେହି ହିମାଳୟରୁ ଗଙ୍ଗାନଦୀ ବାହାରିଛି । ହିମାଳୟ ଉପରକୁ ମଣିଷ ଯାଇ ପାରିବ ନାହିଁ, ଗଲେ ବରଫ ଲାଗି ମରିଯିବ । ଭାରି ଥଣ୍ଡା ଜାଗା । ସେହି ପାହାଡ଼ ପାଖେ ଦାର୍ଜିଲିଂ ଭାରି ଥଣ୍ଡା ସ୍ଥାନ । ସେ ସ୍ଥାନରେ ଜଳବାୟୁ ଭାରି ସ୍ୱାସ୍ଥ୍ୟପ୍ରଦ ବୋଲି ଅନେକ ଲୋକ ସେଠାରେ ଯାଇ ରହନ୍ତି । ରମେନ୍ଦ୍ରଙ୍କୁ ସେଠାକୁ ସେଇଥିପାଇଁ ନିଆଗଲା ।

ସ୍ତ୍ରୀ—ରମେନ୍ଦ୍ର କଣ ସେଠାରେ ଭଲ ହୋଇଗଲେ ?

ସ୍ୱାମୀ—ନାହିଁ ହେ, ଶୁଣ କହୁଛି । ସେଠାରେ ରମେନ୍ଦ୍ରଙ୍କ ସ୍ୱାସ୍ଥ୍ୟ ଆହୁରି ଖରାପ ହେଲା । କେତେଦିନ ସେଠାରେ ରହିବା ପରେ ହଠାତ୍ ଦିନେ ସନ୍ଧ୍ୟା ଆଠ ଘଣ୍ଟା ବେଳେ ଜଣା ପଡ଼ିଲା ରମେନ୍ଦ୍ର ମଲେ ! ରମେନ୍ଦ୍ରଙ୍କ ପାଇଁ କୋଳାହଳ ସଜଡ଼ା ହେଲା ।

ରମେନ୍ଦ୍ରଙ୍କୁ ମଶାଣିକି ନିଆଗଲା । ମାଲଭାଇ କାନ୍ଧେଇ କରି ନେଲେ । ଡାକ୍ତରମାନେ ଦେଖି କହିଲେ ରମେନ୍ଦ୍ର ମରିଛନ୍ତି । ମଶାଣି କିଛି ଦୂର ଅଛି, ହଠାତ୍ ଝଡ଼ ତୋଫାନ ଆରମ୍ଭ ହେଲା । ଏପରି ପ୍ରବଳ ତୋଫାନ ହେଲା ଯେ ମାଲଭାଇମାନେ ଆଉ ଶବକୁ ନେଇ ପାରିଲେ ନାହିଁ, ସେହିଠାରେ ଥୋଇଦେଇ ସମସ୍ତେ ପଳାଇଲେ । କିଏ କେଉଁଠି ଯାଇ ଆଶ୍ରୟ ନେଲେ ତାହାର ପତ୍ତା ମିଳିଲା ନାହିଁ । ହଠାତ୍ ଜଣେ ସନ୍ନ୍ୟାସୀ କେଉଁଠୁ ଆସି ଶବ ପାଖେ ପହଞ୍ଚିଲେ । ସେ ଦେଖି ଜାଣି ପାରିଲେ, ଶବର ପ୍ରାଣ ଅଛି । ଶବକୁ ଉଠାଇ ନେଇ ଚାଲିଗଲେ । କେଉଁଠାକୁ ଗଲେ, କିଏ ଜାଣେ ? ପ୍ରାୟ ଦୁଇ ଘଣ୍ଟା ପରେ ମାଲଭାଇମାନେ ଆସି ଦେଖନ୍ତି ଶବ ନାହିଁ ! କି ଆଶ୍ଚର୍ଯ୍ୟ ! ବହୁତ ଖୋଜି ଖୋଜି ସେମାନେ ଚାଲିଗଲେ । ରମେନ୍ଦ୍ରଙ୍କ ଘର ଚାକରମାନେ ଶବ ସଙ୍ଗେ ଥିଲେ । ସେମାନେ ଫେରିଯାଇ ଏ ସମ୍ବାଦ ଘରେ ଜଣାଇଥିଲେ । ସମସ୍ତେ ଏ ସମ୍ବାଦ ଶୁଣି ଅବାକ୍ ହେଲେ । ଯେଉଁମାନେ ରମେନ୍ଦ୍ରଙ୍କୁ ମାରିବାକୁ ଷଡ଼ଯନ୍ତ୍ର କରିଥିଲେ, ସେମାନେ କ ହେଲା କ ହେଲା କହି କିଛି ବୁଝି ପାରିଲେ ନାହିଁ । ରମେନ୍ଦ୍ରଙ୍କ ଶବ ପୋଡ଼ା ନ ହେଲେ ମାରିବାଟା ତ ହୋଇ ପାରିବ ନାହିଁ । ତେଣୁ ଆଉ ଗୋଟାଏ ଶବ ନେଇ ସକାଳେ ପୋଡ଼ା ପୋଡ଼ି ନ କଲେ ହେବ ନାହିଁ ବୋଲି ମନରେ ସ୍ଥିରକଲେ । ଡାକ୍ତରଖାନାରୁ ଗୋଟିଏ ଶବ ଅଣାଗଲା । ସେ ଶବକୁ ନେଇ ସକାଳେ ଖୁବ୍ ସମାରୋହରେ ପୋଡ଼ିଦେଲେ । ସମସ୍ତେ ଜାଣିଲେ ରମେନ୍ଦ୍ରଙ୍କ ମଲାଶବ ପୋଡ଼ା ହେଲା ।

ସ୍ତ୍ରୀ—ଷଡ଼ଯନ୍ତ୍ର କରି ରମେନ୍ଦ୍ରଙ୍କୁ ମାରିବାକୁ କିଏ କାହିଁକି ଏତେ କଥା କଲା ମ ?

ସ୍ୱାମୀ—କିଏ ଷଡ଼ଯନ୍ତ୍ର କଲା, ତା ଭଗବାନଙ୍କୁ ଜଣା । କେବେ ଲୋକେ ବିଶ୍ୱାସ କରୁଛନ୍ତି, ରମେନ୍ଦ୍ରଙ୍କ ଶଳା ଓ ସ୍ତ୍ରୀ ଏ ଷଡ଼ଯନ୍ତ୍ରରେ ଥିଲେ । ରମେନ୍ଦ୍ର ମରିବା ତ ପ୍ରଚାର କରାଗଲା ! ତାଙ୍କ ଜମିଦାରୀ ପ୍ରଭୃତି ସରକାର ବୁଝାସୁଝା କଲେ । ତାଙ୍କ ସ୍ତ୍ରୀ ମାଲିକାଣୀ ହେଲେ । ତାଙ୍କ ଶଳା କାର୍ଯ୍ୟସବୁ ବୁଝାସୁଝା କଲେ; ମଦ୍ୟ ମଉଜ ମଜଲିସରେ କାଳ କଟାଇଲେ ।

ସ୍ତ୍ରୀ—ସନ୍ନ୍ୟାସୀ ଜଣେ କିଏ ଶବ ନେଇଗଲେ ବୋଲି କହିଲ ? ସେ ଶବ ତ ବଞ୍ଚିଲା, କୁଆଡ଼େ ଗଲା କଣ ହେଲା କିଛି ତ କହିଲ ନାହିଁ ?

ସ୍ୱାମୀ—ରମେନ୍ଦ୍ର ତ ହତଜ୍ଞାନ ହୋଇଥିଲେ ! ଜ୍ଞାନ ହେବା ବେଳକୁ ସନ୍ନ୍ୟାସୀ ତାକୁ ନେଇଗଲେ । ପୂର୍ବ କଥାମାନ କିଛି ମନେ ପଡ଼ିଲା ନାହିଁ । ସେ ସନ୍ନ୍ୟାସୀଙ୍କ ସଙ୍ଗେ ରହି ସନ୍ନ୍ୟାସୀ ହେଲା ଏବଂ ଝଣ୍ଟିଲ୍ୟରେ ରହିଲା । ଏପରି ବାରବର୍ଷ ବିତିଗଲା । ସନ୍ନ୍ୟାସୀ ନାନା ଅଞ୍ଚଳ ପରିଭ୍ରମଣ କଲେ । ବୁଲି ବୁଲି ବାରବର୍ଷ ପରେ ତାଙ୍କ ନିଜ ରାଜ୍ୟରେ ଆସି ପ୍ରବେଶ ହେଲେ । କେତେକ ଲୋକ ତାଙ୍କୁ ଦୋ ଦୋ ଚିହ୍ନା କଲେ । ଲୋକେ କ୍ରମେ ତାଙ୍କୁ ଚିହ୍ନିବାକୁ ଆରମ୍ଭ କଲେ । କଥାଟା ଚାରିଆଡ଼େ ପ୍ରକଟ ହେଲା । ତାଙ୍କ ନିଜ ଭଉଣୀ, ଭଉଜ ତାଙ୍କ ଲକ୍ଷଣ ସବୁ ବାରି ଚିହ୍ନି ନେଲେ, ଚାଲିଚଳଣିକୁ ଲକ୍ଷ୍ୟ କଲେ, ଅନେକ ସଙ୍କେତ ପଚାରି ବୁଝିଲେ । ତାଙ୍କ ରାଜ୍ୟରେ ଚହଳ ପଡ଼ିଗଲା । ପ୍ରଜାପାଟକ, ସାଙ୍ଗସୁଖ, ବନ୍ଧୁବାନ୍ଧବ, ପ୍ରୀୟା ପ୍ରୀତି ସମସ୍ତେ ଚିହ୍ନିଲେ । କେବଳ ତାଙ୍କ ସ୍ତ୍ରୀ କହିଲେ ଯେ ସେ ତା ସ୍ୱାମୀ ନୁହନ୍ତି । ଶଳା ତ ଭଉଣୀ ସଙ୍ଗେ ମିଶିଛି, ସେ ମଧ୍ୟ ମନା କଲା । ଏମାନେ କହିଲେ—ସେ ଜଣେ

ଛଦ୍ମବେଶୀ ସନ୍ନ୍ୟାସୀ, ପ୍ରକୃତ ରାଜକୁମାର ନୁହେଁ । ମନ୍ଦ କର୍ମ ପଡ଼ିଲେ ଏହିପରି ଘଟେ ।

କୁମାରଙ୍କ କର୍ମ ବାମ ହେତୁ ଏପରି ଘଟିଲା । ବଳରାମ ଯୁଧିଷ୍ଠିର ତ କର୍ମକୁ ପାରିଲେ ନାହିଁ, ଆଉ କାହା କଥା କହିବା । ରାଜ୍ୟର ସମସ୍ତ କୁମାରଙ୍କ ପକ୍ଷ ନେଲେ । ସମସ୍ତେ କହିଲେ—ସେ ସନ୍ନ୍ୟାସୀ ରାଜକୁମାର । କିନ୍ତୁ ସ୍ତ୍ରୀ କହିଲା—ନାହିଁ, ସେ ତା ସ୍ୱାମୀ ନୁହନ୍ତି । ସ୍ତ୍ରୀ ହେଲା ବିପକ୍ଷ । ସ୍ତ୍ରୀ ପକ୍ଷରେ ଯେତେ ଲୋକ ରହିଲେ ସେମାନେ କହିଲେ ଏ ଗୋଟାଏ ଠକ ବାବାଜୀ ! ସମ୍ପତ୍ତି ଖାଇବାକୁ ଏ କୁମାର ସାଜି ଆସିଛି । ସରକାର ତ ପୁଣି ସମ୍ପତ୍ତି ବୁଝାସୁଝା କରୁଥିଲେ । ସରକାରୀ କର୍ମଚାରୀମାନେ କହିଲେ—ସେ ଗୋଟାଏ ଠକ । ଏବେ କରାଯାଏ କଣ ? କୁମାର ସମ୍ପତ୍ତି ଦଖଲ କରିବ କିପରି ? ସରକାରୀ କର୍ମଚାରୀଙ୍କ ଦଖଲରେ ସମ୍ପତ୍ତି ଅଛି । ଦେଖାଗଲା ଯେ ମୋକଦ୍ଦମା ନ କଲେ ନ ଚଳେ ।

ସ୍ତ୍ରୀ—ମୋକଦ୍ଦମା କଲେ ତ ଟଙ୍କା ପଇସା ଲାଗିବ ! କୁମାର ହାତରେ ତ ଫଟା ପାହୁଲା ନାହିଁ, ସେ ମୋକଦ୍ଦମା କରିବ କିପରି ?

ସ୍ୱାମୀ—ଆହେ, ସେ କଥା ସତ । ଯେଉଁ ଭଗବାନ କୁମାରଙ୍କୁ ମଶାଣିଭୂଇଁରୁ ଉଠାଇନେଇ ବଞ୍ଚାଇଲେ, ସେ ପୁଣି ଏଥର ବ୍ୟବସ୍ଥା କଲେ । ଭଗବାନ ଇଚ୍ଛା କଲେ କାହାର କିଛି ଅଭାବ ହୁଏ ନାହିଁ । ପ୍ରଜାପାଟକମାନେ ଚାନ୍ଦା କରି ଟଙ୍କା ଯୋଗାଇଲେ । ଆତ୍ମୀୟସ୍ୱଜନ ବନ୍ଧୁବାନ୍ଧବମାନେ ସାହାଯ୍ୟ କଲେ । ଟଙ୍କାର ଅଭାବ ହେଲା ନାହିଁ । ମୋକଦ୍ଦମା ଦାଏର ହେଲା । ଧମାଧୋଟ ବିଚାର ଲାଗିଲା । ଜଣେ ବିଚାରପତି ଏ ମୋକଦ୍ଦମା ବିଚାର କରିବାକୁ ଖାସ ନିଯୁକ୍ତ ହେଲେ । ହଜାର ହଜାର ସାକ୍ଷ୍ୟ ପ୍ରମାଣ ନିଆଗଲା । ବିଚାର ଶେଷ ହେବାକୁ

ପ୍ରାୟ ଦୁଇ ତିନ ବର୍ଷ ଲାଗିଲା । ଶେଷରେ ବିଚାରପତି କୁମାରଙ୍କୁ ଡିଗ୍ରୀ ଦେଲେ ଅର୍ଥାତ୍ କୁମାର ସେଥିରେ ଜିଣିଲେ । ସେ ପ୍ରକୃତ କୁମାର ବୋଲି ବିଚାରପତି ନିଷ୍ପତ୍ତି କଲେ ।

ସ୍ତ୍ରୀ—ଏକଥା ଶୁଣି ତା ସ୍ତ୍ରୀର ମୁହଁ ତ କଳା ପଡ଼ି ଯାଇଥିବ । ସେ ପୁଣି କଣ କଲା ? କପର ମାଇକିନିଆଟାଏ ସେ ମ ?

ସ୍ୱାମୀ—ଆହେ, ସେ ମନେ ମନେ କଣ ପାଞ୍ଚୁଥିବ କେଜାଣି । ପୁଣି ସେ ସ୍ତ୍ରୀ ଅପିଲ ଦାଏର କଲା । ହାଇକୋର୍ଟରେ ଅପିଲ ଦାଏର ହେଲା । ତାଙ୍କ ସ୍ତ୍ରୀ ଆପତ୍ତି କଲେ—ବିଚାରପତି ଉଚିତ ବିଚାର କରିନାହାନ୍ତି । ହାଇକୋର୍ଟ ବିଚାରପତିମାନେ ଆଉଥରେ ବିଚାର କରନ୍ତୁ । ଏଠି ତିନି ବିଚାରପତି ବସି ବିଚାର କଲେ । ଦୁ'ଜଣ ସାହେବ ବିଚାରପତି, ଜଣେ ଆମ ଦେଶୀ ବିଚାରପତି । ହାଇକୋର୍ଟରେ ବିଚାର ଶେଷ ହେବାକୁ ଦୁଇ ତିନି ବର୍ଷ ଲାଗିଲା । ସରକାର ପକ୍ଷ ଆଉ କିଛି କହିଲେ ନାହିଁ, ତୁନି ତାନି ହୋଇ ରହିଲେ ।

ସ୍ତ୍ରୀ—ପୁନର୍ବିଚାର ପାଇଁ ଯେଉଁ ମୋକଦ୍ଦମା ହେଲା, ସେ କଣ ହେଲା ? ତିନିଜଣ ବିଚାରପତି ବିଚାର କଲେ ଅବଶ୍ୟ ଭଲ ବିଚାର କରିଥିବେ ?

ସ୍ୱାମୀ—ପୁନର୍ବିଚାର ଅବଶ୍ୟ ଭଲ ହେଲା । ଦୁଜଣ ବିଚାରପତି ମତ ଦେଲେ କୁମାରଙ୍କ ସପକ୍ଷରେ । ଜଣେ ବିଚାରପତି କୁମାରଙ୍କ ବିପକ୍ଷରେ ମତ ଦେଲେ । ତେବେ ଦୁ'ଜଣଙ୍କ ବିଚାରରେ ଯାହା ହେଲା, ସେ କଥା ହେଲା ସାର । କୁମାର ଜିଣିଲେ । ସେ ପ୍ରକୃତ କୁମାର ବୋଲି ନିଷ୍ପତ୍ତି ହେଲା । ରାଜ୍ୟ ତାଙ୍କର ହେଲା । ସେ

ସରକାରଙ୍କଠାରୁ ରାଜ୍ୟ ଦଖଲ ନେବେ । ରାଜ୍ୟରେ ପୁଣି ରଜା ହେବେ । ବିଶ୍ୱବନ୍ତ ବିଲାତରେ ପୁଣି ଅପୀଲ କରି ଶେଷରେ ହାରିଲା ।

ସ୍ତ୍ରୀ—ଆଚ୍ଛା ହଉହେ, ସବୁ ତ ହେଲା । ଏବେ ବିଶ୍ୱବନ୍ତ କଣ କରିବ ? ସେମାନେ ସ୍ତ୍ରୀ ପୁରୁଷ ହୋଇ ରହିବେକି ?

ସ୍ୱାମୀ—କିପରି ରହିବେ ମ ! ଯାହା ଯାହା ଘଟିଗଲା ଏଥିରେ କିପରି ମୁହଁ ଚୁହାଁଚୁହିଁ ହେବେ ମ ! ଏ କଥା ତ ମନକୁ ଆସୁନାହିଁ । ଧର୍ମଶାସ୍ତ୍ର ଭାଗବତ କହୁଛି—"ଅଣବିଶ୍ୱାସୀ ଯେଉଁ ନର । ତା ପାଦେ କୋଟି ନମସ୍କାର ।" ସ୍ତ୍ରୀ ଯେବେ କହିଥାନ୍ତା ଯେ କୁମାର ତା ସ୍ୱାମୀ, ଏତେ ମାମଲା ମୋକଦ୍ଦମା ହୋଇ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କାହିଁକି ହୋଇଥାନ୍ତା ! ସ୍ତ୍ରୀ ତ ହେଲା ଏ ସବୁ କାଣ୍ଡକାରଖାନାର ମୂଳ କାରଣ ।

ସ୍ତ୍ରୀ—ଆଚ୍ଛା ହଉହେ, ସବୁ ଦୋଷ ତ ସ୍ତ୍ରୀର ବୋଲି କହୁଛ । ଯେବେ ସ୍ତ୍ରୀ ପ୍ରକୃତରେ ଚିହ୍ନି ନ ପାରିଥିବ ତେବେ ତାର ଦୋଷ କଣ ? ପରପୁରୁଷ ବୋଲି ତାର ଯଦି ବିଶ୍ୱାସ ହୋଇଥିବ ତେବେ ସେ କିପରି ତାକୁ ସ୍ୱାମୀ ବୋଲି ସ୍ୱୀକାର କରନ୍ତା ?

ସ୍ୱାମୀ—ହଁ, ସେ କଥା ଯାହା କହିଲେ ସତ, କିନ୍ତୁ ସ୍ୱାମୀ ସ୍ତ୍ରୀ ହୋଇ ଯେଉଁମାନେ ବହୁକାଳ ରହିଥିଲେ ସ୍ୱାମୀଟା ଦଶ ବାର ବର୍ଷ କୁଆଡ଼େ ଯାଇଥିଲା ବୋଲି ଚିହ୍ନାଚିହ୍ନି ହୋଇପାରିବେ ନାହିଁ ! ଯେଉଁ କଥା ସ୍ତ୍ରୀ ବ୍ୟତୀତ ଅନ୍ୟ କେହି ଜାଣିବାର ଉପାୟ ନାହିଁ, ପୁରୁଷ ବ୍ୟତୀତ ଅନ୍ୟ କେହି ଜାଣିବାର ଉପାୟ ନାହିଁ, କୁମାର ସେ ସବୁ କଥା ଠିକଣା କରି କହିଲେ । କୁମାରଙ୍କଠାରେ ଯେତେ ପ୍ରକାର ଲକ୍ଷଣ ଥିଲା ସେ ସବୁ ମିଳିଲା । ଭଉଣୀ, ଭାଉଜ, ସାଇପଡ଼ିଶା, ପ୍ରଜାପାଟକ ସମସ୍ତେ ତାଙ୍କୁ କୁମାର ବୋଲି ଚିହ୍ନିଲେ, ଆହୁରି

ସନ୍ଦେହ ରହିଲା କେଉଁଠି ? ସମସ୍ତେ ତେବେ କଣ ଅନ୍ଧ ହୋଇଗଲେ ! ସବୁ ପ୍ରମାଣ ପାଇ ସାରିବା ପରେ ସ୍ତ୍ରୀର ସନ୍ଦେହ ରହିଲା କେଉଁଠି ? ଏ ଜାଣିଶିଆଣା କଥା ପର ଜଣା ଯାଉ ନାହିଁ କି ?

ସ୍ତ୍ରୀ—ହଁ କହିବାକୁ ହେଲା । ଆଚ୍ଛା ସେ ସ୍ତ୍ରୀ ଲୋକଟି ଏବେ କଣ କରିବ ? ମୋକଦ୍ଦମାରେ ତ ସ୍ୱାମୀର ଜୟ ହେଲା ! ସେ ସ୍ତ୍ରୀଟି କେଉଁଆଡ଼େ ଯିବ ?

ସ୍ୱାମୀ—ସେ କଥା ଦେଖିବାକୁ ବାକି ଅଛି । କଣ ହେବ କେଜାଣି । ଏ ପର୍ଯ୍ୟନ୍ତ ସେ ବିଷୟରେ ବିଶେଷକଥା ଜଣାପଡ଼ି ନାହିଁ । ସ୍ତ୍ରୀ ତ ବିଧବା ହୋଇ ସାରିଛି ! ଦେଖ, ମନଟା ଦର୍ପଣପରି ଭାଙ୍ଗି-ଗଲେ ଯୋଡ଼ି ହୁଏ ନାହିଁ । ପୁରୁଷ ହେଉ, ସ୍ତ୍ରୀ ହେଉ, ଏତେ କଥା ପରେ ଆଉ ସେ ମନ ତ ନ ଥିବ । ପୁରୁଷ ଏପରି ସ୍ତ୍ରୀକି ବିଶ୍ୱାସ କରି ରଖିବ କିପରି ? ସ୍ତ୍ରୀ କେଉଁ ସାହସରେ ବା ପୁଣି ସେ ପୁରୁଷକୁ ମୋର ବୋଲି କହିବ, କିଛି ବୁଝିହେଉ ନାହିଁ । ମଲା ମଣିଷ ଯେତେବେଳେ ମଶାଣିରୁ ଉଠି ଆସିଲା, ସଂସାରରେ ଯେବେ ଏ କଥା ହୋଇପାରେ, ତେବେ ସେ ସ୍ତ୍ରୀ ପୁରୁଷ ଏକାଠି ମିଳି ଘର ନ କରିବେ ବୋଲି କିଏ କହିବ ! ବିଲାତ ଦେଶରେ ସାକ୍ଷ୍ୟ ବିସ୍ତର ଶେଷ ହେବାଯାକେ ସେମାନେ ଏକାଠି ରହିବେ କି ନାହିଁ ସେ କଥା ନେଇ ନାନା ଲୋକେ ନାନାକଥା ଆଲୋଚନା କରୁଥିଲେ । ଏବେ ପୁଣି ଶୁଣାଗଲା ଯେ ଉପରୁ ଚଢ଼କ ପଡ଼ିଲା ।

ସ୍ତ୍ରୀ—ଉପରୁ କଣ ଚଢ଼କ ପଡ଼ିଲା ମ ?

ସ୍ୱାମୀ—ଆହେ, ଗୋଟାଏ କଥା ଅଛି, "ଭୁଞ୍ଜି ବସିଲାବେଳେ କଳୀଶ ବୃଷ୍ଟି କଲା ।" ବିଧାତାର ବଡ଼ ଚମତ୍କାର ବୁଝାମଣା ! ମଣିଷ

ବଗୃର କଛୁ ରହେ ନାହିଁ । କଥା ଅଛୁ—"ଦଇବ ଦଉଡ଼ ମଣିଷ ଗାଈ, ଯେଣିକ ଓଟାରେ ତେଣିକ ଯାଇ ।" ରମେନ୍ଦ୍ର କେତେକ କାଳ କେତେ କଷ୍ଟ ପାଇ କେତେ ମାମଲା ଲଢ଼ି ଶେଷରେ ଜିଣିଲେ । ଆଶା ଥିଲା—ଭଲା ହୋଇ ରାଜଭୋଗ କରିବେ, ମାଫ ବଲାତରେ ମାମଲା ଜିତିବା ଖବର ପାଇବାର ଚାରିଦିନ ପରେ ମରିଗଲେ । ଏତେ ନାଟକ ମୁହୂର୍ତ୍ତକେ ଶେଷ ହୋଇଗଲା । ଆଜ ଏତିକ ।

---

## ଚତୁର୍ଥ ପରିଚ୍ଛେଦ

## ଚାଷୀ ଆନ୍ଦୋଳନ

ସ୍ତ୍ରୀ—ହଇହେ, ଆଜକାଲ ଗୋଟାଏ ଚାଷୀ ଆନ୍ଦୋଳନ କଣ ହେଉଛି ମ ?

ସ୍ୱାମୀ—ହଁ, ଗୋଟାଏ ଆନ୍ଦୋଳନ ଚାଷୀମାନଙ୍କ ଭିତରେ ଚାଲିଛି । ଚାଷୀମାନେ କହନ୍ତି—ତାଙ୍କ ଆର୍ଥିକ ଅବସ୍ଥା ଦିନକୁ ଦିନ ଖରାପ ହେଇ ଯାଉଛି, ତାଙ୍କ ପେଟକୁ ଦୁଓଳ ଦିମୁଠା ଦାନା ମିଳୁ ନାହିଁ, ପିନ୍ଧିବାକୁ ଖଣ୍ଡେ ଭଲ ବସନ ମିଳୁନାହିଁ । ତାଙ୍କ କଥା କେହି ବୁଝିଲେ ନାହିଁ । ରାଜା, ଜମିଦାର, ସାଉକାର, ସରକାର ସମସ୍ତେ ତାଙ୍କ ଧନ ବାର ବାଟରେ ନେଇ ଯାଉଛନ୍ତି । ସେମାନେ କାଙ୍ଗାଳ ହୋଇ ଯାଉଛନ୍ତି । ସେମାନେ ପୁଣି କହୁଛନ୍ତି ସେମାନେ ଜମି ଚଷି ସବୁ କମାଇଲେ, ଫସଲ କଲେ, ଯେ ପାରିଲା ସେ ତାଙ୍କଠାରୁ ନେଇଗଲା, ତାଙ୍କ ଘରେ କୁଲୁଦେଇ ଓଷା !

ସ୍ତ୍ରୀ—ଆଜଯାଏ ତ ଏ ଆନ୍ଦୋଳନ ନ ଥିଲା, ଏବେ ଏ ଆନ୍ଦୋଳନ କିଏ କରୁଛି, କିଏ କରାଉଛି ?

ସ୍ୱାମୀ—ଆମ ଦେଶର କେତେ ଜଣ ଲୋକ ଏ ଆନ୍ଦୋଳନ କରାଉଛନ୍ତି । କେତେକ କଂଗ୍ରେସବାଲା ଏଥିରେ ଅଛନ୍ତି, କେତେକ କେବଳ ଏହି ଆନ୍ଦୋଳନ ମୂଳରେ ଅଛନ୍ତି । ବର୍ତ୍ତମାନ ଏହି କଥା ଚାଷୀ ମୁଣ୍ଡରେ ପଶିବାରୁ ଜମିଦାର ପ୍ରଜା ଭିତରେ ନାନା ଗଣ୍ଡଗୋଳ ହେଉଛି, ନାନା ଦଳ ସୃଷ୍ଟି ହେଉଛି, ଗାଁକେ ତିନି ଫାଙ୍କ, ଘରକେ ତିନି ଫାଙ୍କ—ଭାଇ ଭାଇରେ, ବାପ ପୁଅରେ, ଶାଶୁ ବୋହୂରେ ଅମେଳ ।

ସ୍ତ୍ରୀ—ଏପରି କଲେ କଣ ଚଷା ଦଶା ଫେରିବ ?

ସ୍ୱାମୀ—ଆହେ, ଏପରି କଲେ ବେଶି କିଛି ଫଳ ହେବ ବୋଲି ଜଣାଯାଉ ନାହିଁ । ଗୋଟାଏ କଥା ଅଛି—"ଜୋର ଯାହାର, ମୁଲକ ତାହାର ।" ନିବଳୁଆକୁ ବଳୁଆ ଖାଇଯିବା ଜଗତର ନୀତି । ଯେ ବଳୁଆ ହେଲା ସେ ମାରିପିଟି ସବୁ ଖାଇଲା । କଥା ଅଛି, "ଯେ ଯାହାଠାରୁ ବଳୀଆର ହୋଇ, ତାକୁ ଦେଖିଲେ ବଳେ ଡରୁଥାଇ ।" ପୁଣି କଥା ଅଛି—"ଜୀବ ଏ ଜୀବର ଜୀବନ, ଜୀବର ଜୀବ ଖାଦ୍ୟ ଜାଣ ।" ଏ ଜଗତରେ ଯେତେ ପ୍ରାଣୀ ଅଛନ୍ତି, ସମସ୍ତେ ଅନ୍ୟ ପ୍ରାଣୀଙ୍କି ଖାଇ ବଞ୍ଚୁଥାନ୍ତି । ବଳୁଆ ଜୀବ ନିବଳୁଆ ଜୀବକୁ ଖାଇ ବଞ୍ଚୁଛି । ସାରା ଜଗତ ଏହି ହିସାବରେ ଚାଲିଛି । ବଡ଼ ମାଛ ସାନ ମାଛକୁ ଖାଉଛି । ବାଘ ମଣିଷକୁ ଖାଉଛି । ମଣିଷ ମାଛକୁ ଖାଇ ଦେଉଛି । ଏହିପରି ସଂସାରରେ ଗୋଟାଏ ଗୋଡ଼ିଆ ଗୋଡ଼ି ଖେଳ ଚାଲିଛି । ବଳୁଆ ନିବଳୁଆ ପଛରେ ଛକି ଗୋଡ଼ାଉଛି, ବାଗ ପଡ଼ିଲେ ଧରି ମାରି ଖାଇଦେଉଛି ।

ସ୍ତ୍ରୀ—ଯେ ଶାଗ ଭାତ ଖାଉଛୁ, ସେ ତ ପ୍ରାଣୀବଧ କରୁନାହିଁ ?

ସ୍ୱାମୀ—କରୁଛୁ । ଧାନ ଗଛ, ଶାଗ—ଏମାନଙ୍କର କଣ ପ୍ରାଣ ନାହିଁ ? ପ୍ରାଣ ନ ଥିଲେ ସେ ଗଛ ବଢ଼ନ୍ତା କପରି ? ଭାଗବତ କହୁଛି ପରା, "କାଷ୍ଠ ପାଷାଣେ ତରୁ ତୃଣେ, ବସନ୍ତ ଅନାଦି ପ୍ରମାଣେ ।" ଭଗବାନ ସବୁଠି ଅଛନ୍ତି, ସବୁର ପ୍ରାଣ ଅଛି । ପ୍ରାଣୀ ପ୍ରାଣୀକି ଖାଉଛି । ଯେ ଧନୀ, ଯେ ବଳୁଆ, ସେ ନିର୍ଦ୍ଧନ ନିବଳୁଆ-ଠାରୁ କଳେ ବଳେ କୌଶଳେ ନେଇ ଯାଇ ଆପଣା କାମ ଚଳାଉଛି । ବିଲେଇ କୁକୁର ପ୍ରଭୃତିଙ୍କି ଦେଖୁନାହିଁ, କପରି ଖାଇବା ଜନିଷ ପାଇଁ କାମୁଡ଼ା କାମୁଡ଼ି ହେଉଛନ୍ତି ।

ସ୍ତ୍ରୀ—ପଶୁମାନେ ସିନା ସେପରି ହେଉଛନ୍ତି, ମଣିଷ କଣ ପଶୁ ?

ସ୍ୱାମୀ—ମଣିଷ ଆହାର ନିଦ୍ରା ଭୟ ମୈଥୁନ ବିଷୟରେ ପଶୁ ସଙ୍ଗେ ସମାନ । ଗୀତାରେ ପରା ଭଗବାନ ଶ୍ରୀକୃଷ୍ଣ ଏ କଥା କହିଛନ୍ତି—

"ଆହାର ନିଦ୍ରା ଭୟ ମୈଥୁନଂ ଚ,
ସାମାନ୍ୟ ମେତତ୍ ପଶୁଭିର୍ନରାଣାଂ"

ଭଗବତ କହିଛି ପରା—"ମନୁଷ୍ୟ ଜନ୍ମର ଏ ଲାଭ, ଯହିଁ ଗୋବିନ୍ଦେ କରେ ଭାବ ।"

ସ୍ତ୍ରୀ—ତେବେ ଏପରି ଆନ୍ଦୋଳନ କଲେ କଣ ତାଙ୍କ ଅବସ୍ଥା ବଦଳିଯିବ ?

ସ୍ୱାମୀ—ଅସ୍ୱାଗ୍ୟ କଥା ! ଖାଲି ବକ୍ତୃତା କଲେ, ବକ୍ତୃତା ଶୁଣିଲେ, ବାଦ ଅହଙ୍କାର କଲେ କଣ ଅବସ୍ଥା ବଦଳିଯିବ ?

ଭାଗବତ କହୁଛି, "ସ୍ୱେ ତାତ କର୍ମ ପାଦେ ସେବ, କର୍ମଠୁଁ ନାହିଁ ଅନ୍ୟ ଦେବ ।" କର୍ମ ହେଉଛି ମୂଳ, କର୍ମ କର ଧର୍ମୀ ହୁଅ, ସୁସ୍ଥ ସବଳ ହୁଅ, ପାଠ ପଢ଼, ଶିଳ୍ପ ବାଣିଜ୍ୟରେ ମନ ଲଗାଅ ତେବେ ଅବସ୍ଥା ବଦଳିଯିବ । ନିଜ ହିସାବ ନିଜେ ବୁଝ । କିଏ କିଏ କେଉଁ ବାଟରେ ତାଠାରୁ ନେଉଅଛନ୍ତି, କାହିଁକି ନେଉଛନ୍ତି ବୁଝ । ସେ ବାଟ ବନ୍ଦ କର । ଏପରି କଲେ ବଳେ ଅବସ୍ଥା ବଦଳି-ଯିବ । ଏପରି ନ କରି କେବଳ କଳି କରି କହିଛି ଲଭ ନାହିଁ । ମୁଁ ଏ ବିଷୟରେ ଗୋଟିଏ ଗୀତ କରିଥିଲି, ଶୁଣିବ ?

ଚଷା, କେବେ ତୋ ମନ୍ଦଦଶା ଫେରିବ,
ଧନ ଜନ ଶିକ୍ଷା ସମ୍ପତ୍ତି ବଢ଼ିବ । ପଦ ।
କଥା କୁହୁକରେ ମାତି ନ ଭୁଲି ଭାଇ,
ଆକାଶ କୁସୁମ ତୋଳି ନ ହୁଅ ବାଇ ।
ଧୀର ମନେ ବିଚାରି, ନୁହ କେବେ ଅସ୍ଥିର,
କେଉଁ କାରଣୁ ତୋର ଅବସ୍ଥା ନାରଖାର,
ଘର ଖଣ୍ଡିକ ତୋର ହୁଏ ନାହିଁ ଛପର,
ତୋ ଧନ ନେଇ ପର, ତୋଳନ୍ତି କୋଠାଘର ।
ଖାଲି କଥା ଶୁଣିକି ପେଟ ପୂରିବ ।୧।
ଖରାକାକର ଖାଇ ତୁ ଅରଜୁ ଧନ,
ପେଟକୁ ହଉଳି ତୋତେ ନ ମିଳେ ଅନ୍ନ
ତୋ ଦଶା ହୀନମାନ, ନ ମିଳଇ ବସନ,
କେଉଁଠି ସନମାନ, ନ ପାଇ କେଉଁ ସ୍ଥାନ ।
ଚିଣ୍ଡା କନା ମଳିନ, ପିନ୍ଧି ତୁ କାଟୁ ଦିନ
ତୋତେ ମଣନ୍ତି ସାନ, ନ ଦିଅନ୍ତି ଆସନ ।
ତୋର ଧନ କେ ନିଏ ତୁହି ଗଣିବ ।୨।

ତୋ ପିଲ୍ଲ ହେଲେ ମୂରୁଖ ପାଠ ନ ପଢ଼ି,
ଋଣ କରି ବିକି ଦେଉ ତୁ ଜମିବାଡ଼ି ।
ଆନ ଗ୍ରାମେ ଯାଇ କୁଲି ମୂଲିଆ ହୋଇ,
ପର ପଦାରେ ଉଷ୍ମ ମୁଣ୍ଡ ବିକୁ ତୁ ଖାଇ ।
ଯେତେ ଆଣିଲେ ତୁମ୍ଭ ପେଟ ତ ନ ପୂରଇ,
ଖଜଣା ଦେଲୁ ନାହିଁ ଜମି ନିଲାମେ ଯାଇ ।
ଚିପି କାକର କି ରେ ଘଡ଼ା ପୂରିବ । ୩ ।

ଅଛି ସେହି ଜମିବାଡ଼ି ଅଛି ସେ ଘର,
ବାପ ଅଜା ସେଇଥିରେ ଥିଲେ ଅମୀର ।
ହେଲୁ ତୁମ୍ଭ ଫକୀର ଭାଙ୍ଗିଲା ବଳ ତୋର,
ଓଲୁ ହେଲ ନକରି, କିଛି ବୁଝି ନ ପାର ।
ଯେ କହେ ଯେଉଁ ଗୀର, ତାକୁ ବିଶ୍ୱାସ କର,
ନିଜ ବୁଦ୍ଧି ବିଚାର ହଜାଇଗଲା ତୋର ।
ତୋତେ ନିଗମ ପଥ କେ ଦେଖାଇବ । ୪ ।

ଦିନୁ ଦିନ ବଢ଼ୁଅଛି ତୋର ଅଭାବ,
ନଷ୍ଟ ହେଉଅଛି ତେଣୁ ତୋର ସ୍ୱଭାବ ।
ଧର୍ମ କର୍ମରେ ମନ ନ ଦେଲେ କଦାଚନ,
ସତ୍ୟ ପଥ ତେଜିଣ ଅସତ୍ୟେ ଦେଲ ମନ ।
ପରବାଦ କନ୍ଦଣ କଲ ସଦା ଭୂଷଣ,
ଖଟୁଛ ନିଶିଦିନ କପରି ହେବ ଧନ ।
କର୍ମ ନ ଥିଲେ କାହୁଁ ଧନ ମିଳିବ । ୫ ।

ସ୍ତ୍ରୀ—ଚଷାମାନେ କଣ କର୍ମ କରୁନାହାନ୍ତି ? ଚାଷ ବାସ ପୁଣି ତ ସେହିମାନେ କରୁଛନ୍ତି । ସମସ୍ତେ କହୁଛନ୍ତି ଏ କାଳକୁ

ବେଶି ଫଳ ଫଳୁ ନାହିଁ, ଆଗେ ଯେଉଁ ମାଣ ପାଞ୍ଚ ଭରଣ ଫଳୁଥିଲା ଏବେ ଦୁ ଭରଣ ଘଟୁନାହିଁ । ଫସଲ ଊଣା ହେଲାରୁ ଚଷାକୁ ନଅଣ୍ଟ ପଡ଼ୁଛି । ସେ କଣ କରିବ ?

ସ୍ୱାମୀ—ଆହେ କର୍ମ କରୁଛନ୍ତି ଯେ, କର୍ମ କଲା ଭଳି କରୁ ନାହାନ୍ତି । କୃଷି ତ ଗୋଟିଏ ବଡ଼ ବିଦ୍ୟା । ତାର ପାଗଯୋଗ, ଖତ, ବିହନ, ମାଟି, କୃଷି କେତେଗୁଡ଼ିଏ କଥା ଜାଣିବା ଆବଶ୍ୟକ । ଆଗେ ଲୋକେ ଶାସ୍ତ୍ରବିଧି ଅନୁସାରେ କୃଷି କରୁଥିଲେ । ଏବେ ଯେଉଁମାନେ କୃଷି କଲେ ସେମାନେ ସବୁ କଥା ପାସୋରିଲେ । ସେହି ଜମି ତ ଅଛି, ଜମିର କିଛି ଦୋଷ ନାହିଁ । କଥା ଅଛି, "ଅକର୍ମା ଭୂମି ନନ୍ଦନ୍ତି ।" କହୁଛି ଶୁଣ !

ଜୃଷି ବିଦ୍ୟା ପାସୋରିଲେ ନ ଦେଲେ ମନ,
ଠିଆ ଠିଆ ଧରି ଆଡ଼େ ବୁଣିଲେ ଧାନ ।
ନ କଲେ କରଷଣ ନ ବାଛିଲେ ବିହନ,
ଖତ ମାଟିରେ ମନ ନ ଦେଲେ କଦାଚନ ।
ହିଡ଼କୁ ହାଣି ସାନ କଲେ କଳ କରିଣ,
ବଳଦ ନୁହେ ଝାଣ ହଳୁଆ ବଳହୀନ ।
ଏହି କୃଷିରେ କେତେ ଅବା ଫଳିବ ? । ୬ ।

ଆହେ, ଶାସ୍ତ୍ରରେ ଅଛି—ଧାନ କୃଷି ସାତ ଓଡ଼ । ଏବେ ତ ଓଡ଼େ ଦି'ଓଡ଼ ହେଲା ନାହିଁ, ଭୂମି କର୍ଷଣ ହେବ କପରି ? ଭଲ ତ ଖତ ମାଟି ଦେଖିଲା ନାହିଁ, ଗୋଲ୍ଲ ଗୋଡ଼ ବେଙ୍ଗଳା ଧାନରୁ ବିହନ ରଖିଲା, ପାଗଯୋଗ ତ କେହି ଜାଣିଲେ ନାହିଁ । ଯେ ପାନ କଲେ ସେ ଆଉ ଧାନକୁ ପଚାରିଲେ ନାହିଁ ।

ଯେତେ ଚଷା ଲଭ ଆଶେ କଲେକ ଧାନ
ଗୁଣ୍ଡଦେଲେ ଆଉ ସବୁ ଫସଲମାନ ।
ଧାନ ଶସ୍ତା ହେଲା, ଖରଚ ନ ଜୁଟିଲା,
ବଳ ବୟସ ଗଲା, ପେଟ ତ ନ ପୂରଲା ।
ଋଣ ଘର ବଢ଼ିଲା, ସାଉକାର ନ ଦେଲା,
ଖଜଣା ନ ଉଠିଲା, ଜମି ବିକା ହୋଇଲା—
କୃଷୀ ଏଥି ଚିନ୍ତାରେ ଦେହ ଖରବ ।୭।

ସ୍ତ୍ରୀ—ଆଚ୍ଛା ହଇହେ, ମଣିଷଗୁଡ଼ାକ ଗ୍ଲେଟିଆ ଗ୍ଲେଟିଆ ହୋଇ ଯାଉଛନ୍ତି କାହିଁକି ? ଆଗେ ଯେପରି ଧାଙ୍ଗଡ଼ା ମରଦମାନେ ଥିଲେ, ଏବେ ତ କାହିଁ ଗୋଟିଏ ଦେଖାଯାଉ ନାହାନ୍ତି ! କ୍ରମେ ତ ସାନ ସାନ ହୋଇ ଯାଉଛନ୍ତି । ଆଉ କେତେ ଦିନେ ମଣିଷ କଣ ବାଇ-ଗଣଙ୍କୁ ଆଙ୍କୁଡ଼ରେ ତୋଳିବେ କି ?

ସ୍ୱାମୀ—କ୍ରମେ ଲୋକେ କ୍ଷୀଣାୟୁ, କ୍ଷୀଣବୀର୍ଯ୍ୟ, କ୍ଷୀଣବଳ ହୋଇ ଯାଉଛନ୍ତି । ଅଳ୍ପ ବୟସରେ କେତେ ଲୋକ ମରି ଯାଉଛନ୍ତି । ସାରା ଭାରତବର୍ଷରେ ଲୋକେ କ୍ଷୀଣାୟୁ ହୋଇ ଯାଉଛନ୍ତି, ବିଶେଷତଃ ଆମ ଓଡ଼ିଶା ଲୋକେ ବେଶି କ୍ଷୀଣାୟୁ ହେଉଛନ୍ତି ।

ଜଳ ପବନରେ ଚଳୁଅଛି ଏ ଦେହ,
ଆଉ ଅଧିକ କି ଅଛି ଏଥିରୁ କହ ।
ପିଇ ଡଳୁଆ ଜଳ, ପଙ୍କିଳ ଅନିର୍ମଳ,
ଦାଣ୍ଡ ଦୁଆରେ ମଳ, ଖତଗଦା କେବଳ ।
ପବନ ଅନିର୍ମଳ ରୋଗ ବୀଜ କେବଳ,
ରୋଗ ହୁଏ ପ୍ରବଳ, ବୈଦ୍ୟ ନାଳକୁମାଳ ।
ରୋଗ ନ ଛାଡ଼ି ଅଉଷଧି ବିଫଳ ।୮।

ଆୟଠାରୁ ବ୍ୟୟ ବେଶି ଦିନକୁ ଦିନ,
ନତ ସେଥି ଚିନ୍ତାରେ ତା ଶରୀର ଖିନ୍ନ ।
କୁଟୁମ୍ବ ବୃଦ୍ଧି ହେଲା, ଋଣ ଭାର ବଢ଼ିଲା,
ଫସଲ ଊଣା କଲା, ମାପକୁ ନ ପାଇଲା ।
ବନ୍ୟା ଦାଉ ବଢ଼ିଲା, ଫସଲ ଧୋଇନେଲା,
ଏଥିରେ ମଲା ଗଲା, ବଖା ବ୍ରତ ପଡ଼ିଲା ;
ଏଣେ ମାମଲା ମୋକଦ୍ଦମା ଚଳିବ । ୯ ।

ସ୍ତ୍ରୀ—ଲୋକେ ଆୟକୁ ଦେଖି ବ୍ୟୟ କରୁ ନାହାନ୍ତି ? ଏତିକି କଲେ ଆଉ ନଅଣ୍ଟ ହୁଅନ୍ତା ନାହିଁ ।

ସ୍ୱାମୀ—ତା ତ ସତ, କରୁଛି କିଏ ? ତୁମେ ତ ନିଜେ କରି ପାରୁନାହଁ, କହିବ କାହାକୁ ? ଲମ୍ବ ପଣତ ସିନା ସବୁ ଆଡ଼କୁ ପାଏ ! ଖ୍ରୋଟ ପଣତ କେଉଁ ଆଡ଼କୁ ପାଏ ନାହିଁ । ଆୟ ବେଶୀ ଥିଲା ବେଳେ ହାତ ଲମ୍ବ ଥିଲା । ଆୟ କମିଲା, ତେବେକ ସୁଦ୍ଧା ତେମେ କଣ ହାତ ଖ୍ରୋଟ କରି ପାରୁଛ ? ସେତେବେଳେ ଯାହା ଏତେବେଳେ ତାହା । ଯେତେ କହିଲେ ତୁମେ କେହି ସେ ଦିଗକୁ ମନ ଜ୍ଞାନ ଦେଉନାହଁ, ଆଉ କାହାକୁ କହିବ ! ଏ କାଳକୁ ମଧ୍ୟ ଅନାବଶ୍ୟକ ଖର୍ଚ୍ଚ ବଢ଼ୁଛି ।

ପଶ୍ଚିମ ସଭ୍ୟ-ପବନ ଆସିଲା ଉଡ଼ି,
ଉଡ଼ାଇ ନେଉଛି ଧାନ ଟଙ୍କା କଉଡ଼ି ।
ରେଲ ମଟର ଗାଡ଼ି, ଆକାଶ ଯାନ ଚଢ଼ି,
ଲଣ୍ଡନ ଛତା ବାଡ଼ି, ଦୁଇ ଚକିଆ ଗାଡ଼ି,
ଖଦ୍ଦ ବସନ ଛାଡ଼ି ବିଦେଶୀ ଗାଡ଼ି ଗାଡ଼ି,

ଗଞ୍ଜା ଅଫିମ ଛାଡ଼-ଭୁତ ବସିଛୁ ମାଡ଼ ,
ନେଲ ଉଡ଼ାଇ ସୁନା ରୂପା ଦରବ । ୧୦ ।
ନତ ନତ ଲୋଡ଼ା ଯେଉଁ ଦ୍ରବ୍ୟ ଯାହାର,
ବିଦେଶରୁ ଆସି ଭରି ହାଟ ବଜାର ।
ବିକ ଚାଉଳ ଧାନ, କଣେ ଏ ଦ୍ରବ୍ୟମାନ,
ଆପଣା ଦେଶ ଧନ ବିଦେଶକୁ ଚଳୁଣ ।
କଳଗାଈଣାମାନ, ଚଳଚିତ୍ର ନପୂଣ,
ଏଥିରେ ବହୁ ଧନ , ବ୍ୟୟ କରୁଛ ପୁଣ,
ଆନ ଦେଶରୁ ଧନ, ଆଣି ନ ପାର ଜାଣ,
ଧନ ଚ୍ଛାଣି ନେଉଛୁ, ଦେଶ ଗରିବ । ୧୧ ।
ଯେଉଁ ଦେଶ, ବିଦେଶରୁ କଣେ ଦରବ,
ସେ ଦେଶ ଅବଶ୍ୟ ଜାଣ ହେବ ଗରିବ ।
ପିନ୍ଧ ପର ବସନ, ଖାଅ ପର ଅଶନ,
ପର ଦେଶ ପବନ, ସୁଖ ଲଗଇ ଜାଣ ।
ପର ଆଲୋକମାନ, ଚନ୍ଦ୍ର-ଜ୍ୟୋତି ସମାନ,
ବାବୁ ବେଶ ଭୂଷଣ, ବିକୁଛୁ ଦେଶ ଆନ,
ଲକ୍ଷେ ଅରଜ ପକ୍ଷେ କଥାଁ ଅଣ୍ଟିବ । ୧୨ ।
ଦାରିଦ୍ର୍ୟ ରୋଗର ଏହା ମୂଳ ନଦାନ,
ଗାନ୍ଧୀ-ବୈଦ୍ୟ କଥା କେହି କାନେ ନ ଶୁଣ ।
କାଟି ପିନ୍ଧିବା ପାଇଁ, କହିଲେ ଭାଇ ଭାଇ,
ଅର୍ଦ୍ଧ ଉଲଗ୍ନ ହୋଇ, ବୁଢ଼ା ସୂତା କାଟଇ,
ଦେଖି ଶିଖିଲ ନାହିଁ, କପା ତ କଲ ନାହିଁ,
ନଶା ଛାଡ଼ିଲ ନାହିଁ, ଅଧିକା ବୃଥା ପିଇ—
ମନ୍ଦଦଶା କପର ଛୋଡ଼ି ଯୁଝିବ । ୧୩ ।

ସ୍ତ୍ରୀ—ହଇହେ, ଗାନ୍ଧୀ କଥା ଶୁଣୁ ନାହାନ୍ତି ବୋଲି କହୁଛ, କେନ୍ତୁ ଲୋକେ ଗାନ୍ଧୀଙ୍କି ଭାରି ମାନୁଛନ୍ତି, ଗାନ୍ଧୀ ପୂଜା କରୁଛନ୍ତି ; ଗାନ୍ଧୀ ନାମ ଶୁଣିଲେ ତ ଭାରି ମାତି ଉଠୁଛନ୍ତି ।

ସ୍ୱାମୀ—ଆହେ, ଖାଲି ନାମ ଶୁଣି ମାତିଲେ କଣ ହେବ, କାମରେ କଲେ ସିନା ହୁଅନ୍ତା !

ଗାନ୍ଧୀ ଜୟ ଗାନ୍ଧୀ ଜୟ ତୁଣ୍ଡେ ବୋଲନ୍ତି,
ସଭା କରି ଗାନ୍ଧୀ କଥା କାନେ ଶୁଣନ୍ତି ।
ଗାନ୍ଧୀଙ୍କ ଉପଦେଶ, କାମେ ନ କଲେ ଲେଶ
ସଭା ହୋଇଲେ ଶେଷ, ଶୁଣା କଥା ପାଉଁଶ,
ମିଛେ ଫୁଲାଇ ବେଶ, କମ୍ପାନ୍ତି ଦଶ ଦିଶ,
ଆପଣା ସର୍ବନାଶ, କରୁଛନ୍ତି ଅଶେଷ ।
ଗାନ୍ଧୀ ନାମ ଧରିକି ଦୁଃଖ ଘୁଞ୍ଚିବ । ୧୪ ।

ନାମ ଅନୁରୂପ କାମ ନ କଲେ କେହି,
ସେ ନାମ ଜପାରୁ ଫଳ ମିଳିବ ନାହିଁ ।
ନ ଜାଣ ଏହା ଯେବେ, ମହା ମୂରୁଖ ତୁମ୍ଭେ,
ବଞ୍ଚି ରହିବ ଯେବେ, ସୁଖ ସ୍ୱଚ୍ଛନ୍ଦେ ଭବେ,
ମିଳିମିଶି ସରବେ, କର୍ମ୍ମ କରି ମରିବେ ।
ଫଳ ପାଇବ ତେବେ, ସଂଶୟ ନାହିଁ ଲବେ—
ଏହା ନିଗମ ପଥ ହେତୁ କରିବ । ୧୫ ।

ଗାନ୍ଧୀ ବୋଲେ ହିଂସାଭାବ ମନେ ନ ଧରି,
ସର୍ବେ ମିଳିମିଶି କର୍ମ୍ମ କର ନକରି ।
ନ କର ଗଣ୍ଡଗୋଳ ; ସକଳେ ମିଳି ଚଳ,
ସତ୍ୟ ପଥକୁ ଧର, ଛାଡ଼ ମିଥ୍ୟା ବେଭାର,

ଶିଳ୍ପ ବାଣିଜ୍ୟ କର, ଗ୍ରାମରେ ରଖ ମେଳ,
ଗ୍ରାମ ଗଠନ କର—ଯେପରି ଏକଘର ।
ଛୁଆଁ ଅଛୁଆଁ ନର ସକଳେ ଆପଣାର,
ତେବେ ଦେଶରେ ସୁଖଶାନ୍ତି ବଢ଼ିବ । ୧୬ ।

ସ୍ତ୍ରୀ—ଆଚ୍ଛା, ଆଜକାଲି ଅନେକ କଲିକତା ଯାଉଛନ୍ତି, ସେଠି କଣ ବେଶୀ କମାଉଛନ୍ତି ?

ସ୍ୱାମୀ—ଆହେ ଯାଉଛନ୍ତି ସତ ! କିନ୍ତୁ କପାଳ ଥୋଇକରି ଯାଉଛନ୍ତି ନା ନେଇକରି ଯାଇଛନ୍ତି ? ଚକୁଳିଆ ପଣ୍ଡାର ନ ଗାଁ ଗଲେ ସେରେ, ଛ ଗାଁ ଗଲେ ସେରେ ବୋଲି କଥା ଅଛି । ଲୋକେ ତ ଜମିକି ଚିହ୍ନିଲେ ନାହିଁ, ଜମିକି ସେବା କଲେ ନାହିଁ । କଲିକତାରେ କଣ ଟଙ୍କା ଗଛ ଲାଗିଛି କି ଗଲାକ୍ଷଣି ଗଛ ହଲାଇ ଦେଇ ନେଇ ଆସିବେ ? ସେଠି ଯେଉଁ ହାଡଭଙ୍ଗା କାମ କରନ୍ତି, ଆପଣା ଜମିରେ ତହିଁରୁ ଅଧେ କାମ କଲେ ମହାଖୁସିରେ ଚଳନ୍ତେ ।

ଏ ମାଟି ଭିତରେ ଅଛି ସବୁ ଦରବ,
ଯେ ଯେତେ ଦଳିବ ତାକୁ ତେତେ ଫଳିବ ।
ମାଟି ଭିତରେ ଧନ, ମା ବୋଲି ତାକୁ ଜାଣ ।
ତାର ସେବାରେ ମନ, ଲଗାଅ ନିଶିଦିନ,
କୃଷି ବିଧି ବିଧାନ, କର ଶାସ୍ତ୍ର ପ୍ରମାଣ,
ଶିଳ୍ପ ବାଣିଜ୍ୟେ ମନ, ଲଗାଅ ନିଶିଦିନ,
ବିଦେଶୀ ଦ୍ରବ୍ୟମାନ, ଦେଖି ନ ଭୁଲୁ ମନ,
ତେବେ ସହଜେ ଧନ ବୃଦ୍ଧି ହୋଇବ । ୧୭ ।

ସ୍ତ୍ରୀ—ଯାହା କହିଲ ସତ । ଏବେ ଲୋକେ ଆଉ ପୂର୍ବପରି କାମ ଦାମ କରୁନାହାନ୍ତି । ଏବେ ସମସ୍ତେ ସଉକିଆ ହୋଇଯାଉଛନ୍ତି ।

ଘରୁ ବାହାରୁ ବାହାରୁ ବେଳ ପହରେ, ଶେଯରୁ ଉଠିଲା ବେଳକୁ ପହରେ । ଆଗେ ଚାଷୀମାନେ ରାତି ନ ପାହୁ ଉଠି ହଳବାଡ଼ ବୁଲି ଆସୁଥିଲେ । ଆଖୁ, କପା କେତେ କରୁଥିଲେ । ହାଡ଼ଭଙ୍ଗା ଖଟଣି କରୁଥିଲେ, ଖାଇ ପିଇ ଆନନ୍ଦରେ ଥିଲେ ଆଗେ । ପାଞ୍ଚହାତିଆ ମରଦମାନେ ଥିଲେ, ଏବେ ସବୁ କଛିନାହିଁ ।

ସ୍ୱାମୀ—ମୁଁ ତ ସେଇ କଥା କହୁଛି, ତୁମେ ଲୋକଙ୍କଠାରୁ ଲକ୍ଷ୍ମୀ ଛାଡ଼ି ଯାଉଛନ୍ତି । ଲକ୍ଷ୍ମୀ କାହରେ ଥିଲେ ଲୋକେ ସର୍ବଦା ଚଞ୍ଚଳ ଥାନ୍ତି । ଅଲକ୍ଷଣା ଲୋକେ ଅଳସୁଆ, କର୍ମକୁଡ଼ି, ବସୁ ବସୁ ତାଙ୍କୁ ବେଳ ନଅଣ୍ଟ । କଥା ଅଛି, "ଉଦ୍‌ଯୋଗୀ ପୁରୁଷକୁ ଲକ୍ଷ୍ମୀ ପ୍ରାପ୍ତି ହୁଅନ୍ତି । କର୍ମକୁଡ଼ିମାନେ କପାଳ ଆଦରି ବସିଥାନ୍ତି ।"

କରମ କରି ବିଦେଶୀ ଜାତି ସକଳ,<br>
ବଢ଼ାଇଲେ ଧନବଳ ହୋଇ ପ୍ରବଳ ।<br>
ତୁହିଁ ଜଳକା ହୋଇ ବସିଛୁଁ ଆମ୍ଭେ ତୁହିଁ,<br>
ନାନା ଦରବ ଦେଇ ବଦଳେ ଧନ ନେଇ ।<br>
ମନୋହାରୀ ବଶଇ, ମନକୁ ନିଏ ମୋହି,<br>
ଏ କଥା ଜଣେ କେହି ବିଚାର ନ କରଇ ।<br>
କିଣି ବିଦେଶୀ ଛଇ, ଧାନ ଚାଉଳ ଦେଇ,<br>
ଏତେ ଦାଉ କି ଆମ୍ଭ ଦେଶ ସହିବ ! ୧୮ ।

କେଉଁବାଟେ ଧନ ଗଲା ଜାଣି ନ ପାରି,<br>
ସାରା ଦେଶେ କଳାକନା, ଗଲାଣି ବୁଲି ।<br>
ଅନ୍ଧାର ଘରେ ପଶି, ହେଉଛ ଠେଁସା ଠେଁସି,<br>
ଘାଇକ ଘାଇ ଭୂଷି, ହେଉଛ ପରଶଂସି ।

ପର ଦରବେ ଖୁସି, ହେଉଛ ହବାନସି,
କେତେ ପ୍ରକାର ଆସି, କେ ନଏ ଧନ ଶୋଷି ,
ଆଉ କେତେ କାଳେ ଏ ନଦ ଭାଙ୍ଗିବ । ୧୯ ।

ଜରମାନ, ଇଙ୍ଗଲଣ୍ଡ, ଇଟାଲି ଯେତେ,
ଆମେରିକା ଆଦ ସବୁ ଦେଶ ସବୁରେ ।
ଧନ ବଳରେ ବଳୀ, ଶିଳ୍ପ ବାଣିଜ୍ୟ ସ୍ଥଳି,
ଆକାଶେ ଯାନ୍ତ୍ର ଚଳି, ଜଳ ସ୍ଥଳକୁ ବଳି ।
ହଅନ୍ତ ଧଗ ଟାଳି, ବଜ୍ଞାନ ବଦ୍ୟା କଳ,
ନୂତନ ଚିନ୍ତାବଳି ଯାଏ ସେ ଦେଶେ ଖେଳି ।
ଆମ୍ଭେ ଚକଚେ ଦେଖୁ ଥାଇ ସରବ । ୨୦ ।

ସ୍ତ୍ରୀ—ହଁ ମ, ସତେ ସେମାନେ ତ ସେହି ମଣିଷ, ଆମେ ତ ସେହି ମଣିଷ ! ଆମଦେଶ ଲୋକେ ଏତେ ପାଠ ପଢ଼ି ଆଉ କଣ କରୁଛନ୍ତ ମ ? ଗାନ୍ଧୀବୁଢ଼ା ସେଥିପାଇଁ କହୁଛନ୍ତ, ସୂତାକାଟ, ଲୁଗା ପିନ୍ଧ, ନଶ ଛାଡ଼ ; ତାଙ୍କ କଥା ତ କେହି ଶୁଣୁ ନାହାନ୍ତ ?

ସ୍ୱାମୀ—ଶୁଣୁଛନ୍ତ ଯେ, କାମରେ କିଛି କରୁ ନାହାନ୍ତ । କହିବା, ଶୁଣିବା, ସହ୍ୟ କରିବା, ସବୁଠୁ କଷ୍ଟ । ଅନ୍ୟ ଦେଶ ଲୋକେ କେତେ ଚିନ୍ତାକରି, କେତେ ନୂଆ ନୂଆ କଥା ବାହାର କରୁଛନ୍ତ, ସେ ସବୁ ଦେଖିଲେ ଆମ ବୁଦ୍ଧି ବଣା ହୋଇଯାଉଛି ।

ବଡ଼ ସହଜ ଶୁଣିବା, କରିବା କଷ୍ଟ,
ହନୁ ହନୁ ହେଉଅଛି ଦେଶି ନଅଣ୍ଟ ।
ଶସ୍ୟ ଫଳିଲ ଊଣା, ଦେଖିଲେ ବୁଦ୍ଧି ବଣା,
କାହୁଁ ଦେବ ଖଞ୍ଜଣା, ତେଣେ ସାହୁ ଗଞ୍ଜଣା ।

କୁଟୁମ୍ବ ନାହିଁ ଊଣା, ବେଳେ ବେଳେ ଅଲଣା,
ଅଛି ପେଟ ପାଟଣା, ସବୁ ବିଗରେ ଊଣା ।
ବେକୁ ବେକୁ ବଢ଼ୁଛି ସବୁ ଅଭାବ । ୨୧ ।
ନନ୍ଦନ କାନନ ପରି ଥିଲା ଏ ଦେଶ,
ହାତ ଅଳସରେ ବଙ୍କା ହେଲାଣି ନଶ ।
କି ପାଠ ପଢ଼ି ଲୋକ, ହେଲେ ଟବଶି ମୂରୁଖ,
ପର ଦାରବେ ସୁଖ, କାଣନ୍ତି ସିନା ଦୁଃଖ ।
ପାଇଲେ କି ଆଲୋକ, ପାଠୁଆ ଅବିବେକ,
ପର ହାତରେ ବେକ, ଗୁଞ୍ଜି ଦିଅନ୍ତି ଦେଖ ।
ଛାଡ଼ି ନ ପାରନ୍ତି ଏ ଦୁଷ୍ଟ ସ୍ୱଭାବ । ୨୨ ।

ସ୍ତ୍ରୀ—ଆଚ୍ଛା ତେବେ କଣ କରିବା ?

ସ୍ୱାମୀ—କଣ କରିବା କଣ କରିବା ବୋଲି ଜପିଲେ କଣ ହେବ ? ଯେବେ ସମସ୍ତେ ମନଧ୍ୟାନ ଦେଇ ଲାଗି ପଡ଼ନ୍ତେ, ତେବେ ସିନା ଦେଶଟା ଉଠନ୍ତା ! ମାଇପେ ମିଣିପେ ସମସ୍ତେ ଅଣ୍ଟା ଭିଡ଼ିଲେ ଦେଶଟା ଉନ୍ନତ ହେବ । ଆଚ୍ଛା ଆଜି ଏତିକି ଥାଉ ।

———

## ପଞ୍ଚମ ପରିଚ୍ଛେଦ

## କବୀନ୍ଦ୍ର—ରବୀନ୍ଦ୍ର

ସ୍ତ୍ରୀ—ହଇହେ, ପୁସ୍ତକ କିଏ ଜଣେ ବଡ଼ କବି ଆସିଛନ୍ତି କି ? ତାଙ୍କ ଘର କେଉଁଠି ମ ?

ସ୍ୱାମୀ—ସେ ଜଣେ ବଡ଼ କବି । ତାଙ୍କ ନାମ ରବୀନ୍ଦ୍ରନାଥ ଠାକୁର । ତାଙ୍କ ଘର ବଙ୍ଗଳା ଦେଶରେ । ସେ ବହୁତ କବିତା

ପଦ୍ୟରେ ଗଦ୍ୟରେ ଲେଖିଛନ୍ତି । ସେ କେବଳ ଭାରତବିଖ୍ୟାତ ନୁହନ୍ତି, ବିଶ୍ୱବିଖ୍ୟାତ ।

ସ୍ତ୍ରୀ—ବିଶ୍ୱବିଖ୍ୟାତ ହେଲେ କିପରି ମ ? ଏ ସଂସାରରେ କଣ ତାଙ୍କ ପରି କେହି କବି ନାହାନ୍ତି ? ସେ କି କି କବିତା ଲେଖିଛନ୍ତି ?

ସ୍ୱାମୀ—ବିଶ୍ୱବିଖ୍ୟାତ ହେଲେ କିପରି ଶୁଣ । ଇଉରୋପ ମହାଦେଶରେ ଜଣେ ସାହେବ ଥିଲେ । ସେ ବଡ ଧନୀ ଥିଲେ । ସେ ତାଙ୍କ ମୃତ୍ୟୁ ପୂର୍ବରୁ କେତେଲକ୍ଷ ଟଙ୍କା ଜମାକରି ଦେଇଛନ୍ତି । ତହିଁରୁ ବର୍ଷକେ କେତେ ଲକ୍ଷ ସୁଧ ମିଳେ । ସେହି ସୁଧଟା ବୃତ୍ତିରୂପେ ଜଗତବିଖ୍ୟାତ ଲେଖକ ବା କବିଙ୍କି ପୁରସ୍କାର ଦିଆଯାଏ । ସେ ପୁରସ୍କାର ନା "ନୋବୋଲ ପୁରସ୍କାର" । ପ୍ରତି ବର୍ଷ ସେ ପୁରସ୍କାର ଦିଆଯାଏ । ଏ ଜଗତ ମଧ୍ୟରେ ଯାହାଠାରେ ଯେକୌଣସି ବିଷୟରେ ସର୍ବଶ୍ରେଷ୍ଠ ଗୁଣଥିବାର ଦେଖାଯିବ, ସେ ସେହି ପୁରସ୍କାର ପାଇବ । ସେ ଦେଶରେ ଗୋଟାଏ ପରୀକ୍ଷକ ସମିତି ଅଛି । ସେହି ସମିତି ଯାହାକୁ ବାଛିବ ସେ ସେହି ପୁରସ୍କାର ପାଇବ । କବି ରବୀନ୍ଦ୍ର ଖଣ୍ଡିଏ ପଦ୍ୟ ପୁସ୍ତକ ଲେଖିଥିଲେ । ତା ନା ଗୀତାଞ୍ଜଳୀ । ସେ ପୁସ୍ତକ ବଙ୍ଗ ଭାଷାରେ ଲେଖାଯାଇଛି । ସେ ପଦ୍ୟ ପୁସ୍ତକକୁ ଇଂରେଜୀ ଭାଷାରେ ଅନୁବାଦ କରି "ନୋବେଲ ପୁରସ୍କାର" ସମିତିକି ପଠାଯାଇଥିଲା । ସେ ସମିତିଙ୍କ ବିଚାରରେ ଏ ପୁସ୍ତକଟି ସେ ବର୍ଷ ଗୋଟିଏ ଶ୍ରେଷ୍ଠ ଲେଖା ବୋଲି ବିବେଚିତ ହେବାରୁ ସେ ବର୍ଷର ପୁରସ୍କାର ସେ ପାଇଲେ । ତେଣୁ ସେ ବିଶ୍ୱକବି ବୋଲି ପରିଚିତ ହେଲେ ଏବଂ ତାଙ୍କ ନାମ ବିଦେଶରେ ଖ୍ୟାତି ଲାଭ କଲା । ସେହିଦିନୁ ସେ ବିଶ୍ୱକବି ବୋଲି ଖ୍ୟାତ ।

ସ୍ତ୍ରୀ—ସେ କଣ ଗୋଟିଏ ବିଦ୍ୟାଳୟ କରିଛନ୍ତି ପରା ?

ସ୍ୱାମୀ—ହଁ, ସେ ଗୋଟିଏ ଆଶ୍ରମ କରିଛନ୍ତି । ତା ନାମ ଶାନ୍ତି-ନିକେତନ ଏବଂ ବିଶ୍ୱଭାରତୀ ବୋଲି ଗୋଟିଏ ବିଦ୍ୟାଳୟ କରିଛନ୍ତି । ସେଠାରେ ପୃଥିବୀର ସବୁ ଭାଷା ଓ ବିଦ୍ୟାର ଆଲୋଚନା ହୁଏ । ବୋଲପୁରଠାରେ ତାଙ୍କ ଆଶ୍ରମ । ପୃଥିବୀର ନାନା ଦେଶରୁ ଛାତ୍ର ଆସି ସେଠାରେ ପଢ଼ନ୍ତି । ସେ ପୃଥିବୀର ନାନା ଦେଶକୁ ଯାଇ ବୁଲି ଆସିଛନ୍ତି । ଭାରି ବୁଢ଼ା ହୋଇ ଗଲେଣି, ବୟସ ପ୍ରାୟ ୮୦ ହେବ, ଉତ୍ତମ ଲୋକ ।

ସ୍ତ୍ରୀ—ତେମେ କି ବହିଖଣ୍ଡେ ତାଙ୍କୁ ଦେବାକୁ ଯାଇଥିଲ କି ?

ସ୍ୱାମୀ—ପ୍ରାଚୀନ ଉତ୍କଳ ପୁସ୍ତକ ଖଣ୍ଡେ ତାଙ୍କୁ ଉପହାର ଦେବାକୁ ଯାଇଥିଲି । ବଡ଼ ଆଗ୍ରହରେ ସେ ପୁସ୍ତକଖଣ୍ଡି ଗ୍ରହଣ କଲେ । ସେ ବଡ଼ ସ୍ନେହୀ ଲୋକ ପରି ବୋଧହେଲା । ସେ ପୁରୀକି ଆସିଛନ୍ତି ।

ସ୍ତ୍ରୀ—ତାଙ୍କ ନାଁରେ କଣ ଗୋଟିଏ ଗୀତ କରିଥିଲ ପରା ? ବୋଲିଲ ।

ସ୍ୱାମୀ—ହଁ, ଏଣୁ ତେଣୁ ବୃତ୍ତପଦ ଲେଖି ଦେଇଥିଲି । ଶୁଣିବ ତ ଶୁଣ ।

ସ୍ୱାଗତ କବୀନ୍ଦ୍ର, ଠାକୁର ରବୀନ୍ଦ୍ର, ପୁଣ୍ୟପୀଠ ନୀଳାଚଳେ,
କଳିଙ୍ଗୋପକୂଳେ, ପ୍ରାଚୀନ ଉତ୍କଳେ, ଆଗମନ ଶୁଭବେଳେ,
ଲଭି ନାହିଁଟି ସେ ବିଶ୍ୱମୋହନ ଛବି,
ମଧ୍ୟାହ୍ନ ଗଗନେ, ବିଶ୍ୱଜେ ମଣ୍ଡନେ, ପ୍ରାଚୀନ କବିତା ରବି ।୧।

ଯାଇଛୁ କର୍ପୂର, ଅଛୁ ଜନାସାର, ବାସ ଚନ୍ଦନେ ଜଗତେ,
ମୂକତି ଭିଖାରୀ, ସିଦ୍ଧ ବ୍ରହ୍ମଚାରୀ, କବି ପଣ୍ଡିତ ସହିତେ,

ଧାଇଁ ଆସନ୍ତି ଯେ ପିପାସା ମେଣ୍ଟିବ ଏଥି,
ହେଲେହେଁ ପ୍ରାଚୀନା ନିତି ତୁ ନବୀନା, ସାଇତି ଜୀର୍ଣ୍ଣ ବିଭୂତି ।୨

ଅଛି ଉପଇନ୍ଦ୍ର, କବିକୁଳଚନ୍ଦ୍ର, ଅଛି ସାମନ୍ତ ସିଂହାର,
ଅଛି କବିସୂର୍ଯ୍ୟ, ଜୟଦେବ ଆର୍ଯ୍ୟ, ଗୋପାଳକୃଷ୍ଣ ଅମର,
ଗାଇଅଛନ୍ତି ସେ ବିଶ୍ୱ ବିମୋହନ ଗୀତ,
ପଡ଼ିଲେ ଶ୍ରୁତିରେ, ଯତି ମତି ଟଳେ, ଅତୁଳମୟ ଅମୃତ ।୩।

ଶାନ୍ତି ନିକେତନେ, ବସି ନିକାଞ୍ଚନେ, ଖୋଜୁଛି ଶାନ୍ତି ନିଭୃତ,
ବିଶ୍ୱ-ଶାନ୍ତି-ନିକେତନ, ଏ ନିଧାନ, ବାଞ୍ଛା ପୂରଏ ସନ୍ତତ,
ବ୍ରଜେ ପୂରିଛେ ଯେ ଏ ଅନନ୍ତ ପାରାବାର,
ଅନନ୍ତ ମହିମା, ପ୍ରଶାନ୍ତ ସୁଷମା, ଦେବ ଶାନ୍ତି ନିରାଧାର ।୪।

ହେ ବିଶ୍ୱପ୍ରେମିକ, ଶାନ୍ତିବିଧାୟକ, ବିଶ୍ୱଭାରତୀ ବିଧାତା,
ବିଶ୍ୱପ୍ରେମ ଗୀତ, ମଧୁର ସଙ୍ଗୀତ, ଶୁଣି ଭୁଲିବେ ଦେବତା
ଏହି ନିଧାନ ହେ, ବିଶ୍ୱପ୍ରେମ ନିକେତନ,
ସାମ୍ୟ ମୈତ୍ରୀଭାବ, ଧରମ ପ୍ରଭାବ ଜଗତନାଥ ନିଧାନ ।୫।

ପ୍ରାଚୀନ ଉତ୍କଳ, କବିତା ଝଙ୍କାର, ଶିଳ୍ପ ଭାସ୍କର ଚହଳ,
ନାହିଁ ତିନିପୁରେ, ବାଳି ସୁଷମାରେ, ଭୁଲିଗଲେ କେ ଯିବ ବଳି
ମହା ପବିତ୍ର ଯେ ଧୂଳିକଣା ଉତ୍କଳର,
ବୋଲିଦେଲେ ଅଙ୍ଗେ, ପ୍ରେମ ଭକ୍ତିରାଗେ, ମାୟାତାପ ଯିବ ଦୂର ।

ଶାନ୍ତି ନିକେତନ, ନିକୁଞ୍ଜକାନନ, ବସନ୍ତଦୂତ ପଞ୍ଚମେ,
ଗାଇ ବିଶ୍ୱଗୀତ, ବିଶ୍ୱପ୍ରେମେ ମାତି, ବିଭୁପଦେ ଢାଳ ପ୍ରେମେ
ଗୁଣ ଚହଳନ୍ତି ଯେ ଗୁଣିଆ ସିନା ଜଗତେ !
ଗୀତାଞ୍ଜଳି ଶୁଣି କହିଦେଲେ ଗୁଣୀ ଏ ବିଶ୍ୱେ, ଚହଳି ଯେତେ ।୭।

ଆସିଛ ହେ କବି, ଦେଖିଯାଅ ଛବି, ତବ ଭାବେ ଚିତ୍ରକର,
ନ ଅଛି ସମ୍ବଳ, ଦେବ ଏ ଉତ୍କଳ, ତବ ଯୋଗ୍ୟ ଉପହାର ।
ଅଛି କେବଳ ଯେ ପୂରୁବ କୀରତି ଯଶ,
କେତେ ଭକ୍ତ ଆସି, ବେଳାତଟେ ବସି ଲେଖିଗଲେ ଇତିହାସ ।୮।

ଆଜ କେତେ ଆସି, ପଦତଳେ ବସି, ନିରେଖି ମୋହନ ଛବି,
ଲେଖିଗଲ ଆଖି, ସୁସଙ୍ଗୀତ ଲେଖି, ବୋଲାଇଲେ ମହାକବି ।
ମାତ ଜନନୀ ଗୋ ! ଢାଳିଦିଅ ତୋ ଆଶିଷ,
ଲଭି ଦୀର୍ଘାୟୁଷ, ତୋଷି ଜଗଦୀଶ, ଲଭନ୍ତୁ ଶାନ୍ତି ଅଶେଷ । ୯ ।

ସ୍ତ୍ରୀ—ହଇହେ ! ଉପଇନ୍ଦ୍ର, ଅଭିମନ୍ୟୁ, ଗୋପାଳକୃଷ୍ଣ, କବିସୂର୍ଯ୍ୟଙ୍କ ଲେଖାଠାରୁ କଣ ତାଙ୍କ ଲେଖା ଆହୁରି ଭଲ ?

ସ୍ୱାମୀ—ଭଲମନ୍ଦ ଆମେ ବାଛିଲେ କଣ ହେବ ! ସେମାନଙ୍କ ଲେଖାମାନ ଯେବେ ଜଗତ ଦେଖନ୍ତା, ତେବେ କହନ୍ତା—କିଏ ଭଲ କିଏ ମନ୍ଦ । ଉପେନ୍ଦ୍ରଭଞ୍ଜଙ୍କ ସାହିତ୍ୟ ଶିଳ୍ପଚାତୁରୀ, ଅଭିମନ୍ୟୁଙ୍କ ଭାବପ୍ରବଣତା, ଗୋପାଳକୃଷ୍ଣଙ୍କ ଭକ୍ତିରସାଣିତ ମଧୁର ପଦାବଳି, କବିସୂର୍ଯ୍ୟଙ୍କ ଭାବ ସନ୍ଦର୍ଭ, ଜଗତର ଯେ କୌଣସି ଲେଖକ କବି ସାହିତ୍ୟିକକୁ ମନ୍ତ୍ରମୁଗ୍ଧ କରିପାରେ, ମାତ୍ର ସେସବୁ ଉତ୍କଳ ଭାଷାରେ ଲିଖିତ । ଭାଷାନ୍ତର ହୋଇ ଜଗତ ସମକ୍ଷରେ ରଖାଗଲେ ତହିଁର ମହିମା ଜଣା ପଡ଼ନ୍ତା । ଶ୍ରମସ୍ୱୀକାର କରି ସେ କଥା କରୁଛି କିଏ ?

ସ୍ତ୍ରୀ—ଆଚ୍ଛା, ସେ ବହିସବୁ ତ ଓଡ଼ିଆରେ ଛପାହୋଇଛି, ସେ କହିରୁ ଖଣ୍ଡେ ଖଣ୍ଡେ ଇଂରେଜଙ୍କୁ ପଠାଇ ଦେଉ ନାହିଁ ?

ସ୍ୱାମୀ—ଆହେ, ଖାଲି ପୁସ୍ତକ ପଠାଇଦେଲେ ବୁଝିବ କିଏ ? ଆମ ପୁସ୍ତକଯାକ ତ ଓଡ଼ିଆ ଭାଷାରେ ଲେଖା ହୋଇଛି, ସେ ଭାଷା

ବୁଝିବ କିଏ ? ସେ ସବୁ ଇଂରାଜୀ ଭାଷାରେ ଲେଖି ପଠାଇଲେ ଭଲ ହୁଅନ୍ତା । ଇଂରେଜୀ ଭାଷାରେ ଲେଖାହେବ, ପୁଣି ପଦ୍ୟ ହେବ, ତେବେ ଅନ୍ୟ ଦେଶ ଲୋକେ ଓଡ଼ିଆ ଛନ୍ଦ ଗୀତର ମହତ୍ତ୍ୱ ବୁଝି ପାରନ୍ତେ । ମାତ୍ର ଏ କାମ ସହଜ ନୁହେଁ, ବଡ଼ କଠିନ ।

ସ୍ତ୍ରୀ—ଆମ ଦେଶରେ ଇଂରେଜୀ ପଢ଼ୁଆ ଲୋକ ଛତୁପରି ଉଠୁଛନ୍ତି । ଏତକ କାମ କରି ପାରୁନାହାନ୍ତି ?

ସ୍ୱାମୀ—ଖାଲି କ'ଣ ଇଂରେଜୀ ପଢ଼ିଲେ ଇଂରେଜୀ ଭାଷାରେ କବିତା ଲେଖିବ ? ଉପେନ୍ଦ୍ରଭଞ୍ଜ, କବିସୂର୍ଯ୍ୟ, ଗୋପାଳକୃଷ୍ଣ ପ୍ରଭୃତି କବିଙ୍କ ଲେଖା ଅତି ଉଚ୍ଚଧରଣର । ତାଙ୍କୁ ଇଂରେଜୀ କରିବା ସହଜ ନୁହେ । ଓଡ଼ିଆ ଭାଷା ସିନା ଓଡ଼ିଆ ଲୋକେ ବୁଝିପାରିବେ । ଇଂରେଜ, ଜର୍ମାନୀ ଓ ଆମେରିକା ପ୍ରଭୃତି ଦେଶ ଲୋକେ ବୁଝିବେ କିପରି ? ରବିବାବୁଙ୍କ ଲେଖା ଇଂରେଜୀ ଭାଷାରେ ଅନୁବାଦ କରାଯାଇ ପଠାଯାଇଥିଲା । ସେ ବଙ୍ଗଳା ଭାଷାରେ ଲେଖିଥିଲେ । ଯାହାର ଓଡ଼ିଆ ଭାଷା ଓ ଇଂରେଜୀ ଭାଷା ଉଭୟ ଭାଷାରେ ଦଖଲ ଥିବ ସେ ଲେଖି ପାରିବ । ସମସ୍ତଙ୍କ ହାତରେ ହୋଇ ପାରିବ ନାହିଁ । ଗୋଟାଏ ଭାଷାରେ ଲେଖି ତା ଭାବଗୁଡ଼ିକ ଆଉ ଗୋଟିଏ ଭାଷାରେ ପ୍ରକାଶ କରିବା ସହଜ କଥା ନୁହେ ।

ସ୍ତ୍ରୀ—ଆଚ୍ଛା, ଆଉ ତ ଆଜିକାଲି କେହି ପୁରୁଣା କବିତା ପରି କବିତା ଲେଖି ପାରୁନାହାନ୍ତି କାହିଁକି ?

ସ୍ୱାମୀ—କବିତା ଲେଖିବା ଏକ ପ୍ରକାର ଐଶୀ ଶକ୍ତି । ସେ ଶକ୍ତି ସମସ୍ତଙ୍କଠାରେ ନ ଥାଏ । ଦେବୀ ସରସ୍ୱତୀଙ୍କ କରୁଣା ବିନା ଲୋକ ଭଲ ଲେଖାଲେଖି ପାରିବ ନାହିଁ । ଯୋଡ଼ା ଯୋଡ଼ ଲେଖା ଭଲ ହୁଏ ନାହିଁ । ହୃଦୟ କନ୍ଦରରୁ ଯେଉଁ ପ୍ରେରଣା ଆସେ, ସେହି

ଭାବଗୁଡ଼ିକ ପ୍ରକାଶ ହେଲେ ମନୋମୁଗ୍ଧକର ହୁଏ ଏବଂ ହୃଦୟସ୍ପର୍ଶୀ ହୁଏ । ଯେଉଁ କବିତା ବା ଲେଖା ପଢ଼ିଲେ ହୃଦୟରେ ସେହି ଭାବଗୁଡ଼ିକ ଜାଗ୍ରତ ହୋଇ ଉଠେ ସେଗୁଡିକ ଉତ୍ତମ ଲେଖା ଓ କବିତା ।

ସ୍ତ୍ରୀ—ହଇହେ, ମାଇପେ କଣ କବିତା ଲେଖି ପାରିବେ ନାହିଁ ?

ସ୍ୱାମୀ—ମାଇପେ କବିତା ଲେଖିବାକୁ କଣ ମନା ଅଛି ! ଦେବୀ ସରସ୍ୱତୀ କଣ ମରଦ ? ସେ ତ ଜଣେ ରମଣୀ ! ସେ ତ ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ । ତାଙ୍କୁ ତ ସବୁ ପୁରୁଷମାନେ ପୂଜା କରୁଛନ୍ତି । ତାଙ୍କଠାରୁ ବର ପ୍ରାର୍ଥନା କରୁଛନ୍ତି । ଧନର ଅଧିଷ୍ଠାତ୍ରୀ ଦେବୀ ଲକ୍ଷ୍ମୀ । ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ ସରସ୍ୱତୀ । ମାଇପେ ଲେଖିଲେ ଭଲ କବିତା ଲେଖି ପାରିବେ । ଆଜି ଏତିକି ଥାଉ ।



## ଷଷ୍ଠ ପରିଚ୍ଛେଦ

## ଯେଝା କପାଳ ସେ ଭୋଗ କରେ

ସ୍ତ୍ରୀ—ହଇହେ, କହନ୍ତି, "କପାଳ ଲେଖନ, କେ କରିବ ଆନ ।" କପାଳରେ କଣ କିଛି ଲେଖାଥାଏ ? ତାକୁ କଣ କେହି ଆନ କରି ପାରିବ ନାହିଁ ? କାହିଁ ସେ ଲେଖା ତ ଆମେ ପଢ଼ିପାରୁ ନ ଥାଇଁ ।

ସ୍ୱାମୀ—ହଁ, ସେ କଥା ମିଛ ନୁହେ । ମଣିଷ ଏ ଜନ୍ମରେ ଯାହା ଯାହା ଭୋଗ କରିବ, ବିଧାତା ସେ କଥା ନିର୍ଦ୍ଦିଷ୍ଟ କରି ଦେଇଥାଏ । ପୂର୍ବ ଜନ୍ମରେ ମନୁଷ୍ୟ ଯେଉଁ କର୍ମ କରିଥିଲା, ତା ଫଳ ସେ ତ

ଭୋଗିବ, ଅନ୍ୟ କେହି ତ ଭୋଗିବ ନାହିଁ । ପୂର୍ବଜନ୍ମର କର୍ମାନୁସାରେ ଯେଉଁ ଫଳ ଭୋଗ କରିବାକୁ ପଡ଼ିବ ସେଥିର ସୂଚନା ମନୁଷ୍ୟଠାରେ ଲକ୍ଷଣ ରୂପରେ ଲେଖାଥାଏ । କର, କପାଳ, କୋଷ୍ଠି ଏତିକି ସ୍ଥାନରେ ସେ ଲେଖାମାନ ଥାଏ । କର, କପାଳରେ ରେଖା ଆକାରରେ ସେ ଲେଖା ଥାଏ । ସେ ଲେଖା ଆମେ ସାଧାରଣ ଲୋକେ ପଢ଼ିପାରୁ ନାହିଁ ସତ, ମାତ୍ର ଯେଉଁମାନେ ସେ ବିଦ୍ୟା ଜାଣନ୍ତି ସେମାନେ ପଢ଼ି କହିଦେବେ । ଜ୍ୟୋତିଷମାନେ ଜାତକ ଦେଖି କହିଦେବେ ।

ସ୍ତ୍ରୀ—ମାଇପଙ୍କ କପାଳରେ କିଛି ଲେଖା ନ ଥିବ ? ସେମାନେ ତ ସ୍ୱାମୀ କପାଳ ଭୋଗ କରୁଥିବେ ?

ସ୍ୱାମୀ—ନାହିଁ ହେ, ଯେ ଯାହା କପାଳ ସେ ଭୋଗ କରେ । ସ୍ୱାମୀ ସ୍ତ୍ରୀର କପାଳ ଭୋଗ କରେ ନାହିଁ କି ସ୍ତ୍ରୀ ସ୍ୱାମୀର କପାଳ ଭୋଗ କରେ ନାହିଁ । ଶୁଣ, ଜଣେ ବଡ଼ ଧନୀ ମହାଜନ ଥିଲା । ତାର ଦୁଇଟି କନ୍ୟା, ସ୍ତ୍ରୀ, ଭାଇ, ଚାକରବାକର ଥିଲେ । ସେ ଦିନେ ସମସ୍ତଙ୍କୁ ଡାକି, ବସାଇ ପଚାରିଲା ଯେ ସେମାନେ କାହା କପାଳ ଭୋଗ କରୁଛନ୍ତି । ପ୍ରତ୍ୟେକେ କହିଲେ ଯେ ସେ ମହାଜନ କପାଳ ଭୋଗୁଛନ୍ତି । ସାନ ଝିଅକୁ ପଚାରିବାରୁ ସେ କହିଲା, "ମୁଁ ମୋ କପାଳ ଭୋଗ କରୁଛି ।" ମହାଜନ ଏ କଥା ଶୁଣି ଭାରି ରାଗିଗଲା । କହିଲା, "ଆଚ୍ଛା ଦେଖାଇବି, କିପରି ତୁ ତୋ କପାଳ ଭୋଗୁଛୁ ।" ପ୍ରତିଜ୍ଞା କଲା—ତହିଁ ଆରଦିନ ସକାଳେ ଯାହାକୁ ସେ ପ୍ରଥମେ ଦେଖିବ ତା ସଙ୍ଗେ ତାକୁ ବିବାହ କରିଦେବ ।

ସ୍ତ୍ରୀ—ତା ପର ଦିନ କଣ ହେଲା ?

ସ୍ୱାମୀ—ପରଦିନ ପ୍ରାତଃକାଳରୁ ଶଯ୍ୟାରୁ ଉଠି ପ୍ରଥମେ ଦାଣ୍ଡ ଦ୍ୱାର ଫିଟାଇ ମହାଜନ ଦେଖିଲା—ଜଣେ ଦରିଦ୍ର, ରୋଗୀ ପିଣ୍ଡାରେ

ଶୋଇଛି । ଛୁଣ୍ଡାକନା ପିନ୍ଧିଛି, ପେଟ ପିଠିରେ ଲାଗିଯାଇଛି । କଙ୍କାଳ ମାଳ, ବିପଣ୍ଡ କଳା, ନାକରୁ ସିଙ୍ଗାଣି ବୋହି ପଡ଼ୁଛି, ଖୁଁ ଖୁଁ କାଶୁଛି—ଏହିପରି ଏକ ଅଘୋରୂପ ମହୋଧ୍ୱନ ପୁରୁଷକୁ ଦେଖି ମହାଜନ ଝିଅକୁ ଡାକି କହିଲା, 'ଯା ତତେ ଏହି ଲୋକକୁ ବିବାହ କରିଦେଲି, ଟଙ୍କା ପଇସା ନେଇ ତୁ ଯା ।' ସେ ରୋଗୀ ଏ କଥା ଦେଖି ଅବାକ୍, ଭୟରେ ଥରହରକମ୍ପ ହୋଇ କହିଲା,"ନାହିଁ ମହାଜନ, ମୁଁ ବିବାହ ହେବିନାହିଁ । ମୁଁ ତ ନିଜେ ଅଚଳ, ଏହାଙ୍କୁ ନେଇ କଣ କରିବି ?" ଝିଅ କହିଲା,'ନା ନା ସେ କଥା ହେବନାହିଁ । ପିତା ଯେତେବେଳେ ମତେ ତମକୁ ଦେଇ ଦେଲେ, ତୁମ୍ଭେ ଅବଶ୍ୟ ମତେ ନେବ, ଚାଲ ଯିବା ।' ଏହା କହି ତା ହାତ ଧରି ଉଠାଇ ନେଇ ଚାଲିଗଲା । ଯାଇଁ ଯାଇଁ ଅନେକ ଦୂର ଯିବା ପରେ ଗୋଟିଏ ଜଙ୍ଗଲ ଦେଖିଲା । ସେଠାରେ ଗୋଟିଏ ବରଗଛ ଅଛି । ସେହି ବରଗଛ ମୂଳରେ ରୋଗୀକୁ ବସାଇଲା । ବଜାରରୁ ତେଲ ପ୍ରଭୃତି ଜିନିଷପତ୍ର କିଣି ଆଣିଲା, ରୋଷେଇବାସ କରି ରୋଗୀକି ଗଣ୍ଡିଏ ଖାଇବାକୁ ଦେଲା । ତାକୁ ତେଲ ଲଗାଇ ଦେଇ ପୋଛି ପୋଛି କରିଦେଲା । ରୋଗୀ ବଡ଼ ଆରାମରେ ଶୋଇ ପଡ଼ିଲା । ମହାଜନ ଝିଅ ବସି ମନେ ମନେ କଣ ଭାବୁଛି, ଏହି ସମୟରେ ସେ ଗଛ ଉପରୁ ଗୋଟାଏ ଶବ୍ଦ ହେଲା—"ଆଲୋ ମା, ଭାବୁଛୁ କଣ, ଏ ଗଛମୂଳରୁ ଟିକିଏ ଚେର ନେଇ ସେ ରୋଗୀକି ଖୁଆଇଦେ, ତା ପେଟରେ ଗୋଟାଏ ସାପ ଅଛି, ସେ ମରିଗଲେ ତୋ ସ୍ୱାମୀର ରୋଗ ଭଲ ହୋଇଯିବ ।" ଝିଅଟି ଏକଥା ଶୁଣି ଗଛ ମୂଳକୁ ଯାଇ ଖଣ୍ଡେ ଚେର ଆଣି ସ୍ୱାମୀ ତୁଣ୍ଡରେ ଦେଇଦେଲା । ସତକୁ ସତ ଗୋଟିଏ ସାପ ପେଟ ଭିତରୁ ବାହାରି ଆସିଲା—କହିଲା, "ହେ ବୃକ୍ଷ ! ତୁ ତ ମୋ ଗାଈ କହି ମତେ ମାରିଲୁ, ମୁଁ କାହିଁକି ତୋ ଗାଈ ନ କହିବି ।" "ଆଲୋ

ମା, ତୁ ଯେବେ ଏ ଗଛମୂଳ ଛାଡ଼ିବୁ ତେବେ ଅଚଳାଚଳ ସମ୍ପତ୍ତି ପାଇବୁ, ଚିନ୍ତା କରୁଛୁ କିଆଁ ।" କନ୍ୟାଟି ଏ କଥା ଶୁଣି ଅବାକ୍ ହେଲା ଏବଂ ସାପଟି ଏକଥା କହି ମରିଗଲା । କିଛିକ୍ଷଣ ପରେ ସେ ରୋଗୀଟିର ନିଦ ଭାଙ୍ଗିଲା । ତା ଦେହ ସୁସ୍ଥ ଲାଗିଲା । ଦୁହେଁଯାକ ସେହି ଗଛମୂଳେ ବାସ କଲେ । କନ୍ୟା ହାତରେ ଯେଉଁ ଟଙ୍କାତକ ଥିଲା, ସେଥିରୁ ଖର୍ଚ୍ଚକରି ମାସେ ପନ୍ଦର ଦିନ ଚଳିଲେ, କ୍ରମେ ରୋଗୀଟି ସୁସ୍ଥ ହୋଇ ଦିବ୍ୟସୁନ୍ଦର ମୂର୍ତ୍ତି ଧାରଣ କଲା । ଦୁହେଁ ଆନନ୍ଦରେ କିଛିଦିନ ଚଳିଲେ, ଟଙ୍କା ଆସି ସରିଲା ।

ସ୍ତ୍ରୀ—ଟଙ୍କାତ ସରିଗଲା । ପଚିଶଟା ଟଙ୍କା, କେତେଦିନ ଯିବ ! ବସି ଖାଇଲେ ତ ନଈବାଲି ସରିଯିବ ! ସେ ଝିଅଟି ପୁଣି କଣ କଲାମ ?

ସ୍ୱାମୀ—ଆହେ ଭାଗ୍ୟଦେବୀ ଅନୁକୂଳ ହେଲାବେଳେ ସବୁ ବୁଦ୍ଧି ପଶେ । ସ୍ତ୍ରୀ ପୁରୁଷକୁ କହିଲା, "ଆହେ, ଆମେ ତ ଜଙ୍ଗଲରେ ଥାଇଁ, ମୁଁ ଖଣ୍ଡେ କୁରାଢ଼ି କିଣି ଆଣିଛି, ତୁମେ ନେଇକରି ଯାଅ, ଗୋଟାଏ ଲେଖାଏଁ କାଠ ହାଣି ଆଣ, ବଜାରରେ ବିକି ଦେଲେ କିଛି ପଇସା ହେବ, ଖାଇବା ।" ପୁରୁଷ ଏ କଥାରେ ରାଜି ହେଲା । କୁରାଢ଼ି ନେଇକରି ଯାଏ, ଗୋଟାଏଁ ଲେଖାଏ କାଠ ହାଣିଆଣି ଜଣେ ମହାଜନକୁ ଦିଏ, ତାଠାରୁ ଦିଅଣା ଲେଖାଏଁ ଆଣେ । ଏହିପରି ମାସେଯାଏ କାଠ ଆଣିଦେଲା । ଦିନେ ସେ ଝିଅ କହିଲା, "ତେମେ ଯେଉଁ କାଠ ଆଣୁଛ, ତାକୁ ସବୁ ବିକୁଛ । ଆଜି କିଛି ଆଣିଲେ ଆମ ଜାଳ ଖର୍ଚ୍ଚ ଚଳନ୍ତା ।" ସେଦିନ ସେ ଅଧିକା କାଠ କିଛି ଆଣିଲା, ଝିଅ ଦେଖି ସେ କାଠକୁ ଚିହ୍ନିଲା ଯେ ସେ ଚନ୍ଦନ କାଠ । ସ୍ୱାମୀକି ପଚାରିଲା—"ତୁମେ କଣ ଜଣେ ମହାଜନକୁ ସବୁଦିନେ କାଠ

ଛଅ ?” ସେ କହିଲା—ହଁ । “ତେବେ ଚାଲ ମତେ ସେ ମହାଜନ ଘର ଦେଖାଇ ଦେବ ।” ମହାଜନ ଘରକୁ ଯାଇ ତାକୁ ପଚାରିଲା, ତୁମେ ପ୍ରଭିଦିନ ଚନ୍ଦନ କାଠ ନେଇ ଏହାଙ୍କୁ ଦୁଇଅଣା ପଇସା ଦେଉଛ କପରି ? ସାଇପଡ଼ିଶାଙ୍କୁ ଡାକ ମହାଜନକୁ କାଇଲ ମାଲୁଲ କର ପାଞ୍ଚହଜାର ଟଙ୍କା ଆଦାୟ କରି ଆଣିଲା । ଟଙ୍କାତକ ଆଣି ଗୋଟିଏ ଭଲ ଗୃହ ନିର୍ମାଣ କଲା, ଦୋଳ ଉଳୁଚଲା, ଆଉ ଗୋଟିଏ ପୁଷ୍କରଣୀ ଖୋଳାଇଲା । ଏ କାମ ଅନେକ ଦିନ ଲାଗିଲା, ଅନେକ ମୂଲଆ ଲାଗି କାମ କଲେ ।

ସ୍ତ୍ରୀ—ଆଚ୍ଛା, ହଇହେ, ସେ ଝିଅର ବାପ କଣ ଆଉ ଏ ଝିଅକୁ ମନେ ପକାଇଲା ନାହିଁ ?

ସ୍ୱାମୀ—ସେ ଝିଅର ବାପଟା ଜଣେ ବଡ଼ ମହାଜନ ଥିଲା । ତା ଘରେ ମଧ୍ୟ ଦୋଳ ଉଳୁଥା ହୋଇଥିଲା । ଏ ଝିଅ ମଧ୍ୟ ସେ ଦୋଳରେ ବସି ଖେଳୁଥିଲା । ଜାଣ ତ ସବୁ ବେଳ ସମାନ ଯାଏ ନାହିଁ । ଝିଅକୁ ସେ ଦରିଦ୍ର ଲୋକକୁ ଦେବା ପରେ ତା ବ୍ୟବସାୟ ବାଣିଜ୍ୟରେ ଲୋକସାନ ହେଲା, କ୍ରମେ ସମ୍ପତ୍ତିବାଡ଼ି ନିଲାମ ହୋଇଗଲା । ସେ କ୍ରମେ ଦାଣ୍ଡର ଭିକାରି ହୋଇଗଲା । କେଉଁଠି କୁଲିଗିରି କରିବାକୁ ଘରୁ ବାହାରିଲା, ଅନେକ ସ୍ଥାନ ବୁଲିଲା । ଶୁଣିଲା—ଜଣେ କିଏ ପୋଖରୀ ଖୋଳାଉଛି, ଯାଇ ଯାଇ ସେହି ସ୍ଥାନରେ ପ୍ରବେଶ ହେଲା । ଝିଅ ତା କୋଠା ଉପରେ ଥିଲା, ବୁଢ଼ା ଉପରେ ତା ନଜର ପଡ଼ିଲା । ବୁଢ଼ା ତା ବାପ ବୋଲି ଚିହ୍ନିଲା, ଚାକରକୁ କହିଲା ଯା ସେ ବୁଢ଼ାକୁ ଦାଣ୍ଡଦୁଆରେ ବସା । ତାକୁ କହ ଯେ କାମ୍ଭ ଦିଆଯିବ । ଚାକର ଯାଇ ବୁଢ଼ାକୁ ବସାଇଲା ।

ସ୍ତ୍ରୀ—ଝିଅ ବାପକୁ ଦେଖି ଚିହ୍ନାଦେଲା ନାହିଁ କାହିଁକି ମ ?

ସ୍ୱାମୀ—ହଁ ଚିହ୍ନା ଦେବ ଯେ, ବେଳକାଳ ଜାଣି ଚିହ୍ନା ଦେବ । ତା ପରେ ବୁଢ଼ା ପାଖକୁ ତେଲ ଲଗାଇବା ପାଇଁ ଓ ଖଣ୍ଡେ ଭଲ ଲୁଗା ପିନ୍ଧିବା ପାଇଁ ପଠାଇ ଦେଲା । ବୁଢ଼ା ତେଲ ଲଗାଇଲା ବେଳେ ଦାଣ୍ଡଦୁଆରେ ଝୁଲୁଥିବା ଦୋଳି ଉପରେ ନଜର ପକାଇ କାନ୍ଦି ପକାଇଲା । ଏ କଥା ଝିଅ ଉପରେ ଥାଇ ଦେଖୁଥାଏ । ବୁଢ଼ା ତେଲ ଲଗାଇ ଗାଧୋଇଲା, ଲୁଗା ପିନ୍ଧି ବସିଲା । ତେଣେ ଝିଅ ରନ୍ଧାବଢ଼ା ସାରି ଭାତ ବାଢ଼ି ବୁଢ଼ାକୁ ଡକାଇ ପଠାଇଲା । ବୁଢ଼ା ଏସବୁ କଥା ଦେଖି ଅବାକ୍ ହେଲା । କଣ କରିବ, ଏଣେ ତ ଭୋକରେ ପେଟ ଜଳୁଛି । ଗଲା; ଭାତ ପାଖେ ବସିଲା । ଏଣେ ଝିଅ ଆସି ବୁଢ଼ାକୁ ପଚାରିଲା—"ହଇହେ ବୁଢ଼ା ତେମେ ଦାଣ୍ଡ ପିଣ୍ଡାରେ ବସିଥିଲା ବେଳେ ଆଖିରୁ ଲୁହ ଗଡ଼ାଇଲ କାହିଁକି ?" ଝିଅର ଚେହେରା ବଦଳି ଯାଇଛି, ବୁଢ଼ା ତେତେବେଳେ ଯାଏ ଝିଅକୁ ଚିହ୍ନିପାରି ନଥାଏ । ଝିଅ ମଧ୍ୟ ଚିହ୍ନା ଦେଉ ନଥାଏ । ଏପରି ଅବସ୍ଥାରେ ବୁଢ଼ା କହିଲା—"ବୁଝିଲୁ ମା, ମୋର ଏ ଦୋଳିକି ଦେଖି ଗୋଟିଏ କଥା ମନେ ପଡ଼ିଲା । ମୋ ଦୁଆରେ ଗୋଟିଏ ଏହିପରି ଦୋଳି ଥିଲା, ମୋ ଝିଅ ଦୋଳି ସେଥିରେ ଖେଳୁଥିଲା । ମୁଁ ତାକୁ ଗୋଟିଏ ଦରିଦ୍ର ଲୋକକୁ କନ୍ୟା ଦାନ କରି ଦେଇଛି । ସେହି କଥା ମନେ ପଡ଼ିବାରୁ ମୁଁ କାନ୍ଦି ପକାଇଲି ।" ଝିଅ କହିଲା "ବାପ, ମୁଁ ପରା ତମର ସେହି ଝିଅ, ମୋ କପାଳ ମୁଁ ଭୋଗୁଛି ।" ବୁଢ଼ା ଏ କଥା ଶୁଣି ଭାତ ଥାଳି ଛାଡ଼ି ଝିଅକୁ କୁଣ୍ଢାଇ ପକାଇ ଭୋ ଭୋ ଡାକ ପକାଇଲା । ବାପ ଝିଅ ଚିହ୍ନା ଚିହ୍ନି ହୋଇ ରହିଲେ, ବାପ କହିଲା—

"ହିଁଅ, ତୋ କଥା ଠିକ୍, ତୋ କପାଳ ତୁ ଭୋଗୁଛୁ, ମୋ କପାଳ ମୁଁ ଭୋଗୁଛି । ଯାହା କପାଳ ସେ ଭୋଗ କରେ, କେହି କାହା କପାଳ ଛୁଡ଼ ଅନ୍ୟର କପାଳ ଭୋଗ କରେ ନାହିଁ ।"

---

## ସପ୍ତମ ପରିଚ୍ଛେଦ

## ଜଗନ୍ନାଥ ଜଣାଣ

ସ୍ୱାମୀ—ତଉବାହା ଛୁଇ ତଳେ ରଖିବକ ।
ଆହେ ଚକାଆଖି । ଘୋଷା ।

ସଂସାର ସାଗରେ ଭସେ ମୁହିଁ,
ମୀନ ସମ ସଦା ସନ୍ତରଇ ।
ନାହିଁ ଅଳକୂଳ, ଅମାପ ସଲିଳ;
ଖୋଜ ଠାବ ପାରୁ ନାହିଁ ଦେଖି । ୧ ।

ଅଛନ୍ତି କେତେ ଗ୍ରାହବ ବୃହିଁ ।
ତରଙ୍ଗରେ ଗିଳି ଦେବା ପାଇଁ ।
ତିମି ତିମିଙ୍ଗିଳ, ମକର ମଗର,
ରହିଛନ୍ତି ସଦା ମଛେ ଟାକ । ୨ ।

ମନ ମୋର ସଦା ଥରହର,
ସଦା ଚିନ୍ତାରେ ମୁଁ ଜର ଜର
ଏବେ ହରବର, ଉହଳ ବକଳ,
କେତେ ବଳ ମୋର ! ସମ୍ଭଳ କ । ୩ ।

ଘଇ ବୋଲି ଯାକୁ ବୋଲେ ମୁହିଁ,
ଘୋର ଜଞ୍ଜାଳ ଜାଲଟି ସେହି ।
ଯେଣ୍ଣଇ ସେ ଜାଲ, କେତେ ବ୍ୟାଧ ପଲ,
ଅଛନ୍ତି ନରଙ୍କେ ଶର ଯୋଖି । ୪ ।
ବେଳ ଉଣ୍ଡି ମାରୁଛନ୍ତି ଶର,
ରକତରେ ତନୁ ନାରଖାଉ ।
ଚିନ୍ତା ଅନଳ ଜଳାଇ ନିରନ୍ତର,
ଜ୍ଞାଅନ୍ତା ଶିନ୍ତୁଲା ଯାଏ ଶଙ୍କି । ୫ ।
ଜଣେ ହେଲେ କେହି ନାହିଁ ମୋର,
ଆହା ବୋଲି କରିବ ଆଦର ।
ସେହୁ ସାତପର, ଯେ କହଇ ମୋର,
ଆପଣା ସୁଖକୁ ଆଖି ରଖି । ୬ ।
ତୁମ୍ଭେ ପରା ଅନାଥର ନାଥ,
ବଳ ଅଛୁ କି ଏ ସାମରଥ ।
ଆଡ଼େଇ ଆଖିରେ ଚାହିଁଦେଲେ ଥରେ ।
ଗୁରୁ ଦୁଃଖ ମୋର ରହିବ କି । ୭ ।
ପଶୁ ପକ୍ଷୀ ତବ ନାମ ଧରି,
ଏ ଘୋର ସଂସାରୁ ଚଲେ ତରି ।
ମାନବ ଜନମ ପାଇ ମୁଁ ଅଧମ
ମୋ ପାଇଁ ପାଷାଣ ହୋଇଲ କି । ୮ ।
ହଅ ଜ୍ଞାନ-ବହ୍ନି ହୃଦେ ଜାଳି,
ହେବ ଯାଉ ତବ ନାମ ଭାଳି ।
ବୋଲେ ଜଗବନ୍ଧୁ, ଆହେ ଦୀନବନ୍ଧୁ,
କରୁଣା-ଝରଣା ଫିଟିବ କି । ୯ ।

ସ୍ତ୍ରୀ—ହଇହେ, ଲୋକେ କହନ୍ତି ସଂସାର ଜଞ୍ଜାଳରେ ରହିଲେ ହରିନାମ ଜପି ହୁଏ ନାହିଁ । କେତେ ଲୋକ ଘରଦ୍ୱାର ଛାଡ଼ି ମାଠା ବାବାଜୀ ହେଉଛନ୍ତି । ଡୋର କୌପୀନ ନେଇ ହରିମନ୍ଦିର ଚିତା କାଟି କେବଳ ଭିକ୍ଷା ମାଗି ବୁଲୁଛନ୍ତି । ଭିକ୍ଷାଲବ୍ଧ ଧନରେ ପେଟ ପାଳି କେଡ଼େ ସୁଖରେ ଦିନ କଟାଉଛନ୍ତି ! କହିଲ, ଏ କଥା ଭଲ ନୁହେଁ ?

ସ୍ୱାମୀ—ଯାହା ପଚାରିଲ ସେ କଥା ବଡ଼ ବିଷମ । ଭାଗବତ କହୁଛି—"କିଏ ବା ଅଛି କେଉଁ ମତେ, ତାହା ବା ଜାଣିବା କେମନ୍ତେ ।" ଶଙ୍କରାଚାର୍ଯ୍ୟ କହିଲେ—"ଉଦର ନିମିତ୍ତଂ ବହୁକୃତ ବେଶଂ ।" ଦେଖ, ଉଦରଜ୍ୱାଳା ବଡ଼ ବିଷମ ଜ୍ୱାଳା । ଏ ଜ୍ୱାଳା ଅସହ୍ୟ । ଏହି ଉଦର ଜ୍ୱାଳାର ନିବୃତ୍ତି ପାଇଁ ଏ ଭବରଙ୍ଗ ମଞ୍ଚରେ ଲୋକେ ନାନା ବେଶ ଧରି ଅହରହ ନାଚୁଛନ୍ତି । ଏ ନାଟକ ବଡ଼ ବିଚିତ୍ର, ବଡ଼ ରମଣୀୟ, ବଡ଼ ମନୋମୁଗ୍ଧକର, ପୁଣି ଭ୍ରମ-ଭୟଙ୍କର । ପ୍ରତ୍ୟେକ ପ୍ରାଣୀ ଗୋଟିଏ ଗୋଟିଏ ନାଟୁଆ । ଜନ୍ମଠାରୁ ମରଣ ପର୍ଯ୍ୟନ୍ତ ନୃତ୍ୟ ଲାଗିଛି । କେବଳ ଯେ ନାଚୁଛନ୍ତି ତା ନୁହେଁ, ଗୀତ ଗାଉଛନ୍ତି । କିଏ କେତେ ସ୍ୱରରେ ଗାଉଛି ତାର ମଧ୍ୟ ଠିକଣା ନାହିଁ । ଆହେ ଭିକ୍ଷା କରି ପେଟ ପାଳିବା ତ ସୁଖ ବୋଲି କହୁଛ । ଭିକ୍ଷା ଦେବା ଲୋକ ଥିଲେ ତ ପୁଣି ଲୋକେ ଭିକ୍ଷା କରି ପେଟ ପାଳିବେ ! ଭିକ୍ଷା ଦେବାଟା କଣ ସୁଖ ନୁହେଁ ? ଯାହାର ବୃତ୍ତିବାହା ଚଳୁଛି, ସେ ଭିକ୍ଷା ମାଗିବା ଉଚିତ ନୁହେଁ । ସୁସ୍ଥ ସବଳ ଲୋକଙ୍କୁ ଭିକ୍ଷା ଦେବା ମଧ୍ୟ ଉଚିତ ନୁହେଁ ? ହରିନାମ ନେଲେ କଣ କାମ କରିବାକୁ ଶାସ୍ତ୍ରରେ ମନା ଅଛି ? ଏ ସଂସାରଟା ହରିଙ୍କର । ସେ ଏ ଖେଳ ଲଗାଇଛନ୍ତି । ଏ ଖେଳ ଖେଳିବାକୁ ସେ ଆମ୍ଭମାନଙ୍କୁ ସଂସାରକୁ ପଠାଇଛନ୍ତି । ତାଙ୍କ ଇଚ୍ଛା ଅନୁସାରେ

ଏ ସଂସାରରେ ଲୋକେ ଖେଳ ଖେଳୁଛନ୍ତି । ତାଙ୍କର ନାମରେ ସବୁ କାମ କରିଯିବ ।ଭଲ ।

ହରିନାମ ଜପ ନିତ୍ୟ କରୁଥାଅ କରମ,
ଛୁଟିଯିବ ମାୟା-ବନ୍ଧନ ଅଟେ ଏହା ଧରମ । ୧ ।
ଜୀବନେ ମରଣେ ଶୟନେ ସ୍ୱପନେ ଜାଗରଣେ,
ବିଜନ ବସିନେ ଭ୍ରମଣେ ଅଥବା ମହାଧ୍ୟାନେ । ୨ ।
କର ସେହି ନାମ ସ୍ମରଣ ସାଥୀ ଏକା ଜୀବର,
ଆଉ ସବୁ ପଡ଼ି ରହିବ ଛାଡ଼ିଯିବୁ ସଂସାର । ୩ ।
ଧରି ସେହି ନାମ ଅଙ୍କୁଶ, ରିପୁ-କଣ୍ଟକ ମାରି,
ଅବଶ୍ୟ ଆସିବେ ରହିବ ଶଙ୍କା ଜଳା ନ କର । ୪ ।
ଧନ ଜନ ମାନ ମହତ୍ତ୍ୱ ଦମ୍ଭ ଗରବ ଯଶ,
ଆଖି ବୁଜି ଦେଲେ ଅନ୍ଧାର ଦେଖା ନ ଯିବ ଲେଶ । ୫ ।
ଜଣେ କେହି ଇହସଂସାରେ ନାହିଁ ଅମର ହୋଇ,
ଶୂନ୍ୟ-ହସ୍ତେ ଆସିଥିଲୁ ତୁ ଯିବୁ ଶୂନ୍ୟେ ପଳାଇ । ୬ ।
ବଡ଼ ଗର୍ବ କରୁ ମନରେ ପିନ୍ଧି ରାଜମୁକୁଟ,
କେଉଁଠାରେ ପଡ଼ି ରହିବ ଯେବେ ଭେଜିବୁ ଘଟ । ୭ ।
ଧନ ଜନ ମାନ ଶନ୍ଦାରେ ଟୋଟେ ନ ମାଣ୍ଡେ ନନ୍ଦ,
ପାଇଲେ ମନରେ ଲଭୁ ତୁ ସଦା ମହାଆନନ୍ଦ । ୮ ।
ତହୁଁ କଣିକାଏ ବ୍ୟାକୁଳ ହେଉ କ ହରି ଆଶେ,
ହେଉଥିଲେ ହରି ମିଳନ୍ତେ ବଳେ ଆସି ତୋ ପାଶେ । ୯ ।
ବୁଡ଼ିରହି ଧନ-ମଦରେ ଭୁଲି ଯାଉ ହରିଙ୍କି,
ଉପର ମନରେ ଡାକଲେ ଶୁଭିବ ବା କାହିଁକି । ୧୦ ।

ମାରୁ ଯେବେ ତୋର ମନକୁ ଶ୍ରୀଚରଣେ ଲଗାଅ ।
ସଂସାରର ମାୟା କାଳିମା ମନୁ ଛଡ଼ାଇ ଦିଅ । ୧୧ ।
କେତେ ଦିନ ଅବା ଜୀବନ ପାଣି ଫୋଟକା ପରି,
ଯିବୁଁ ଯିବୁଁ କାହୁଁ ଆସିବ ଯମ ନେବ ଓଟାରି । ୧୨ ।
ଏଥିପାଇଁ ତୋର ମନରେ ଏତେ ଦମ୍ଭ ଗରବ,
ନିଶ୍ବାସେ ପାଞ୍ଚଭୂତରେ କେତେ ଦିନ ରହିବ । ।୧୩।
ନର ନାରାୟଣ ସେବାରେ ଲଗା ତୋର ଜୀବନ,
ଜୀବନ ସାର୍ଥକ ହୋଇବ ପ୍ରଭୁ ହେବେ ପ୍ରସନ୍ନ । ୧୪ ।
କର ପ୍ରଭୁ ବାରେ କରୁଣା ବଣା ନୋହୁ ଏ ମନ,
ବୋଲେ ଜଗବନ୍ଧୁ ଶ୍ରୀପଦେ ଥାଉ ସଦା ମଗନ । ୧୫ ।

ସ୍ତ୍ରୀ—ଆହେ, ପ୍ରଭୁଙ୍କୁ କିଏ ନ ଡାକୁଛି ! ଚୋର, ତସ୍କର, ନଷ୍ଟ, ଭ୍ରଷ୍ଟ, ସବୁ ପ୍ରକାର ଲୋକେ ତ ତାଙ୍କୁ ଡାକୁଛନ୍ତି । ନ ଡାକୁଛି କିଏ ?

ସ୍ବାମୀ—ଆହେ, ସମସ୍ତେ ଡାକୁଛନ୍ତି ସତ, କିନ୍ତୁ ଡାକିଲା ପରି ଡାକୁଛି କିଏ ? ସେପରି ବ୍ୟାକୁଳ ହୋଇ ଡାକୁଛି କିଏ ? ଯେ ଡାକୁଛି ତା ଡାକ ଶୁଣାଯାଉଛି, ଯେ ନ ଡାକୁଛି, ତା ଡାକ ଶୁଣାଯାଉ ନାହିଁ । ମଣିଷ ଯେତେବେଳେ ଯାଏ ଆପଣା ଉପରେ ବା ଅନ୍ୟ କାହା ଉପରେ ନିର୍ଭରକରେ ତେତେବେଳ ଯାଏ ତାଙ୍କୁ ଡାକ ଶୁଭେ ନାହିଁ । ଯେତେବେଳେ ମଣିଷ ନିରାଲମ୍ବ ନିରାଶ୍ରୟ ହୋଇ ଡାକେ ତେତେବେଳେ ସେ ଡାକ ଶୁଭେ । ଦ୍ରୌପଦୀ ଯେତେବେଳେ ଦୁଇ ହାତ ଛାଡ଼ିଦେଇ ଡାକିଲେ ତେତେବେଳେ ଶୁଣାଗଲା, ତା ପୂର୍ବରୁ ଶୁଣାଗଲା ନାହିଁ ।

ସ୍ତ୍ରୀ—ଦୁଇହାତ ଛାଡ଼ି ଦେଲାରୁ ଶୁଣିଲେ କାହିଁକି ?

ସ୍ୱାମୀ—ଦୁଇହାତ ଛାଡ଼ିଦେବାରୁ ଜଣାଗଲା ଯେ ସେ ସକଳ ଆଶ୍ରୟ ଛାଡ଼ିଦେଇ କେବଳ ଭଗବାନଙ୍କଠାରେ ଆଶ୍ରୟ ନେଲେ। ନିରାଲମ୍ବ ଭାବରେ ଆତ୍ମସମର୍ପଣ କରିଦେଲେ ସେ ଅବଶ୍ୟ ଶୁଣିବେ। ମଣିଷର ଗୋଟାଏ ଅହଂକାର ଅଛି। ସେ ସବୁବେଳେ ମନେକରେ ମୁଁ ଯାହା କରିବି ତା କରିବି। ଏହି ଅହଂକାର ଥିବାଯାକେ ମଣିଷ ପ୍ରକୃତ ତତ୍ତ୍ୱ ଜାଣିପାରେ ନାହିଁ। ମଣିଷ ଅହଙ୍କାର ଛାଡିଲେ ମନ ନିର୍ମଳ ହୁଏ; ତାର ଦିବ୍ୟଜ୍ଞାନ ହୁଏ, ତାକୁ ସବୁ ଦିଶେ। ଅହଂକାର ଥିବାଯାକେ ସେ ଆପଣାକୁ ଆପେ ଦେଖି ପାରେ ନାହିଁ। ଆଜି ଏତିକି ଥାଉ।

—*—

## ଅଷ୍ଟମ ପରିଚ୍ଛେଦ

## ଇଉରୋପ ସମର

ସ୍ତ୍ରୀ—ହଇହେ, ବର୍ଷେ ଦେଢ଼ ବର୍ଷ ହେଲା ଖବର କାଗଜରେ ଖାଲି ଯୁଦ୍ଧ ଖବର ବାହାରୁଛି। ଏଡ଼େ ବଡ଼ ମହାଭାରତ ଯୁଦ୍ଧଟା ଅଠର ଦିନରେ ସରିଗଲା! ଏ ଯୁଦ୍ଧ କିଣ ଏତେକାଳ ହେଲା ଲାଗିଛି ମ? କିଏ ଯୁଦ୍ଧ କରୁଛି? କାହା ସଙ୍ଗେ ଯୁଦ୍ଧ କରୁଛି? ମୁଁ ତ କିଛି ବୁଝିପାରୁ ନାହିଁ!

ସ୍ୱାମୀ—ଆହେ, ତୁମେ ତ କେତେ ଗୁଡ଼ାଏ କଥା ପଚାରିଦେଲ। କଥା କହି ବସିଲେ ଗୋଟାଏ ମହାଭାରତ ହେବ। ଆଚ୍ଛା, ଠିକେ ଠିକେ କହିବା। ମହାଭାରତଯୁଦ୍ଧ କଥା କହିଲ ଯେ ସେ ତ ଦୁଇ ଭାଇଙ୍କ ଭିତରେ ଯୁଦ୍ଧ ହୋଇଥିଲା। ଗୋଟିଏ ଭାଇ କହିଲା ଆଉ

ଗୋଟିଏ ଭାଇକୁ ଭାଗ ଦେବ ନାହିଁ । ଏ ଭାଇ ପକ୍ଷରେ ଦଳେ ରହିଲେ, ସେ ଭାଇ ପକ୍ଷରେ ଦଳେ ରହିଲେ । ଦୁଇ ପକ୍ଷରେ ଦୁଇ ଦଳ ରହି କାଟି ମରିଗଲେ । ଶକୁନି ଦୁର୍ଯ୍ୟୋଧନର ମାମୁଁ; କିନ୍ତୁ ସେ ହେଲା ତାର ମନ୍ତ୍ରୀ । ତାର ଦୁର୍ଯ୍ୟୋଧନ ଉପରେ ରାଗଥିଲା, କାରଣ ଦୁର୍ଯ୍ୟୋଧନ ଶକୁନିର ଶତଭାଇଙ୍କୁ ଖାଇବାକୁ ନ ଦେଇ ମାରିଥିଲା । ଶକୁନିର ସଂକଳ୍ପ ଦୁର୍ଯ୍ୟୋଧନର ବଂଶ ନାଶ କରିବ । ମୁହଁରେ ଗୋଟାକଯାକ ଦୁର୍ଯ୍ୟୋଧନର, ପେଟ ଭିତରେ ତାର ବଂଶନାଶ ଇଚ୍ଛା ! ଦୁର୍ଯ୍ୟୋଧର ଅନ୍ୟାୟ ! ଅର୍ଜୁନ ଯୁଧିଷ୍ଠିରଙ୍କର ନ୍ୟାୟ ପକ୍ଷ । ଏ ଯୁଦ୍ଧ ସାମାନ୍ୟ ଦୁଇଭାଇଙ୍କ ମଧ୍ୟରେ ହେଲା । ବର୍ତ୍ତମାନ ଯେଉଁ ଇଉରୋପ ଯୁଦ୍ଧ ହେଉଛି ; ସେ ତ ମହାଘୋର ସମର । ଅନେକ ଜାତି ଏଥିରେ ସମ୍ପୃକ୍ତ । ଏ କଥା ଜାଣିବାକୁ ହେଲେ ଟିକିଏ ସେ ଦେଶମାନଙ୍କ ଇତିହାସ ଭୂଗୋଳ ଜାଣିବା ଆବଶ୍ୟକ ।

ସ୍ତ୍ରୀ—ଆମେ ମାଇପି ଲୋକେ ଏତେ କଥା କେଉଁଠୁ ଜାଣିବୁ ମ ?

ସ୍ୱାମୀ—ମାଇପେ ତ ଆଜକାଲି ପାଠ ପଢ଼ି ସବୁ ଜାଣୁଛନ୍ତି । ତୁମେ ନ ଜାଣିବ କାହିଁକି ? ଦେଖ, ଏ ପୃଥିବୀରେ ଅନେକଗୁଡ଼ିଏ ମହାଦେଶ ଅଛି । (୧) ଏସିଆ (୨) ଇଉରୋପ (୩) ଆଫ୍ରିକା (୪) ଆମେରିକା । ଏ ମହାଦେଶ ମଧ୍ୟରେ ଅନେକ ଗୁଡ଼ିଏ ଦେଶ ଅଛି । ଏସିଆ ମହାଦେଶ ମଧ୍ୟରେ—(୧) ରୁଷିଆର ଅଧେ, (୨) ଜାପାନ, (୩) ଚୀନ୍, (୪) ଭାରତବର୍ଷ, (୫) ତୁର୍କି, (୬) ପାରସ୍ୟ, ଆରବ, କାବୁଲ, କାନ୍ଦାହାର ଇତ୍ୟାଦି । ଇଉରୋପ (୧) ଇଂଲଣ୍ଡ, ସ୍କଟଲଣ୍ଡ, ଆୟର୍ଲଣ୍ଡ, ଜର୍ମାନୀ, ଫ୍ରାନ୍ସ, ଇଟାଲି, ହଲଣ୍ଡ, ନରୱେ, ସୁଇଜରଲଣ୍ଡ ଇତ୍ୟାଦି । ଆଫ୍ରିକା ଆମେରିକା ମଧ୍ୟରେ ସେହିପରି

ଅନେକଗୁଡ଼ିଏ ଦେଶ ଅଛି । ଏ ସବୁ ଦେଶରେ ମଣିଷ ଅଛନ୍ତି । ଭାରତବର୍ଷ ଛଡ଼ା ଆଜି ସବୁ ଦେଶଗୁଡ଼ିକ ସ୍ୱାଧୀନ ଦେଶ । ଏ ସବୁ ଦେଶରେ ଯେଉଁ ଲୋକେ ବାସ କରନ୍ତି ସେମାନଙ୍କ ଜାତିର ନାମ, ଦେଶର ନାମ ଅନୁସାରେ ହୋଇଛି । ଇଂରେଜ ଜାତି, ଜର୍ମାନଜାତି, ଫରାସୀଜାତି ଇତ୍ୟାଦି । ଭାରତୀୟ ଜାତି ଆଗେ ସ୍ୱାଧୀନ ଥିଲା; କିନ୍ତୁ ନାନା କାରଣରୁ ସେ ବର୍ତ୍ତମାନ ଇଂରେଜ ଜାତି ଅଧୀନରେ ଅଛନ୍ତି । ସେ ଦେଶ ଲୋକମାନେ ଭାରି ଧନୀ, ଜ୍ଞାନୀ, ବ୍ୟବସାୟୀ, ସେମାନେ ପୃଥିବୀର ସବୁଦେଶରେ ବେପାର ବାଣିଜ୍ୟ କରି ବହୁତ ଧନ ଅର୍ଜ୍ଜନ କରୁଛନ୍ତି । ବିଜ୍ଞାନ ବଳରେ ନାନା କଳ କୌଶଳ କରି ଶିଳ୍ପ, ବାଣିଜ୍ୟର ଚୂଡ଼ାନ୍ତ ଉନ୍ନତି ଲାଭ କରିଛନ୍ତି ।

ଧନ ଲୋଭ ସେମାନଙ୍କର ଏତେ ବୃଦ୍ଧି ହୋଇଛି ଯେ ସେମାନେ ଆଜି ସେମାନଙ୍କ ନିଜ ନିଜ ଅବସ୍ଥାରେ ସନ୍ତୁଷ୍ଟ ନ ରହି ଆହୁରି କିପରି ଧନ ସମ୍ପତ୍ତି ବଢ଼ିବ ସେହି ଲାଳସାରେ ବୁଲୁଛନ୍ତି । ପ୍ରତ୍ୟେକ ଜାତି ଖୋଜୁଁଛି କିପରି ତାଙ୍କ ଜାତି ତାଙ୍କ ଦେଶ ଅନ୍ୟ ସବୁ ଜାତିକି ମାଡ଼ିବସି ରାଜ୍ୟ ବିସ୍ତାର କରିବ । ପ୍ରତ୍ୟେକ ଜାତି ହୃଦୟରେ ଏହି ଇଚ୍ଛା ବଳବତୀ ହୋଇ ଜାଗ୍ରତ ଅଛି । ସେହି ଇଚ୍ଛା କାଳକ୍ରମେ ନାନା କାରଣ ପାଇ ନାନା ଆକାର ପ୍ରକାରରେ ପ୍ରକାଶ ପାଉଛି । ଇଂରେଜ ଜାତି କହୁଛି ସେ ବଡ଼, ଜର୍ମାନୀ କହୁଛି ସେ ବଡ଼, ଆମେରିକା କହୁଛି ସେ ବଡ଼ । ଯେଉଁ ଜାତି ଯେଉଁ ଜାତିକି ଦୁର୍ବଳ ମନେ କରୁଛି ସେ ତା ଉପରେ ଚଢ଼ାଉ କରୁଛି । ଯେ ଯାହା ସଙ୍ଗେ ଲଢ଼ି ନ ପାରିଲା ସେ ହାରିଗଲା, ତା ଅଧୀନ ହେଲା । ଏମାନେ ହାତହତିଆର, ଜାହାଜ, ତୋପ, ବନ୍ଧୁକ, ଆକାଶଯାନ-ମାନ ନାନାଆକାର ପ୍ରକାରରେ ନିର୍ମ୍ମାଣ କରି ପାରି ଅଳ୍ପ ଆୟାସରେ

ଅଳ୍ପ ସମୟରେ କେତେକ ମଣିଷ ମାରିଦେଇ ପାରିବେ, କେତେକ କୋଠା କାନ୍ଥ ଧନ ସମ୍ପତ୍ତି ଧ୍ୱଂସକରି ପାରିବେ ସେହି ଚିନ୍ତାରେ ବ୍ୟସ୍ତ ! ଏହି ହେତୁ ଯୁଦ୍ଧ ଲାଗିଛି, ସେମାନେ ବଳ କଷାକଷି ହେଉଛନ୍ତି । ଯେ ଯାହାଠାରୁ ବଳବାନ୍ ସେ ତାକୁ ଜିଣି ତା ରାଜ୍ୟ ଖଣ୍ଡକ ନେଇଯିବ । ଏମାନେ ଧନ ବଳରେ ମତୁଆଲ ହୋଇ ଆକାଶ ପାତାଳ ସମୁଦ୍ର ପ୍ରକୃତିକି ମନ୍ଥି ପକାଉଛନ୍ତି । କେତେଲୋକ ମରୁଛନ୍ତି, କେତେ ଧନ ଯେ ନଷ୍ଟ ହେଉଛି ତାର ପରିମାଣ କହି ହେବ ନାହିଁ । କେବଳ ଇଂରେଜ ଜାତି ଦିନକୁ ୨୨ କୋଟି ଟଙ୍କା ଖର୍ଚ୍ଚ କରୁଛନ୍ତି । ଆଉ କାହାର କେତେ ଖର୍ଚ୍ଚ ହେଉଛି କିଏ ଜାଣେ ?

ସ୍ତ୍ରୀ—କୋଟିଏ କେତେ ଟଙ୍କା ମ !

ସ୍ୱାମୀ—ଆହେ, ଶହେ ଟଙ୍କାତ କେତେ ଜାଣ । ଦଶ ଶହରେ ହଜାରେ, ଶହେ ହଜାରରେ ଲକ୍ଷେ, ପୁଣି ଶହେ ଲକ୍ଷରେ କୋଟିଏ ।

ସ୍ତ୍ରୀ— ହଇହେ, ଏତେ ଟଙ୍କା କାହିଁକି ଖର୍ଚ୍ଚକରି ଦେଉଛନ୍ତି ମ ? ଆମ ଦେଶରେ ଲୋକଙ୍କୁ ଗୋଟାଏ ଟଙ୍କା ମିଳୁନାହିଁ, ଏମାନେ ଏତେ ଖର୍ଚ୍ଚ କରୁଛନ୍ତି; ଧନ୍ୟ ତାଙ୍କ ଶକ୍ତି !

ସ୍ୱାମୀ—ଶକ୍ତି ତାଙ୍କର ଧନ୍ୟ ନୁହେଁ କଣ । ଜୀବନକୁ ପାଣି ଛଡ଼େଇ ଦେଇଛନ୍ତି । ଆକାଶଯାନରେ ଉଡ଼ି ବୁଲୁଛନ୍ତି । କେତେବେଳେ ଯେବେ ସେ ଯାନ ଖସି ପଡ଼ୁଛି ତେବେ ଯେଉଁ-ମାନେ ସେଥିରେ ଥିଲେ ; ସମସ୍ତେ ପଡ଼ି ମରିଯାଉଛନ୍ତି । କେତେ-ଜଣ ମରିଗଲେ ବୋଲି ଆଉ ଯେ କେହି ପୁଣି ସେ ଯାନରେ ନ ଚଢ଼ୁଛନ୍ତି ତା ନୁହେଁ, ତା ପଛକୁ ତା ପଛ ଲୋକେ ଯାଉଛନ୍ତି । ଆମ ଦେଶ ଲୋକଙ୍କର ଏ ସାହସ ଅଛି ? ଆମଦେଶ ଲୋକେ

କହିବେ ନାହିଁଲେ ବାପା—କାଳେ ପଡ଼ ମରିଯିବା ! ତାକୁ ଦୂରରୁ ଜୁହାର । ଆମଦେଶ ଲୋକେ କେବଳ ନିଜ ପ୍ରାଣକୁ ବଡ଼ ମନେ କରନ୍ତି । ଯେଉଁଠି ଟିକିଏ ଆପଣା ପ୍ରାଣ ଉପରେ ଆଞ୍ଚ ଆସିଲା, ସେଠିକି ଯିବେ ନାହିଁ; ଗୁଡ଼ ଦବବ !

ସ୍ତ୍ରୀ—କାହିଁକି ମ ? ସେ ଦେଶ ଲୋକଙ୍କର କଣ ପ୍ରାଣ ପାଇଁ ମମତା ନାହିଁ ? ତାଙ୍କ ଜୀବନ ପାଇଁ କଣ ତାଙ୍କର ଭୟ ନାହିଁ ?

ସ୍ୱାମୀ—ଜୀବନ ଭୟ ସମସ୍ତଙ୍କର ଅଛି; ତଥାପି ସେମାନେ ମନେ କରନ୍ତି ଜୀବନତ ଦିନେ ଯିବ; ତେବେ ନିଜ ଜାତିପାଇଁ ନିଜ ଦେଶ ପାଇଁ ଯେବେ ଯିବ ତେବେ ଯାଉ । ମୁଁ ସିନା ଜଣେ ମରିଯିବି, ଜାତିରତ ମଙ୍ଗଳ ହେବ । ମୋ ଜାତି ଜିଣିବ । ମୋ ଜାତି ପୃଥିବୀରେ ଶ୍ରେଷ୍ଠ ହେବ । ମୋ ଜାତିର ମାନ ବଢ଼ିବ । ପାଞ୍ଚଶ ହଜାରେ ମରିଗଲେ ଯା'ନ୍ତୁ । ଏହାକୁ କହନ୍ତି ଜାତୀୟ ଜୀବନ ।

ମୋ ଜୀବନଟା କେବଳ ମୋ ପାଇଁ ନୁହେଁ ମୋ ଜାତିପାଇଁ । ବ୍ରିଟିଶ ସାମ୍ରାଜ୍ୟ ଏହି ଜାତୀୟ ଜୀବନ ଉପରେ ପ୍ରତିଷ୍ଠିତ ।

ସ୍ତ୍ରୀ— କପରି ? ମୁଁ ତ ଏ କଥା କିଛି ବୁଝିପାରୁ ନାହିଁ !

ସ୍ୱାମୀ—ଦେଖ, ପ୍ରଥମେ ଇଂରେଜମାନେ ଯେତେବେଳେ ଭାରତକୁ ଆସିଲେ ତେତେବେଳେ ସେମାନେ ରାଜ୍ୟ କରିବାକୁ ଆସି ନ ଥିଲେ । ସେମାନେ ଆସିଥିଲେ ବଣିଜ ବେପାର କରିବା ପାଇଁ । ବଣିଜ ବେପାର କରିବାକୁ ଆସିଲେ ଯେ ତେତେବେଳେ ମୁସଲମାନମାନେ ଭାରତରେ ରାଜା ଥିଲେ । ତାଙ୍କ ବିନାନୁମତିରେ ଭାରତରେ କେହି ତ ବଣିଜ ବେପାର କରି ପାରିବେ ନାହିଁ । ସେ ଅନୁମତି ମିଳୁଛି କପରି ? କେଉଁଠି ରହିବେ; କେଉଁଠି ବାଣିଜ୍ୟକୋଠି

କରିବେ । ବିଦେଶୀ ଲୋକ ସାତ ସମୁଦ୍ର ତେର ନଦୀ ପାରି ହୋଇ ଆସିଛନ୍ତି । ତାଙ୍କୁ ଚାରିଆଡ଼ୁ ଅଡୁଆ ଲାଗୁଛି, ନାନାସ୍ଥାନରେ ଠାକ କରି ବୁଲୁଛନ୍ତି । ଗୋଟାଏ ଦେଶରୁ ଆସି ଅନ୍ୟ ଦେଶରେ ବଣିଜ ବେପାର କଲେ ସେ ଦେଶ ରଜା କର ନେବ, ନ ହେଲେ ବି ଅନୁମତି ନ ଦେଇ ମନା କରି ଦେଇପାରେ । ନାନା ପ୍ରକାର ଚିନ୍ତା ମନରେ ଥାଏ । ଥରେ ଜଣେ ଇଂରେଜ ଚିକିତ୍ସକ ବୁଲି ଆସିଥିଲେ । ସେ ଏଣେ ତେଣେ କେତେ ଆଡ଼ ବୁଲି କଲିକତାରେ ଥିଲେ । ସାହାଜାହାନ ତେତେବେଳେ ବଙ୍ଗଳାର ନବାବ ଥିଲେ । ତାଙ୍କର କନ୍ୟା ଭୟଙ୍କର ପୀଡ଼ିତା ହେଲେ । ଅନେକ ଡାକ୍ତର, ବୈଦ୍ୟ, ହାକିମ୍, ଚିକିତ୍ସା କରି ଥକିଗଲେ, ରୋଗ ଉପଶମ ହେଲା ନାହିଁ । କ୍ରମେ ସେ ଇଂରେଜ ଚିକିତ୍ସକଙ୍କ କାନକୁ କଥା ଗଲା । ସେ କହିଲେ ଭଲ କରିଦେବେ । ସେ ଚିକିତ୍ସା କଲେ । ରୋଗୀ ଭଲ ହୋଇଗଲା । ତାଙ୍କ ଅଦୃଷ୍ଟ ଫେରିଲା । ନବାବ ଭାରି ଖୁସି ହେଲେ, ପୁରସ୍କାର ଯାଚିଲେ । ଡାକ୍ତର କହିଲେ ସେ ଅନ୍ୟ ପୁରସ୍କାର ନେବେ ନାହିଁ—ତାଙ୍କ ଇଂରେଜ ଜାତିକି ଭାରତରେ ବାଣିଜ୍ୟ କରିବାକୁ ଅନୁମତି ମିଳୁ । ନବାବ ତଥାସ୍ତୁ କହି ସନନ୍ଦ ଲେଖି ଦେଲେ । ଏ ହେଲା ଇଂରେଜମାନଙ୍କର ଭାରତରେ ସାମ୍ରାଜ୍ୟ ଗଠନର ମୂଳଦୁଆ । ଡାକ୍ତର ମାଗିଲେ ନିଜ ପାଇଁ ଲକ୍ଷ ଲକ୍ଷ ଟଙ୍କା ପୁରସ୍କାର ନେଇ ପାରିଥାନ୍ତେ କିମ୍ବା ଖଣ୍ଡେ ରାଜ୍ୟ ମାଗି ନେଇ ପାରିଥାନ୍ତେ, ପାଟ ପୀତାମ୍ବର ମାଗି ନେଇଥାନ୍ତେ, କିନ୍ତୁ ସେ ଆପଣା ସ୍ୱାର୍ଥ, ଆପଣା ଲାଭ ନ ଚାହିଁ ଚାହିଁଲେ ନିଜ ଜାତିର ସ୍ୱାର୍ଥ, ନିଜ ଜାତିର ଲାଭ । ଏହାକୁ କହନ୍ତି ଜାତୀୟ ଜୀବନ ।

ସ୍ତ୍ରୀ—ଆଚ୍ଛା, ଏତେ ଡାକ୍ତର, କବିରାଜ ଚିକିତ୍ସା କରୁଥିଲେ, କାହାର ହାତ ସେ ରୋଗୀ ଭଲ ହେଲା ନାହିଁ, ଯାଙ୍କ ଔଷଧରେ ଭଲ ହେଲା କାହିଁକି ?

ସ୍ୱାମୀ – ଆହେ, ବୁଝିଲ ନାହିଁକି । ଜଣେ ଜଣେ ଅମୃତହସ୍ତା ଥାନ୍ତି, ସେମାନେ ହାତଦେଲାମାତ୍ରେ ରୋଗ ଭଲ ହୋଇଯାଏ । ଆଉ ଜଣେ ଜଣେ ବିଷହସ୍ତା ଅଛନ୍ତି, ସେ ଯେତେ ଔଷଧ ଦିଅନ୍ତି କାହିଁରେ କିଛି ହୁଏ ନାହିଁ ବରଂ ରୋଗ ବଢ଼େ । ଏ କଥା ମଧ୍ୟ ଅଦୃଷ୍ଟ ଉପରେ ନିର୍ଭର କରେ । ତେଣେ ପୁଣି ରୋଗୀର କର୍ମବିପାକକୁ ଯାହା ବେଳ କାଳରେ ଯାହା ଔଷଧ ପଡ଼ିଲା ସେ ଅମୃତ ପାଲଟି ଗଲା । ତେଣେ ଦଶା ପାକ ବେଳକୁ ଏଣେ ଯାହାର ସୁନାମ ନେବା ଯୋଗ ଅଛି ସେ ପହଞ୍ଚିଯାଏ ।

ସ୍ତ୍ରୀ—ଆଚ୍ଛା, ଏମାନେ ଯେ ଯୁଦ୍ଧ କରୁଛନ୍ତି କହୁଛ, କୋଟି କୋଟି ଟଙ୍କା ଖର୍ଚ୍ଚ ହେଉଛି, ଏତେ ଟଙ୍କା ଆଣୁଛନ୍ତି କେଉଁଠୁ ?

ସ୍ୱାମୀ—ସେ ଦେଶର ଲୋକେ ଦେଉଛନ୍ତି । ସେ ଦେଶରେ ଯେତେ ଧନ ଜନ ସମ୍ପତ୍ତି ଅଛି ସବୁ ସେମାନେ ଏ ଜାତୀୟ ସମର ପାଇଁ ଉତ୍ସର୍ଗ କରି ଦେଇଛନ୍ତି । ଏଇଲାଗେ ଜାତିର ମାନ ଉପରେ ପଡ଼ିଛି । ଇଂରେଜ ଜାତି ହାରିଯିବ ଏ କଥା ସେ ଦେଶ ଲୋକେ ସହି ପାରିବେ ନାହିଁ । ସେମାନେ ଏ ଜାତିର ମାନଟାକୁ ବେଶି ପସନ୍ଦ କରନ୍ତି । ଘର ଯାଉ, ଜମିବାଡ଼ି ଧନ ସମ୍ପତ୍ତି ଯାଉ, ପ୍ରାଣ ଯାଉ, ଇଂରେଜ ଜାତିର ମାନ ବଜାଏ ଥାଉ—ଏ କଥା ସେ ଦେଶଲୋକେ ବୁଝୁଛନ୍ତି । ଦେଶରେ ଯେତେ ଧନ ସମ୍ପତ୍ତି ଅଛି, ଲୋକେ ଅକାତରେ ଦେଇ ଦେଉଛନ୍ତି । ଖାଇବା ପିଇବା ଖେଣ୍ଡି ମଧ୍ୟ ଯୁଦ୍ଧକୁ ଧନ ଦେଉଛନ୍ତି । ଶତ୍ରୁ ଆକ୍ରମଣ ଭୟରେ ରାତିରେ ଶୋଉ ନାହାନ୍ତି । ଗାତ ଖୋଳି ତା ଭିତରେ ପଶି ରହୁଛନ୍ତି ।

ସ୍ତ୍ରୀ—ଗାତ ଭିତରେ ରହୁଛନ୍ତି କାହିଁକି ?

ସ୍ୱାମୀ—ଆଜ୍ଞେ, ବର୍ତ୍ତମାନ ଯେଉଁ ଉଡ଼ାଜାହାଜମାନ ହୋଇଛି ସେଥିରେ ରହି ଏବେ ଯୁଦ୍ଧ ହେଉଛି । ସେହି ଜାହାଜ ଭିତରେ ଲୋକ ରହି ନିଆଁ ଗୁଳାମାନ ପକାଇ ଦେଉଛନ୍ତି । ଗୁଳାଟାଏ ପଡ଼ିଲେ ଘରଦ୍ୱାର ଧ୍ୱଂସ ହୋଇ ଯାଉଛି, ମଣିଷ ଥିଲେ ମରି ଯାଉଛନ୍ତି । ଏହିହେତୁ ଉଡ଼ାଜାହାଜ ଆସିବାର ସଙ୍କେତ ଜଣାଗଲାରୁ ଲୋକେ ଘରଦ୍ୱାର ଛାଡ଼ି ଗାତ ଭିତରେ ଯାଇ ପଶୁଛନ୍ତି, ଘର ଦ୍ୱାର ପୋଡ଼ିଗଲେ ଯାଉ ପଛକେ ପ୍ରାଣ ତ ରହିବ ! ଉଡ଼ାଜାହାଜ ଚାଲିଗଲାରୁ ପୁଣି ଗାତଭିତରୁ ବାହାରୁଛନ୍ତି । ଏହି ଲୀଳା ଲାଗିଛି । ଶୁଣିଥିଲୁ ସିନା, ଇନ୍ଦ୍ରଜିତ ମେଘ ଉପରେ ଥାଇ ରାମଚନ୍ଦ୍ରଙ୍କ ସଙ୍ଗେ ଯୁଦ୍ଧ କରୁଥିଲେ, ଏବେ ତ ଦେଖାଗଲା ସେହି କଥା ! ଶତ୍ରୁ ବିଚାରୁଛି—ଏମାନଙ୍କୁ ମାରି ଧ୍ୱଂସ କରିଦେବ । ଏମାନେ ବିଚାରୁଛନ୍ତି ଶତ୍ରୁକୁ ଓ ତା ରାଜ୍ୟକୁ ପୋଡ଼ି ଧ୍ୱଂସ କରିଦେବେ । ଉଡ଼ାଜାହାଜ କେତେବେଳେ ଖସିପଡ଼ି ଜଳି ପୋଡ଼ି ଧ୍ୱଂସ ହୋଇ ଯାଉଛି, କେଉଁଠି ବଡ଼ବଡ଼ ଜାହାଜମାନ ସମୁଦ୍ର ଗର୍ଭରେ ବୁଡ଼ି ଲୀନ ହୋଇ ଯାଉଛି । କୋଟିକୋଟି ଟଙ୍କା ମୁହୂର୍ତ୍ତିକେ ପୋଡ଼ି ଯାଉଛି, ବୁଡ଼ି ଯାଉଛି । ଆମ୍ଭେମାନେ ସେ ତତ୍ତ୍ୱ କଳ୍ପନା କରି ପାରୁ ନ ଥାଇଁ । ଖବରକାଗଜରେ ଯାହା ପଢ଼ି ଶୁଣୁଥାଇ ସିନା, ଆଖିରେ ତ ଦେଖି ପାରୁ ନ ଥାଇଁ । ତେବେ ଯାହା ଶୁଣୁଥାଇଁ, ସେ ଖବର ଏତେ ଚମକପ୍ରଦ ଯେ ଶୁଣୁ ଶୁଣୁ ଦେହ ଥରି ଉଠୁଛି । ସେ ଘୋର ଭୟଙ୍କର ଦୃଶ୍ୟ ଦେଖିଲେ ଆମେ ତ ମୁର୍ଚ୍ଛା ହୋଇଯିବା । ସେମାନେ ଅନୁଭବ କରି ମଧ୍ୟ ଛାତିରେ ପଥର ଲଦିଲା ପ୍ରାୟ ଧର୍ମ୍ମ ଧରି ଅଛନ୍ତି । ରଣ-ଚଣ୍ଡୀର କ୍ରୂର କରାଳ ମୁଖବ୍ୟାଦାନ, ଲହ ଲହ ଜିହ୍ୱା, ନରମୁଣ୍ଡ ମାଳ, କୋଠାବାଡ଼ି ଧନ ସମ୍ପତ୍ତିର ଭସ୍ମ ଦେଖିଲେ କାହାର ପାଷାଣ ଛାତି ମଧ୍ୟ ତରଳ ହୋଇ ନ ଯିବ !

ସ୍ତ୍ରୀ—ହଇହେ, ଆମ ରଜାଙ୍କ ଦେଶରେ ଏତେ କାଣ୍ଡ ଆମେ ତ ଏଠି କିଛି ଜାଣିପାରୁ ନ ଥାଇଁ ? ଏ ଦେଶରେ ଯେଉଁ ସାହେବମାନେ ଅଛନ୍ତି ସେମାନେ କଅଣ କରୁଛନ୍ତି ?

ସ୍ୱାମୀ—ଆହେ, ଏ ଦେଶରେ ଶାସନ କାର୍ଯ୍ୟ ଯେପରି ଚାଲିଥିଲା ସେହିପରି ଚାଲିଛି । ସାହେବମାନେ ଏଠି ଅଛନ୍ତି, ସେମାନଙ୍କ କାର୍ଯ୍ୟକଳାପରୁ କିଛି ଜଣାଯିବ ନାହିଁ ଯେ, ତାଙ୍କ ଦେଶରେ ଏପରି ବିପତ୍ତି ପଡ଼ିଛି । ସବୁ କାର୍ଯ୍ୟ ଦସ୍ତୁରମତେ ଚାଲିଛି, ତେଣେ ଯୁଦ୍ଧ କାମ ହେଉଛି, ଏବଂ ଏଣେ ଶାସନ କାର୍ଯ୍ୟ ହେଉଛି; ତେଣେ ଉଡ଼ାଜାହାଜରୁ ଗୁଳିଗୁଳା ପଡ଼ି ଘରଦ୍ୱାର ପୋଡ଼ି ଭସ୍ମ ହେଉଛି ; ଏଣେ କେହି ଅପରାଧ କଲେ ତାକୁ ନେଇ ଜେଲଖାନା ଠୁକି ଦେଉଛନ୍ତି । ଯେଉଁଠା କାମ ଯେଉଁଠି ଚଳୁଛି, କିଛି ବ୍ୟତିକ୍ରମ ନାହିଁ । ଶାସନକଳ ଠିକଣାମତେ ଚଳୁଛି । ଆମେ ଜାଣିକି ଅନୁଭବ କରିପାରିବା ଯେ ବିଲାତରେ ଭୟଙ୍କର ଯୁଦ୍ଧ ଲାଗିଛି । ଏପରି ଯେଉଁମାନଙ୍କର ମନ ଟାଣ, ଏପରି ଯେଉଁମାନଙ୍କର ଦମ୍ଭ, ସାହସ, ସେମାନଙ୍କର ଦେଶର ଅବସ୍ଥା ବିଷୟରେ ତାଙ୍କର ଏଠା ହାଲଚାଲରୁ କିଛି ଜଣାପଡ଼ୁ ନାହିଁ ।

ସ୍ତ୍ରୀ—ଏ ଯୁଦ୍ଧ ଆଉ କେତେଦିନ ଚାଲିବ ମ ? ଜିନିଷପତ୍ର ମୂଲ୍ୟ ବହୁତ ବଢ଼ିଗଲାଣି ।

ସ୍ୱାମୀ—ଯୁଦ୍ଧ କେତେଦିନ ଲାଗିବ କିଏ କହି ପାରିବ ! ଗୋଟାଏ ପକ୍ଷ ନିରସ୍ତ୍ର ନ ହେବା ପର୍ଯ୍ୟନ୍ତ ଛାଡ଼ିବ ନାହିଁ । ଗୋଟାଏ ସର୍ବସ୍ୱାନ୍ତ ହୋଇ ଦୁର୍ବଳ ନ ହେବାଯାଏ ଯୁଦ୍ଧ ଶେଷ ହେବ ନାହିଁ । ସେପରି ଅବସ୍ଥାକୁ ନ ଆସିବା ଯାଏ କିଏ କାହା ଆଣ୍ଠୁ ଛୁଉଁଛି ? ଜିନିଷପତ୍ର ବିଦେଶରୁ ଆସି ପାରୁ ନାହିଁ । ବାଟଘାଟ ବନ୍ଧା

ପଡ଼ୁଛି । ଏ କଥା ପୁଣି ଯେ ସେ କଥା ନୁହେଁ । ଏସବୁ ବୈଜ୍ଞାନିକ କଥା । ଏ କଥା ବନ୍ଦରେ ଜାହାଜ ଲାଗିଗଲେ ଫାଟି ପାଣିରେ ବୁଡ଼ିଯିବ । ଏହି ହେତୁ ବେଶି ମାଲ ଆସି ପାରୁ ନାହିଁ । ଜିନିଷ ବେଶି ନ ଆସିବାରୁ ମୂଲ୍ୟ ବଢ଼ି ଯାଉଛି, କାଣିଖିଆ ଲୋକଙ୍କର ବିଷମ ବିପତ୍ତି । ଏଣେ ଏହି ହେତୁ ଖର୍ଚ୍ଚ ବଢ଼ି ଯାଉଛି, ଆୟ କମିଯାଉଛି । ଲୋକେ ବଡ଼ ଛଟପଟ ହେଉଛନ୍ତି । କିଏ ରାଜ୍ୟ ଜିଣିବା ପାଇଁ ଛଟପଟ, ଆମେ ପେଟପାଇଁ ଛଟପଟ । ଯୁଦ୍ଧ ତ କ୍ରମେ ଘମା-ଘୋଟିଆ ହୋଇ ଲାଗି ଆସୁଛି । ସମଗ୍ର ପୃଥିବୀ ବ୍ୟାପିଗଲାଣି କେବଳ ଭାରତ ନିଶ୍ଚିନ୍ତରେ ଅଛି ।

ସ୍ତ୍ରୀ—ଭାରତ କାହିଁକି ନିଶ୍ଚିନ୍ତ ଅଛି ?

ସ୍ୱାମୀ—ବୁଝି ପାରୁ ନାହଁ ? ଭାରତ ଲୋକେ ତ ଇଂରେଜଙ୍କ ଅଧୀନରେ ଅଛନ୍ତି । ଇଂରେଜ ସାମ୍ରାଜ୍ୟ ଯୁଦ୍ଧ କରୁଛି ସତ, ସେହି ହିସାବରେ ଆମେ ଯୁଦ୍ଧରେ ପଶିଛୁ, କିନ୍ତୁ କାର୍ଯ୍ୟରେ ନୁହେଁ । ତେବେ ଆମ ରାଜା ଯେତେବେଳେ ଯାହା ଚାହୁଁଛନ୍ତି—ମଣିଷ ହେଉ ବା ଟଙ୍କା ହେଉ—ଆମେ ଆମ ଶକ୍ତି ଅନୁସାରେ ଦେଉଛୁଁ । ଯୁଦ୍ଧରେ ଦିନକେ ଯାହା ଖର୍ଚ୍ଚ ହେଉଛି ତାକୁ ଚାହିଁଲେ ଭାରତରୁ ଯାହା ଯାଉଛି ସେ କିଛି ନୁହେଁ କହିଲେ ଚଳେ । ଭାରତ ଲୋକେ ତ ଯୁଦ୍ଧବିଦ୍ୟା ଭୁଲି ଗଲେଣି, କିଛି ତ ଶିଖି ନାହାନ୍ତି କଣ କରିବେ ? ଯାହାଙ୍କର ଜାତୀୟ ଜୀବନ କଳଙ୍କିତ ହୋଇ ଗଲାଣି ତାଙ୍କଠାରୁ କଣ ଆଶା କରିବା ? ଆଚ୍ଛା ଆଜି ଏତିକି ଥାଉ ।

---

# ନବମ ପରିଚ୍ଛେଦ

## ଜ୍ୟୋତିଷ

ସ୍ତ୍ରୀ—ହଇହେ, ଆଜ ପାଞ୍ଜିଟା ଦେଖୁଥିଲି ଯେ କିଛି ବୁଝି ପାରିଲି ନାହିଁ । ତିଥି କଣ ? ନକ୍ଷତ୍ର କଣ ? ଯୋଗ କଣ ? ବାର କଣ ? ଗ୍ରହ କଣ ?

ସ୍ୱାମୀ—ପାଞ୍ଜିରେ ଅନେକ ଜ୍ୟୋତିଷ ଶାସ୍ତ୍ର ବିଷୟ ଲେଖା ଥାଏ । ସେ ବିଷୟ ନ ଜାଣିଥିଲେ ବୁଝିବ କିପରି ? ଜ୍ୟୋତିଷ ଶାସ୍ତ୍ର ବଡ଼ କଠିନ ବିଷୟ । ସେ ଶାସ୍ତ୍ରରେ ଜ୍ଞାନ ହେବା ଲାଗି ଅନେକ ପରିଶ୍ରମ ଆବଶ୍ୟକ । ଅନେକ ଶାସ୍ତ୍ର ପଢ଼ିବା ଆବଶ୍ୟକ, ଅଙ୍କଶାସ୍ତ୍ର ଭଲ କରି ଜାଣିବା ଆବଶ୍ୟକ । ଏ ତ ଆକାଶ ବିଦ୍ୟା, ଆକାଶରେ ଗ୍ରହ ନକ୍ଷତ୍ର ଗତି କରୁଛନ୍ତି । ଆମେ ପୃଥିବୀ ଉପରେ ଏଠାରେ ଥାଇ ସେ ଆକାଶମଣ୍ଡଳର ଗ୍ରହ ନକ୍ଷତ୍ରଙ୍କ ଗତି ଦେଖି ପାରିବା କଣ ସହଜ କଥା ! ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସିଂହ ସାମନ୍ତ, ଯାହାଙ୍କୁ ପଠାଣି ସାମନ୍ତ କହନ୍ତି, ସେ ଏ ବିଦ୍ୟାରେ ବହୁତ ଜ୍ଞାନ ଲାଭ କରିଥିଲେ । ତାଙ୍କ ଘର ଖଣ୍ଡପଡ଼ା । ସେ ସାରା ରାତି ଆକାଶକୁ ଚାହିଁ ବସିଥାନ୍ତି । ସେ ଶେଷକୁ ପେଟ ବେମାରିଆ ହୋଇଗଲେ । ନିଜ ହାତରେ ବାଉଁଶକାଠି ଯନ୍ତ୍ର ତିଆରି କରି ତାରି ସାହାଯ୍ୟରେ ଗ୍ରହ ନକ୍ଷତ୍ରମାନଙ୍କ ଗତି ଜାଣୁଥିଲେ । ସେ ସିଦ୍ଧାନ୍ତ ଦର୍ପଣ ନାମରେ ଖଣ୍ଡେ ପୋଥି ଲେଖି ଯାଇଥିଲେ । ତାର ଏ ପର୍ଯ୍ୟନ୍ତ ଅର୍ଥ ହୋଇ ପାରି ନାହିଁ । ଗଣିତ ଜ୍ୟୋତିଷ ଓ ଫଳିତ ଜ୍ୟୋତିଷ ଦୁଇ ପ୍ରକାର ।

ସ୍ତ୍ରୀ—ଗଣିତ ଜ୍ୟୋତିଷ କଣ ? ଫଳିତ ଜ୍ୟୋତିଷ କଣ ?

ସ୍ୱାମୀ—ମୁଁ ଜ୍ୟୋତିଷାର୍ଣ୍ଣବ ବୋଲି ଖଣ୍ଡେ ପୁସ୍ତକ ଲେଖିଛି । ସେ ଛପା ହୋଇଛି । ତାକୁ ଯେବେ ପଢ଼ିବ, ମୋଟା ମୋଟି କିଛି ବୁଝି ପାରିବ ।

ସ୍ତ୍ରୀ—ଜ୍ୟୋତିଷ ଶାସ୍ତ୍ର କଣ ସତ ? ଅବଧାନେ ଯାହା କହନ୍ତି, କେତେ କଥା ତ ଘଟେ ନାହିଁ ?

ସ୍ୱାମୀ—ସେ ତ ଜ୍ୟୋତିଷ ଶାସ୍ତ୍ରର ଦୋଷ ନୁହେଁ, ଅବଧାନଙ୍କ ଦୋଷ ହୋଇପାରେ । ସେ ଠିକଣା ହିସାବ କିତାପ କରି ପାରନ୍ତି ନାହିଁ । ଆପେ ଆପେ ଠଠା ଠି କରି କେତେଟା କଥା ଜାଣି ସେମାନେ ତାଙ୍କ ବ୍ୟବସାୟ ଚଳାନ୍ତି । ଚରଣେ ପଢ଼ିଲେ ଭରଣେ ଗାଇ ଦିଅନ୍ତି, ଜ୍ୟୋତିଷାର୍ଣ୍ଣବରେ ଏଥିର କାରଣ ଉଲ୍ଲେଖ ଅଛି ।

ସ୍ତ୍ରୀ—ଗ୍ରହମାନେ ତ ଆକାଶମଣ୍ଡଳରେ ଅଛନ୍ତି ଆମ ଉପରେ ତାଙ୍କର କି ଶକ୍ତି ଅଛି ଯେ ସେମାନଙ୍କ ଯୋଗୁଁ ଆମ୍ଭେ ଭଲ ମନ୍ଦ ଫଳ ଭୋଗିବା ?

ସ୍ୱାମୀ—ସୂର୍ଯ୍ୟ ଏ ପୃଥିବୀର ଜୀବନ । ସୂର୍ଯ୍ୟଙ୍କ ଆଲୋକ ନ ପାଇଲେ କୌଣସି ପ୍ରାଣୀ ବଞ୍ଚିପାରିବ ନାହିଁ । ଚନ୍ଦ୍ରଲୋକରେ ମଧ୍ୟ ଅମୃତ ଅଛି ! ତାଙ୍କ କିରଣ ପାଇ ନାନା ଗୁଣ ଲାଭ କରନ୍ତି । ଅନ୍ୟାନ୍ୟ ଗ୍ରହମାନଙ୍କର ଓ ଉପଗ୍ରହମାନଙ୍କର ମଧ୍ୟ ଗୁଣ ଅଛି । ନକ୍ଷତ୍ରମାନଙ୍କର ଗୁଣ ଅଛି । ସବୁ ପ୍ରାଣୀଙ୍କ ଉପରେ ତାଙ୍କ ଶକ୍ତି ଯେତେବେଳେ ପଡ଼ୁଛି ମଣିଷ ଉପରେ ନ ପଡ଼ିବ କାହିଁକି ? ସୁତରାଂ ବିଜ୍ଞାନ ନିୟମ ଅନୁସାରେ ଏ କଥା ସତ । ଚନ୍ଦ୍ର ସୂର୍ଯ୍ୟଙ୍କ କିରଣ ପ୍ରଭାବରେ ଜଗତର ଯାବତୀୟ ଜୀବଜଗତରେ ରସ ସଞ୍ଚାର ହୁଏ ଏବଂ ନାନା ବର୍ଣ୍ଣ, ନାନା ରସ ଆମ୍ଭେମାନେ ଦେଖୁ । ସୁତରାଂ ମନୁଷ୍ୟ ଉପରେ ସେମାନଙ୍କର ପ୍ରଭାବ ନାହିଁ ବୋଲି କିଏ କହିବ ?

ସ୍ତ୍ରୀ—ପାଞ୍ଜିରେ ତେବେ କଣ ଲେଖା ଥାଏ ?

ସ୍ୱାମୀ— ପ୍ରତିଦିନ ତିଥି, ବାର, ନକ୍ଷତ୍ର, ଯୋଗ, କରଣ, ଚନ୍ଦ୍ର ସୂର୍ଯ୍ୟ ଗତି, କେଉଁଦିନ କଣ ଖାଇବ ଓ ନ ଖାଇବ ଇତ୍ୟାଦି ବିଷୟ ଲେଖା ଥାଏ । ଶୁଭବେଳ ଅଶୁଭବେଳ, କେଉଁଦିନ କି କାର୍ଯ୍ୟ କରିବ ନ କରିବ, ସେ କଥା ମଧ୍ୟ ଲେଖାଥାଏ । କେତେବେଳେ ଶୁଭ ବା ଅଶୁଭ ବେଳ ସେ କଥା ମଧ୍ୟ ଲେଖାଥାଏ । କେଉଁ ସମୟରେ କେଉଁଠାକୁ କେଉଁ କାର୍ଯ୍ୟ କରିବାକୁ ଗଲେ ଶୁଭ ବା ଅଶୁଭ ହେବ ସେ କଥା ଲେଖାଥାଏ । ବରଷକ ବାରମାସ ଯଥା:—ବୈଶାଖ, ଜ୍ୟେଷ୍ଠ, ଆଷାଢ଼, ଶ୍ରାବଣ, ଭାଦ୍ର, ଆଶ୍ୱିନ, କାର୍ତ୍ତିକ, ମାର୍ଗଶିର, ପୌଷ, ମାଘ, ଫାଲ୍ଗୁନ, ଚୈତ୍ର । ମାସକ ଦୁଇ ପକ୍ଷ, ପ୍ରତ୍ୟେକ ପକ୍ଷ ୧୫ ତିଥି । ୧୨ ରାଶି—ମେଷ, ବୃଷ, ମିଥୁନ, କର୍କଟ, ସିଂହ, କନ୍ୟା, ତୁଳ, ବିଛା, ଧନୁ, ମକର, କୁମ୍ଭ, ମୀନ । ୨୭ ନକ୍ଷତ୍ର ପାଞ୍ଜିରେ ପ୍ରତ୍ୟେକ ନକ୍ଷତ୍ରର, ଯୋଗର, କରଣର ନାମ ଅଛି । କେଉଁ ନକ୍ଷତ୍ର କେଉଁଦିନ କେତେ ଭୋଗକଲା, ଚନ୍ଦ୍ର ସୂର୍ଯ୍ୟ କେଉଁ ଦିନ କେତେ ଗତି କଲେ, ଅନ୍ୟାନ୍ୟ ଗ୍ରହମାନେ କେଉଁଦିନ କେତେ ଗତି କଲେ ଏ ସମସ୍ତ ବିଷୟ ଲେଖାଅଛି ।

ସ୍ତ୍ରୀ—ଏତେ କଥା ନ ଜାଣିଲେ କ୍ଷତି କଣ ? ପ୍ରତିଦିନ ଏତେ କଥା ପାଇଁ ପାଞ୍ଜି ନ ଦେଖି କାର୍ଯ୍ୟ କଲେ ତ ଭଲ ।

ସ୍ୱାମୀ—ଆହେ, ବୁଝ ବା ନ ବୁଝ, ଗ୍ରହଚକ୍ରର ଯେଉଁ ଫଳାଫଳ ତା ତ ଅବଶ୍ୟ ଭୋଗ କରିବ । ମନେକର କିଛି ନ ବୁଝିଲ ଅଶୁଭ ବେଳରେ କୌଣସି କାର୍ଯ୍ୟ କରିବାକୁ ଗଲ, ଫଳ ନ ହେଲା ଯେ ଏ ଶାସ୍ତ୍ର ଜାଣିଥିବ ସେ କହିବ ଅଶୁଭ ବେଳରେ ତ ଏ କାମ କଲ ଭଲ ଫଳ ହୁଅନ୍ତା କିପରି ? ଯେ ଏ ଶାସ୍ତ୍ର ଜାଣି ନ ଥିବ ସେ କହିବ ହଁ କରୁଥିଲେ ନ ହେଲା ।

ସ୍ତ୍ରୀ—ବାହାଘର ହେଲେ ବର କନ୍ୟାଙ୍କର ଜାତକ ମେଳାନ୍ତି କାହିଁକି ? ଜାତକ ନ ମେଳାଇଲେ ଫଳ କଅଣ ହେବ ?

ସ୍ୱାମୀ—ବରକନ୍ୟାଙ୍କର ଜାତକ ଭଲ ମେଳିଲେ ସେ ଦୁଇ ଜଣ ପାରିବାରିକ ଜୀବନ ସୁଖ ଶାନ୍ତିରେ କଟାଇବେ । ନ ମେଳିଲେ ଯେବେ ବିବାହ ହେଲା ତେବେ ଅଶାନ୍ତି, କଳହ ପ୍ରଭୃତି ଜନ୍ମେ । ଏହିହେତୁ ହିନ୍ଦୁମାନେ ଜାତକ ମେଳାଇ ବିବାହର କରନ୍ତି । ଜ୍ୟୋତିଷ ଶାସ୍ତ୍ରରେ ଏ କଥା ବିଶଦଭାବେ ବର୍ଣ୍ଣିତ ହୋଇଅଛି ।

ସ୍ତ୍ରୀ—ଆଚ୍ଛା, ଜାତକରୁ କଣ ଜଣାଯିବ ?

ସ୍ୱାମୀ—ପୂର୍ବ ଜନ୍ମରେ କି କି କର୍ମ କରିଥିଲ, ସେହି କର୍ମ ଭୋଗର ସୂଚନା ଜାତକରୁ ଜଣାଯିବ । ମଣିଷ ଯାବଜ୍ଜୀବନ କି କି ଫଳ ଭୋଗ କରିବ ଜାତକ କହିଦେବ । ଜ୍ୟୋତିଷ ଶାସ୍ତ୍ର ଅଗାଧ ସମୁଦ୍ର ! ପଢ଼ିଲେ ଜାଣିପାରିବ ।

ସ୍ତ୍ରୀ—ମାଇପେ କେଉଁକାଳେ ଏ ଶାସ୍ତ୍ର ପଢ଼ୁଥିଲେ ମ ?

ସ୍ୱାମୀ—ଶାସ୍ତ୍ର ପଢ଼ିବା ପାଇଁ ମରଦ ମାଇକିନିଆ ଭେଦାଭେଦ କିଛି ନାହିଁ । ମାଇପେ କଣ ଏ ଶାସ୍ତ୍ର ପଢ଼ୁଥିଲେ ! ଖନା ଏ ଶାସ୍ତ୍ରରେ ଭାରି ବିଦୁଷୀ ଥିଲେ । ଖନା ଜଣେ ସ୍ତ୍ରୀଲୋକ ଥିଲେ ! ତାଙ୍କ ନାମ ଆଜଯାଏ ଅଛି, ତାଙ୍କ ନାମ ଭାରତରେ ସବୁଆଡ଼େ ବିଖ୍ୟାତ । ଆଚ୍ଛା, ଆଜି ଏତିକି ଥାଉ ।

—:o:—

## ଦଶମ ପରିଚ୍ଛେଦ

## ଓଡ଼ିଶା ଲାଟସାହେବ

ସ୍ୱାମୀ—କହୋ, ଆଜି ଏତେବେଳଯାଏ କୁଆଡ଼େ ଯାଇଥିଲ କି ?

ସ୍ତ୍ରୀ—ଆଜି ପରା ଆମ ନାରୀସଂଘରେ ସମିତି ଥିଲା । ଲାଟ-ସାହେବ ଅର୍ଥାତ୍ ଆମ ପ୍ରଦେଶ ଶାସନକର୍ତ୍ତାଙ୍କ ସ୍ତ୍ରୀଙ୍କି ଆମ ସଂଘ ବିଦାୟ ଦେଉଥିଲା ।

ସ୍ୱାମୀ—ଓଃ, କେତେଗୁଡ଼ାଏ କାମ କରି ପକାଇଲ ! ତମ-ମାନଙ୍କୁ ଆଜି ତ ସ୍ୱର୍ଗ ଦି ଆଙ୍ଗୁଳ ବାକି ରହିଲା । ଆଜି ତ ତମକୁ ଦର୍ଶନ କଲେ ପୁଣ୍ୟ ଅଛି । ଆଜି ତ ତୁମେ ଆନନ୍ଦ ସ୍ରୋତରେ ଭାସୁଛ ! ମୁଁ ଏତେବେଳଯାଏ ବୁଝି ନ ଥିଲି । ଆଚ୍ଛା, କଣ କଣ ହେଲା କହିଲ ?

ସ୍ତ୍ରୀ—ଆମେ ତାଙ୍କୁ ଖଣ୍ଡେ ବ୍ରହ୍ମପୁରୀ ପାଟଶାଢ଼ୀ ଉପହାର ଦେଲୁଁ । ସେ ସେହି ଶାଢ଼ୀ ପିନ୍ଧି ମଥାରେ ସିନ୍ଦୂର ଲଗାଇ ଆସିଲେ । ଆମ ମାଇପଙ୍କ ଭିତରୁ କିଏ ଓଡ଼ିଆଣୀ, କିଏ ବଙ୍ଗାଳୁଣୀ, କିଏ ତେଲଙ୍ଗାଣୀ, କିଏ ପଠାଣୀ ବେଶ ହୋଇଥିଲେ । ବୁଢ଼ୀ ଭାରି ଭଲ ଲୋକ, ଖାଲି ତ ହସୁଥାନ୍ତି ! ବିଦାୟ ହୋଇଗଲାବେଳେ ଖାଲି ତ କହୁଥାନ୍ତି—ନମଚ୍ଛକାର ନମଚ୍ଛକାର ନମଚ୍ଛକାର । ଭାରି ଖୁସି, ହସି ହସି ଗଡ଼ି ଯାଉଥାନ୍ତି । ପୁଣି କହିଲେ, "ମତେ ଯାହା ଏ ଲୁଗା ପିନ୍ଧାଇ ଦେଲ ସେ ଲୁଗା ନୁହେ ମତେ ସ୍ନେହ ଡୋରିରେ ବାନ୍ଧି ରଖିଲ ।" ଜଣ ଜଣ କରି ଆମ ସମସ୍ତଙ୍କୁ ନମସ୍କାର କହିଲେ । ଆମ ନାରୀ ଶିକ୍ଷା ନିବାସକୁ ୫୨୫୦୲ ଦେଲେ ।

ସ୍ୱାମୀ—ଧନ୍ୟ ତମକୁ ଓଡ଼ିଆଣିଏ ! କେଉଁ କାଳେ ସିନା ତମକୁ ଚନ୍ଦ୍ରସୂର୍ଯ୍ୟ ଦେଖୁ ନ ଥିଲେ, ଏବେ ଯାଇ ଲାଟସାହେବଙ୍କ ସ୍ତ୍ରୀଙ୍କ ସଙ୍ଗେ କଥାବାର୍ତ୍ତା ହେଲ, ଟଙ୍କା ଆଣିଲ, ନମସ୍କାର ପାଇଲ, ଏଥିରୁ ବଳି ଅଧିକ କଣ କରି ପାରନ୍ତ ? ମାଇପେଯାକ ଏପରି ହେବ ବୋଲି ମୁଁ ତ ସ୍ୱପ୍ନରେ ଭାବି ନ ଥିଲି । ଓଡ଼ିଶା ଶାସନକର୍ତ୍ତାଙ୍କର ସେ ମହିଳା ବାହାରିଲେ କେତେ କାର୍ଯ୍ୟ କରିପାରନ୍ତି । ତାଙ୍କୁ ଶାଢ଼ୀ ସଙ୍ଖା ସିନ୍ଦୂର ପିନ୍ଧାଇ, ତାଙ୍କ ଅଣ୍ଟାରେ ହାତପୂରାଇ ତମ ବିଦ୍ୟାଳୟ ପାଇଁ ଯେ ଟଙ୍କା ଆଣି ପାରିଲ, ବଡ଼ ଧନ୍ୟବାଦ ।

ସ୍ତ୍ରୀ—ଆହେ, ଆମେ କଣ ଏକା ଏପରି କଲୁଁ ? କଟକଠାରୁ ପୁରୀ ପର୍ଯ୍ୟନ୍ତ କେତେ ବିଦାୟଭୋଜ ହେଲଣି । ମୁଁ ତ ଅନୁମାନ କରୁଛି, ଟଙ୍କା ଦଶ ହଜାର ଖର୍ଚ୍ଚ ହେଲଣି । ଆମର ଟଙ୍କା ଶହେ ଦେଢ଼ ଶହ ଖର୍ଚ୍ଚ ହେଲା, ବେଶି ତ କିଛି ହୋଇ ନାହିଁ । ଯେ ତ ମଣିଷ ଅନାହାରରେ ମରିଯାଉଥିଲେ ବେଳେ ତୁଣ୍ଡରେ ଟୋପାଏ ପାଣି ଦେବ ନାହିଁ, ସେ ତ ଶହ ଶହ ଗଣିଦେଇ ବିଦାୟ ଭୋଜ ଭୁତ କରାଉଛନ୍ତି, ବାଣ ମାରୁଛନ୍ତି, ନାଚ ଗୀତ କରାଉଛନ୍ତି, ଆମ କଥା କଣ ପଚାରୁଛ ? ସେ ତ କାମ ସରିଲାରୁ କାମ ଛାଡ଼ି ଘରକୁ ଯାଉଛନ୍ତି, ତାଙ୍କୁ ଏତେ ପୂଜା ଚୂଜ ଲୋକେ କାହିଁକି କରୁଛନ୍ତି ମ ?

ସ୍ୱାମୀ—ଆହେ, ଲୋକେ କଣ ଖୁସିରେ ଦେଉଛନ୍ତି ? ତାଙ୍କ କନ୍ଧରେ ରାଜଲକ୍ଷ୍ମୀ ବିରାଜମାନ କରିଛନ୍ତି । ରାଜଶ୍ରୀରେ ବିମଣ୍ଡିତ ହୋଇଥିବାରୁ ତାଙ୍କ ପ୍ରତି ଲୋକମାନଙ୍କର ଭୟ ଅଛି । ରାଜା ତ ଆମ ଦେଶରେ ରହୁ ନାହାନ୍ତି । ଏହିମାନେ ରାଜପୁରୁଷ ଲାଟ ବଡ଼ଲାଟ-ମାନେ କାର୍ଯ୍ୟତଃ ରାଜା ! ଧନୀ ଲୋକମାନଙ୍କର ବେଶି ରାଜଭକ୍ତି । ସୁତରାଂ ରାଜପୁରୁଷମାନଙ୍କୁ ସନ୍ତୋଷ ପ୍ରଦାନ କରିବା ସେମାନେ ପ୍ରଧାନ କର୍ତ୍ତବ୍ୟ ବୋଲି ବିଚାରନ୍ତି । ସେ କଥା ମଧ୍ୟ ନିଶ୍ଚିନ୍ତ

ଅମୂଳକ ନୁହେଁ । ରାଜପୁରୁଷମାନଙ୍କଠାରୁ 'ଅଭୟ' ପାଇବା ପାଇଁ କିଏ ବ୍ୟସ୍ତ ନ ହେବ ? ସଂସାରରେ ଏହା ତ ନୀତି । ଯେଉଁ ରାଜପୁରୁଷମାନଙ୍କ ହାତେ ଶାସନଦଣ୍ଡ ଅଛି ସେମାନେ ଆସିବା ଯିବାବେଳେ ତାଙ୍କୁ ସନ୍ତୁଷ୍ଟ ରଖିବା ପାଇଁ ଏସବୁ କରାଯାଏ । ଏହିମାନେ ତ ଦେଶର ହରତା କରତା ବିଧାତା !

ସ୍ତ୍ରୀ—ଆଚ୍ଛା, ଏମାନେ ତ ଇଚ୍ଛାକଲେ ଜଣକୁ କଣ କିଛି ଦେଇ ପାରିବେ ?

ସ୍ୱାମୀ—ନିଶ୍ଚୟ ! କହୋ, ଯାହା ହାତରେ କ୍ଷମତା ଅଛି, ସେ ଇଚ୍ଛାକଲେ କିଛି ଦେଇ ନ ପାରିବ କାହିଁକି ? ଆପଣା ଭାଗ୍ୟ ଅନୁସାରେ ସେପରି ଅନୁଗ୍ରହ ମିଳିବ ! ଭାଗ୍ୟ ଅନୁସାରେ ଅନୁଗ୍ରହ ମିଳିପାରିବ, ନିଗ୍ରହ ମଧ୍ୟ ମିଳିପାରିବ । ଆମ ଦେଶରେ ସେଥିହେତୁ ଲୋକେ କହନ୍ତି, "ଦିଲ୍ଲୀଶ୍ୱରୋ" ବା "ଜଗଦୀଶ୍ୱରୋ ବା" । ପୁନଶ୍ଚ ଗୀତାରେ ଭଗବାନ କହିଲେ, "ଅହଂ ନରାଣାଂ ଚ ନରାଧିପଃ" ଅର୍ଥାତ୍ ଆମ ଦେଶର ଏହିପରି ସଂସ୍କୃତି ଯେ ରାଜା ଈଶ୍ୱର କଳା ନେଇ ଜନ୍ମ ହୁଏ । ରାଜଶକ୍ତି ଐଶୀଶକ୍ତି । ଭଗବାନ କେବଳ ଜନ୍ମଦାତା ନୁହନ୍ତି । ସେ ପାଳନକାରୀ, ତାଙ୍କ ଶକ୍ତିରେ ବିଭୂଷିତ ନ ହେଲେ ଲୋକ ରାଜା ହୋଇ ପାରିବ ନାହିଁ । ସମସ୍ତେ ତ ରାଜା ହେଉ ନାହାନ୍ତି, ଭଗବାନ ଯାହା ମୁଣ୍ଡରେ କଳସ ଢାଳୁଛନ୍ତି ସେ ରାଜସିଂହାସନରେ ବସୁଛି । ଶାସନଶକ୍ତି ଜଣକ ମୁଣ୍ଡରେ ଥାଏ । ଯେ କୌଣସି ପ୍ରକାର ଶାସନତନ୍ତ୍ର ହେଉ ଏହି ନିୟମ ସର୍ବତ୍ର ଦେଖାଯାଏ ।

ସ୍ତ୍ରୀ—ଆଚ୍ଛା ହଇହେ, ଲାଟସାହେବ ଏବଂ ତାଙ୍କ ସ୍ତ୍ରୀ ଗଲାବେଳେ ଭାରି ଦୁଃଖିତ ହେଲା ପରି ଜଣାଗଲା, କାନ୍ଦ କାନ୍ଦ ହେଲେ କାହିଁକି ?

ସ୍ୱାମୀ—ହଇହେ, ଏତକ ବୁଝିପାରୁ ନାହିଁ । ସେ କେତେ ଉଚ୍ଚ ଆସନରେ ଥିଲେ, ସମଗ୍ର ଓଡ଼ିଶା ପ୍ରଦେଶରେ ରାଜା ଥିଲେ, କେତେ ବାଭବ ଭୋଗ କରୁଥିଲେ, କେତେ ଚାକରଙ୍କର ପ୍ରଭୁ ହୋଇଥିଲେ, ମାସକୁ ୫୫୦୦ ଟଙ୍କା ଦରମା ପାଉଥିଲେ, ତାଙ୍କ ଖାଇବା ପିଇବା ଯିବା ଆସିବା ଇତ୍ୟାଦି ଖର୍ଚ୍ଚ ସରକାରୀ ତହବିଲରୁ ପାଉଥିଲେ । ଏତେ ସୁଖ ଭୋଗ ବିଳାସରୁ ସେ ବର୍ତ୍ତମାନ ବଞ୍ଚିତ ହେଲେ, ତାଙ୍କ କାର୍ଯ୍ୟକାଳ ଶେଷ ହେଲା । ସେ କାଲି ସକାଳକୁ ଜଣେ ସାଧାରଣ ସାହେବ । ମୁଣ୍ଡରୁ ସିନ୍ଦୁର ଟୋପା ଗଲେ ଲୋକ କେତେ ସମ୍ମାନ ହରାଇ ବସେ । ସେ କଥା ମନେ ପଡ଼ିଲେ ଲୋକ ମନରେ ଦୁଃଖ ହେବ ନାହିଁ ? ତୁମେ ଯେବେ ତାଙ୍କ ଆସନରେ ଥାନ୍ତ ତୁମର କଣ ଦୁଃଖ ହୁଅନ୍ତା ନାହିଁ ? ମଣିଷ ତ ସମସ୍ତେ ସମାନ—ସେ କଣ, ତୁମେ କଣ, ମୁଁ କଣ ! ଯେ ରାଜଭୋଗ କରୁଥିଲା ସେ ଭୋଗରୁ ବଞ୍ଚିତ ହେଲେ ଆବଶ୍ୟ ଦୁଃଖିତ ହେବ । ସେମାନେ ଦୁଃଖିତ ହେଲେ ଆଶ୍ଚର୍ଯ୍ୟ କଣ ? ତାଙ୍କଠାରେ ରାଜଶକ୍ତି ଥିଲା ବୋଲି ତାଙ୍କୁ ବିଦାୟ ଦେବା ଏତେ ସମ୍ଭାର, ଏତେ ଆୟୋଜନ ! କେତେ ସାହାବ ତ ପୁରୀକି ବା ଓଡ଼ିଶାକୁ ଯିବା ଆସିବା କରୁଛନ୍ତି, କାହା ପାଇଁ ଏପରି ସମ୍ଭାର ତ ହେଉନାହିଁ !

ସ୍ତ୍ରୀ—ହଁ ତା ନୁହେଁ କଣ ? ହଇହେ ଆମ ଦେଶ ଲୋକ ସେ କାମ ପାଉ ନାହାନ୍ତି କାହିଁକି ?

ସ୍ୱାମୀ—ଭାଗ୍ୟ ମୂଳ ! ଆମ ଦେଶ ଲୋକଙ୍କର ସେ ଭାଗ୍ୟ କାହିଁ ? କେତେବେଳେ ନାହା ଉପରେ ଗାଡ଼ି, କେତେବେଳେ ଗାଡ଼ି ଉପରେ ନାହା ! ସେପରି ଭାଗ୍ୟବାନ୍ ପୁରୁଷ ଆମ ଦେଶରେ ଜନ୍ମି ନାହାନ୍ତି । ପ୍ରଭୁ ଆମ୍ଭମାନଙ୍କୁ ସେପରି କୃପା କରୁ ନାହାନ୍ତି । ଜଣେ

ଦେଶୀ ଲୋକ ଲର୍ଡ଼ ସିଂହ ଏପରି ପାଇଥିଲେ । ଲାଟ ବଡ଼ଲାଟ ଶାସନ ଯନ୍ତ୍ରରେ ଗୋଟିଏ ବଡ଼ କର୍ମ । ରାଜାଙ୍କର ଯାହାଙ୍କଠାରେ ବିଶ୍ୱାସ ହେବ, ସେ ସେ କର୍ମ ପାଇବ । ଇଂରେଜ ଜାତି ଆମଦେଶର ରାଜା । ତାଙ୍କ ଦେଶର ପାର୍ଲିଆମେଣ୍ଟ ବା ବ୍ୟବସ୍ଥାପକ ସଭା ଶାସନ ଯନ୍ତ୍ର ଚଳାଉଛନ୍ତି । ସେମାନେ ଭାରତ ଶାସନ ପାଇଁ ଦାୟୀ । ସେମାନଙ୍କର ନିଜ ଜାତୀୟ ଲୋକ ଉପରେ ବିଶ୍ୱାସ ହେବା ସ୍ୱାଭାବିକ । ସେମାନେ ବଡ଼ ବଡ଼ ଦାୟିତ୍ୱପୂର୍ଣ୍ଣ କର୍ମ ପାଇଁ ସେମାନଙ୍କ ଦେଶର ଭଲ ଭଲ ମଣିଷ ବାଛି କରି ପଠାଉଛନ୍ତି । ସେମାନଙ୍କ ଦେଶ ଲୋକଙ୍କ ଭିତରେ ସେହିପରି ସମସ୍ତଙ୍କ ଭାଗ୍ୟ ତ ସମାନ ନୁହେଁ । ଯେ ବେଶି ଭାଗ୍ୟବାନ୍ ତାଙ୍କ ଭାଗ୍ୟରେ ଏପରି କାମ ପଡ଼ୁଛି । କଥାରେ ଅଛି "ଭାଗ୍ୟ ଭୋଗୀ ବସୁନ୍ଧରା, ଏ ପୃଥ୍ୱୀ ନୁହଇ କାହାରି" ।

ସ୍ତ୍ରୀ—ଆଚ୍ଛା, ଏ ଲାଟ୍‌ସାହେବ ଆଉ ବେଶି ଦିନ ରହିଲେ ନାହିଁ କାହିଁକି ?

ସ୍ୱାମୀ—ସରକାରୀ ନିୟମ ଅନୁସାରେ ଜଣେ ଲୋକ ପାଞ୍ଚବର୍ଷରୁ ବେଶି ଏ କାମରେ ରହିବ ନାହିଁ । ଜଣେ ଯେବେ ବେଶୀ କାଳ ରହିବ ତେବେ ତ ଆଉ କାହାରି ପାଳି ପଡ଼ିବ ନାହିଁ । ଆଉ ଯେଉଁ ଭାଗ୍ୟବାନ୍ ପୁରୁଷମାନେ ଅଛନ୍ତି ସେ କଣ କରିବେ ? ଭଗବାନ ସମାନ ଅବସ୍ଥାରେ ସମସ୍ତଙ୍କୁ ବେଶିକାଳ ରଖନ୍ତି ନାହିଁ । ଆଚ୍ଛା, ଆଜି ଏତିକି ଥାଉ ।



# ଏକାଦଶ ପରିଚ୍ଛେଦ

## ଇଉରୋପୀୟ ଯୁଦ୍ଧର ଚଲଚ୍ଚିତ୍ର

ସ୍ତ୍ରୀ—ହଇହେ, ତେମେ ଆଜ ସକାଳ ଚଲଚ୍ଚିତ୍ର ଦେଖି ଯାଇ ଥିଲ କି ? କେବେ ତ ଯାଅ ନାହିଁ, ଆଜ ଗଲ କାହିଁକି ?

ସ୍ୱାମୀ—ହଁ ହଁ ଆଜ ଯାଇଥିଲି । ଇଉରୋପରେ ଯେଉଁ ଯୁଦ୍ଧ ଲାଗିଛି ସେହି ଚିତ୍ର ଆଜ ଦେଖାଉଥିଲେ । ଯୁଦ୍ଧ ତ ଆଖିରେ ଦେଖି ପାରିଲେଇଁ ନାହିଁ ଚିତ୍ରରେ ଦେଖି ଆସିବା—ବ୍ୟାପାର କଣ ? ଏଇକଥା ମନେ ଭାବିଗଲି ଭାରି ।

ସ୍ତ୍ରୀ—କଣ ଦେଖିଲ ଭଲା ?

ସ୍ୱାମୀ—ଯାହା ଦେଖିଲି ସେ କଥା ଆଉ କଣ କହିବି ! ସେ ସବୁ ଚିତ୍ରର ପୂର୍ଣ୍ଣମାତ୍ରାରେ ବର୍ଣ୍ଣନା କରିବା ପାଇଁ ମୋର ଭାଷା କାହିଁ ? ଧନ୍ୟ ସେ ଲୋକଙ୍କ ସାହସ, ଉଦ୍ୟମ ଆଉ ଧୈର୍ଯ୍ୟ । ଗୋଟାଏ ଘରେ ନିଆଁ ଲାଗିଗଲେ କଣ ହେଉଛି ଦେଖୁଛଟିକି ? କେତେ ଲୋକ ଘୋ ଘା, ଧୋ ଧା ହୋଇ ଜମି ଯାଉଛନ୍ତି ; ପାଣି ପକାଉଛନ୍ତି, ନିଆଁ ଲିଭାଉଛନ୍ତି ! ସେ ଦେଶରେ ଏବେ କଣ ହେଉଛି ? ଶତ୍ରୁ ଆସି ଘରଦ୍ୱାର ପୋଡ଼ି ଜାଳି ଧ୍ୱଂସକରି ଦେଉଛି । ଶହ ଶହ ହଜାର ହଜାର ଉଡ଼ାଜାହାଜ ଆସି ଏକାଥରକେ ଶହଶହ ଅଗ୍ନିଗୁଳାମାନ ପକାଇ ଦେଉଛି । ଗୁଳାମାନ ପଡ଼ି ଯେତେବେଳେ ଫାଟୁଛି, ତେତେବେଳେ କୋଠାବାଡ଼ିକି ଭାଙ୍ଗି ଗୁଣ୍ଡ କରି ଦେଉଛି । ସୁତ ସବୁ ଧୂଳି ହୋଇ ଆକାଶକୁ ଉଡ଼ି ଯାଉଛି ; ଲକ୍ଷ ଲକ୍ଷ କୋଟି କୋଟି ଟଙ୍କାର ଘରକରଣା ଜିନିଷମାନ ପୋଡ଼ି ପାଉଁଶ ହୋଇଯାଉଛି, ହଜାର ହଜାର ଲୋକ ମରି ହଜି ଯାଉଛନ୍ତି । କାହାର ହାତ ଛିଣ୍ଡି

ଯାଉଛୁ, କାହାର ଗୋଡ଼ ଛୁଟି ଯାଉଛୁ । କାହାଠୁଁ ରକ୍ତଧାର ବହି ଯାଉଛୁ, ଗଳମାନଙ୍କରେ ଖାଲ ଇଟା ପଥର ପାହାଡ଼ ପର ଜମା ହୋଇଛୁ । କିଏ ପାଣି ପକାଇ ନିଆଁ ଲିଭାଇବା ପାଇଁ ଯତ୍ନ କରୁଛି, ମାତ୍ର ତାର ସବୁ ଯତ୍ନ ବିଫଳ ହେଉଛୁ । ଏଣେ ଆଗ୍ନେୟ ଗାଡ଼ିଆଟାଏ ଲେଖାଏଁ ଆସି ଅଗ୍ନି ବାଣ ବର୍ଷଣ କରି ଦେଉଛୁ । ଏ ଗାଡ଼ିଆଟି-ମାନ ଖାଲ ଡିପ କିଛୁ ନ ମାନି ଡେଇଁ ଡେଇଁ ଗ୍ଲଲଛୁ । ତେଣେ ଆକାଶଛତା ଧରି ମଣିଷ ଉପରୁ ଓହ୍ଲାଇ ପଡ଼ୁଛନ୍ତି, ବନ୍ଧୁକ ତୋପ ମାରି ଘର ଦ୍ୱାର ପୋଡ଼ି ଜାଳି ଦେଉଛନ୍ତି । ଉପରୁ ତିନି ଗ୍ଲରି ମାଇଲ ଦୂରରୁ ଖାଦ୍ୟ ପଦାର୍ଥ ଗ୍ଲେଟ ତୋପ ଗୁଳଗୁଳା ଯେଜି ଗୋଟାଏ ଛତା ସାହାଯ୍ୟରେ ଓହ୍ଲାଇବା କି ଅଦ୍ଭୁତ ସାହସ ମନେ ମନେ ଭାବୁ । ବଡ଼ ବଡ଼ ଯୁଦ୍ଧ ଜାହାଜଗୁଡ଼ାକ ବୁଡ଼ାଇ ଦେଉଛନ୍ତି, ଭାଙ୍ଗି ଦେଉଛନ୍ତି, ପୋଡି ଦେଉଛନ୍ତି, ସେଥିରେ କେତେ କୋଟି ଟଙ୍କାର ଜିନିଷ ମୁହୂର୍ତ୍ତିକେ ଅତଳ ସମୁଦ୍ର ଗର୍ଭରେ ଲୀନ ହୋଇ ଯାଉଛୁ ! ଆଜକୁ ବର୍ଷକୁ ଉପର ହେଲା ଏହି ଧ୍ୱଂସଲୀଳା ଗ୍ଲଲଛି । କେତେ କୋଟି ଟଙ୍କା ଯେ ପୋଡ଼ି ଜଳି ବୁଡ଼ି ଗଲଣି ତାହା ହିସାବ କରି ଦେଖିଲେ ଲୋକ ବାଲୁଭୂତ ମୂର୍ଚ୍ଛା ହୋଇଯିବ ।

ସ୍ତ୍ରୀ—ଆଚ୍ଛା ଦିନକେ କେତେ ଟଙ୍କା ଖର୍ଚ୍ଚ ହେଉଛି ଭଲା ?

ସ୍ୱାମୀ—ମୁଁ ତାର ସଂଖ୍ୟା କରି କହି ପାରିବି ନାହିଁ । ତେବେ ଆମ ଇଂରେଜ ସରକାରଙ୍କର ଦିନକୁ ୨୦ ବା ୨୫ କୋଟି ଟଙ୍କା ଖର୍ଚ୍ଚ ହେଉଛି ବୋଲି ସେମାନେ କହୁଛନ୍ତି । ଆହେ, ଆମକୁ ତ ଦିଓଳି ଦିମୁଠା ଭଲ କରି ଖାଇବାକୁ ମିଳୁନାହିଁ, ଆମେ ଏ ଖର୍ଚ୍ଚର କିଛି କଳ୍ପନା କରି ପାରୁଥାଉଁ ? ଏମାନେ ଯେ କେତେ ଟଙ୍କା

ରଖିଛନ୍ତି, କେତେ ଯେ ଖର୍ଚ୍ଚ କରୁଛନ୍ତି ଦେଖିଲେ ମନେ ହୁଏ ଭଗବାନ୍ ତେଲିଆ ମୁଣ୍ଡରେ ତେଲ ଢାଳନ୍ତି । ଭଗବାନଙ୍କ ରାଜ୍ୟରେ ଏ କଥା ବଡ଼ ବିଚିତ୍ର ! କାହାକୁ ଖାଇବାକୁ ଦାନା, ପିନ୍ଧିବାକୁ କନା ମିଳୁ ନାହିଁ, କିଏ ଯୁଦ୍ଧକରି କୋଟି କୋଟି ଟଙ୍କା ଅକାତରେ ବ୍ୟୟ କରୁଛି । କେତେ ଟଙ୍କା ଯୁଦ୍ଧରେ ଖର୍ଚ୍ଚ ହେଉଛି ଆମେ ତହିଁରୁ ଧାରଣା କରିପାରିବା ନାହିଁ ।

ସ୍ତ୍ରୀ—ଆଚ୍ଛା, ଏ ଯୁଦ୍ଧ ହେଲା କଣ ପାଇଁ ?

ସ୍ୱାମୀ—ତେମେ ତ ଶୁଣିଛ, ପଶା ଖେଳରୁ ମହାଭାରତ ଯୁଦ୍ଧ ହୋଇଥିଲା । ସେହିପରି ଗୋଟିଏ ସାମାନ୍ୟ କାରଣରୁ ଏ ଯୁଦ୍ଧ ଜନ୍ମିଲା, ଏବେ ସାରା ପୃଥିବୀ ବ୍ୟାପିଗଲାଣି । ଇଉରୋପ, ଆଫ୍ରିକା, ଆମେରିକା, ସବୁଆଡ଼େ ଏ ସମରାନଳ ପ୍ରଜ୍ଜ୍ୱଳିତ ହୋଇ ଉଠିଲାଣି । ଭାରତକୁ ଏ ସମର ଅନଳ ଯେ ମାଡ଼ି ନ ଆସିବ ସେ କଥା କିଏ କହିବ ! ସମର ଅଗ୍ନି ତ ହୁ ହୁ ହୋଇ ମାଡ଼ି ଯାଉଛି, ଏ ଭଗବାନଙ୍କ ଲୀଳା । ମତେ ବୋଧହୁଏ ସବୁଆଡ଼େ ଧର୍ମ୍ମ ଗ୍ଲାନି ଘଟିବାରୁ ଭଗବାନ୍ ଧର୍ମ୍ମସଂସ୍ଥାନ ପାଇଁ ଏ କାଣ୍ଡ ସୃଷ୍ଟି କରିଛନ୍ତି, ଏ ମଣିଷ ଇଚ୍ଛାରେ ହେଉନାହିଁ । ମଣିଷମାନଙ୍କର ଯେତେବେଳେ ଗର୍ବ ଅହଙ୍କାର ବଢ଼ିଯାଏ, ମଣିଷମାନେ ଯେତେବେଳେ ଧରାକୁ ସରା ମନେ କରନ୍ତି, ପ୍ରବଳ ପକ୍ଷ ଯେତେବେଳେ ଦୁର୍ବଳ ପକ୍ଷ ଉପରେ ଅତ୍ୟାଚାର କରେ, ସେତେବେଳେ ଭଗବାନ ଏପରି ପ୍ରଳୟ ଘଟାନ୍ତି । ମଣିଷ ଗୋଟିଏ ଘାସଗଛ ସୃଷ୍ଟି କରି ପାରୁ ନାହିଁ, ସେ କୋଟି କୋଟି ପ୍ରାଣୀ ନାଶ କରିବାର ତାର ମମତା କାହୁଁ ଆସିଲା ?

ସ୍ତ୍ରୀ—ଭାରତକୁ ଯୁଦ୍ଧ କାହିଁକି ମାଡ଼ି ଆସିବ ମ ? ଭାରତ ଲୋକ କଣ ଯୁଦ୍ଧ କରୁଛନ୍ତି ?

ସ୍ୱାମୀ—ଆହେ, ଭାରତ ଲୋକଙ୍କର କି ବଳ ଅଛି ଯେ ସେମାନେ ଯୁଦ୍ଧ କରିବେ, ଭାରତ ଲୋକେ ତ କାଣୀ ଆଖିରେ କଜଳ ଗାରେ । ସେମାନେ ତ ଇଂରେଜଙ୍କ ବାହୁଚ୍ଛାୟା ତଳେ ଅଛନ୍ତି । ଭାରତ ଇଂରେଜ ସାମ୍ରାଜ୍ୟଭୁକ୍ତ । ଭାରତ ଉପରେ କିଏ ଆଖି ପକାଇଲେ ଇଂରେଜମାନେ ଭାରତକୁ ରକ୍ଷା କରିବା ପାଇଁ ଯୁଦ୍ଧ କରିବେ । ଇଂରେଜମାନେ ଭାରତବାସୀଙ୍କି ଯାହା କହିବେ ସେମାନେ ତାହା କରିବେ । ଏକାଳେ ଯେଉଁ ଅସ୍ତ୍ର ଶସ୍ତ୍ର ବ୍ୟବହାର ହେଉଛି ସେ ସବୁଥିରେ ଭାରତବାସୀ ଅନଭିଜ୍ଞ ।

ସ୍ତ୍ରୀ—ଭାରତବର୍ଷରେ ବହୁତ ପ୍ରକାର ଅସ୍ତ୍ର ଶସ୍ତ୍ର ଥିଲା । ମହାଭାରତ ଯୁଗରୁ ସେ ସବୁ କ୍ରମେ କ୍ରମେ ଲୋପ ପାଇଗଲାଣି । ଏବକାଳକୁ ସେ ସବୁ ଅସ୍ତ୍ର ଶସ୍ତ୍ର ନାମ ଶୁଣିଲେ ସ୍ୱପ୍ନ ପରି ଲାଗୁଛି । ଆମ ଦେଶ ଶାସ୍ତ୍ର ବିଦେଶକୁ ଗଲା , ବିଦେଶୀମାନେ ଆମ ଶାସ୍ତ୍ରରୁ ସାର ସଂଗ୍ରହ କରି କାମରେ ଲଗାଇଲେ । ଆମଦେଶ ପାଠୁଆମାନେ କହିଲେ, ଆମ ପୁରାଣରେ ଯାହା ସବୁ ଲେଖାଅଛି, ସେ ଗୁଡ଼ାକ କଞ୍ଚା ମିଛ । ଋଷିମାନେ ଗଞ୍ଜାଇ ଖାଇ ମିଛକଥାଗୁଡ଼ାକ ଲେଖିଛନ୍ତି । କିନ୍ତୁ କେଉଁଠୁ ବିଦେଶୀ ଲୋକେ ନୂଆ ନୂଆ ଅସ୍ତ୍ର ଶସ୍ତ୍ର ବାହାର କଲେ ଏବଂ ସେ କଥା ସବୁ ଇଂରେଜୀ ଭାଷାରେ ଛାପାହେଲା ! ଆମ ଇଂରେଜୀ ପଢ଼ୁଆ ବାବୁମାନେ କହୁଛନ୍ତି , ହଁ ହଁ, ଏସବୁ କଥା ଆମ ଶାସ୍ତ୍ରରେ ଥିଲା । ପୁଷ୍ପକଯାନ , ଆଗ୍ନେୟାସ୍ତ୍ର, ମୋହନାସ୍ତ୍ର, ନାଗପାଶ ପ୍ରଭୃତି ଶତ ଶତ ପ୍ରକାରର ଅସ୍ତ୍ର ଶସ୍ତ୍ର ନାମ ପୁରାଣରେ ଦେଖାଯାଏ । ଆମ ପୂର୍ବପୁରୁଷମାନେ ବହୁତ କଥା କରି ଯାଇଥିଲେ , ଆମେ ଅଯୋଗ୍ୟ ସେ ସବୁ ହରାଇ ବସିଲୁଣି । ଅଧିକ ଉନ୍ନତ କରିବା ଦୂରରେ ଥାଉ, ଘର ପୋଥିପତ୍ରଗୁଡ଼ାକ ବିଦେଶୀ ପଣ୍ଡିତଙ୍କୁ ବିକିଦେଲୁଁ ।

ସେମାନେ ସେସବୁ ଶାସ୍ତ୍ରର ମହତ୍ତ୍ୱ, ସତ୍ୟତା ବୁଝିଲେ, ବିଶ୍ୱାସ କଲେ, ଉପାୟ ଉଦ୍ଭାବନ କରି ତାକୁ ସତ ଫଳାଇଲେ । ଆମେ ଆବାକାବା ହୋଇ ସେ ସବୁ ଦେଖିଲୁଁ, ଶୁଣିଲୁଁ । ଆମ ଭାଗ୍ୟକୁ ଧନ୍ୟ କହିବା ! ଏଇଲାଗେ ବିଦେଶୀଙ୍କ କପାଳ ତେଜଚ୍ଛି, ସେମାନେ ବୁଦ୍ଧିବଳ ଖଟାଇ ଅଦ୍ଭୁତ କାଣ୍ଡକାରଖାନା ଦେଖାଉଛନ୍ତି, ସାତ ପୃଥିବୀକ ବସ୍ତୁ ଖୋଜି କରି ପକାଉଛନ୍ତି, ଆକାଶ ପାତାଳ ଟଳମଳ କରୁଛନ୍ତି, ରଣ ଦୁନ୍ଦୁଭି ବଜାଇ ଉନ୍ମତ୍ତ ହୋଇ ନାଚୁଛନ୍ତି । ସେ ଦେଶର ମାଇପେ ଘୋଡ଼ା ଚଢ଼ୁଛନ୍ତି, ବନ୍ଧୁକ ମାରୁଛନ୍ତି, ଓକିଲି କରୁଛନ୍ତି, ଯୁଦ୍ଧ ଭୂଇଁକି ଯାଇ ଆହତ ଲୋକଙ୍କର ସେବା ଶୁଶ୍ରୂଷା କରୁଛନ୍ତି । ଆମ ଦେଶ ମାଇପେ ସବୁ କଥାକୁ ଇଲେ ବୋପା ! ଆମ ଦେଶ ମରଦମାନେ ତ ସବୁ କଥାକୁ ଇଲେ ବୋପା, ମାଇପଙ୍କୁ କଣ କହିବା ! ସେମାନେ ପ୍ରବଳ କର୍ମ-ସ୍ରୋତରେ ଭାସୁଛନ୍ତି—ଆମେ ଆଳସ୍ୟ ସ୍ରୋତରେ ଭାସୁଥାଉଁ । ସେମାନେ ଖାଇପିଇ ହୃଷ୍ଟପୁଷ୍ଟ, ବଳିଷ୍ଠ—ଆମେ ଜୀର୍ଣ୍ଣଶୀର୍ଣ୍ଣ, ଦୁର୍ବଳ । ସେମାନଙ୍କ ମୁହଁ ସବୁବେଳେ ଉପରକୁ—ଆମ ମୁହଁ ତଳକୁ । ସେମାନେ ଧନୈଶ୍ୱର୍ଯ୍ୟ ବିଭବରେ ଦୋଳି ପହଁଆଉଛନ୍ତି—ଆମେ ନିର୍ଦ୍ଧନ । ଲକ୍ଷ୍ମୀ ନ ଥିଲେ ଲୋକେ ଏହିପରି ହୋଇଯାନ୍ତି । ଲକ୍ଷ୍ମୀ ବର୍ତ୍ତମାନ ସ୍ୱଦେଶରେ । ଧନ ଜନ ଗୋପଲକ୍ଷ୍ମୀ ବର୍ତ୍ତମାନ ସେ ଦେଶରେ ପୂର୍ଣ୍ଣ ମାତ୍ରାରେ ବିରାଜୁଛନ୍ତି । ଆଚ୍ଛା, ଆଜି ଏତିକି ଥାଉ ।

—*—

## ଦ୍ୱାଦଶ ପରିଚ୍ଛେଦ

ସ୍ତ୍ରୀ—ଆଲେ ମୋ ଧନକୁ କଏ ନେଇଗଲା ଲେ, ମୋ ଧନ ସଙ୍ଗାଳ । ଏଇଲାଗେ ମୋ ଧନ ଖେଳୁଥିଲା ଲେ ମୋ ଧନ ସଙ୍ଗାଳ, ଝୁହୁଁ ଝୁହୁଁ କଏ ନେଇଗଲା ଲେ ମୋ ଧନ ସଙ୍ଗାଳ ।

କୁଆଁ କୁଆଁ ହୋଇ ଧନ କାହୁଁ ତୁ ଆସିଲୁ,
ଛଳେ ପଡ଼ୁ ପଡ଼ୁ କ ମୋହିନୀ ଲଗାଇଲୁ । ଧ୍ରୁବ ।

କାହିଁ ଥିଲୁ ତୁ ଆସିଲୁ ମୋ ଗରଭେ ସମ୍ଭାଇଲୁ
ଦଶମାସ ଦଶଦିନ କେତେ କଷ୍ଟ ଦେଲୁ । ୧ ।
କେତେ ପିତା ପାଣି ଖାଇ ଦଶ ମାସ ଚଳାଇଲିଁ
କେତେ ଆଶା ଭରସା ହୃଦରେ ଜଗାଇଲୁ । ୨ ।
ଛୋଟେ ଦେନ ଏ ସଂସାର ପାରି ହେବି ବଲି ସାର
ମୁହୂର୍ତ୍ତକେ ସବୁ ଆଶା ଭଙ୍ଗି ଚୂନା କଲୁ । ୩ ।
ଛୋର ହାହି ଦେଖି ଦେଖି ଭୋକ ଶୋଷ ମୁଁ ଉପେକ୍ଷି
ଝୁହୁଁ ଝୁହୁଁ ଚନ୍ଦ୍ରମା ବଦନ ଲୁଚାଇଲୁ । ୪ ।
ମୁଁ ଡାହାଣୀ କସ କଲ କଛି ବୁଝି ନ ପାରିଲ
ମୋହରି ଦୋଷରୁ ଧନ ଜୀବନ ହାରିଲୁ । ୫ ।
କାହୁଁ ଆସିଲା ଡାହାଣି ବେଗ ଛୋଟେ ନେଲା ଟାଣି
ନ ପାରିଲି କଛି ଜାଣି କାହିଁ ଚଳିଗଲୁ । ୬ ।
ରେ ବିଧି ବିଧାନ ଚୋର ନିୟମ ଅତି କଠୋର
ମାତା କୋଳୁ ପୁଅକୁ କପଟେ ଟାଣିନେଲୁ । ୭ ।
ମାଆ ମାଆ ଡାକ ବେଳେ ଆନନ୍ଦେ ହୃଦ ଉଚ୍ଛୁଳେ
କେଉଁ ପାପେ ମୋର ସୁଖ-ନାବ ବୁଡ଼ାଇଲୁ ।୮।

ମୋତେ ପଛେ ନେଇଯାଅ                    ମୋ ଧନକୁ ଫେରିଦିଅ

ମାତର ପରାଣ ବଧି କଷ୍ଟ ନ ବୁଝିଲୁ ।୪।

ଓଃ, ଓହୋ ମୁଁ କେମନ୍ତ ଏ ପ୍ରାଣ ଧରି ରହିବି ରେ ମୋର ଧନ ସଙ୍ଗାତ । ଦିନ ଯିବ ସିନା ତୋର କଥା ଗ୍ଳାନ ଗ୍ଳାନ ରେ, ମୋର ଧନ ସଙ୍ଗାତ ।

ସ୍ୱାମୀ—(ପ୍ରବେଶ) କହୋ, କଣ କଣ ? କାହିଁକି ଗଣ୍ଡଗୋଳ ଲଗିଛୁ ମ ? କଣ ହେଲା କଣ ?

ସ୍ତ୍ରୀ—ଦେଖିଲ ଆଉ ମୋ ଧନ ନାହିଁ ! ଆଜ ଏ ପୁରରେ ଧନ ନାହିଁ ହେ ! କଣ କରିବି କପରି ଏ ପ୍ରାଣ ଧରିବି । ମୋତେ ଚଉଦ ଭୁବନ ଅନ୍ଧାର ଦିଶୁଛି । ଡାହାଣୀ ଯମ ମତେ ହେଲେ ନେଇଥାନ୍ତା, କେତେ କାନ ଫୁଙ୍କିଲଣି, କେତେ ପାଣି ମୁହଁରେ ମାରିଲଣି । ନାହିଁ ହେ ମୋ ଧନ ନାହିଁ, ହେଇଟି ପରା ନେଳ ପଡ଼ିଲାଣି । ତମେ ଏତେବେଳଯାଏ କୁଆଡ଼େ ଯାଇଥିଲ କି ?

ସ୍ୱାମୀ—ଆହେ, ମୁଁ ତ ଏଇଲଗେ ଘରୁ ଯାଇଥିଲି । ମୁଁ ଥିଲେ ବା କଣ କରନ୍ତି । ଯାହାର ଯେଉଁଥିରେ ଯେତେବେଳକୁ ନିଦାନ ଅଛି ତାକୁ ତ ହରି ଶଙ୍କର ବ୍ରହ୍ମା ହେଲେ ରଖି ପାରିବେ ନାହିଁ, ମୁଁ ଥିଲେ କଣ କରନ୍ତି ? ରୋଗର ସିନା ଔଷଧ ଅଛି, ନିଦାନ ରୋଗର ଔଷଧ ନାହିଁ । ଔଷଧ ପାଖରେ ଥିଲେ ମଧ୍ୟ ଦେବାକୁ ଦେଖାଯିବ ନାହିଁ । କିଛି ବୁଦ୍ଧି ପାଇଟିବ ନାହିଁ । ସେତେବେଳେ ତ ବୁଦ୍ଧି ହରନ୍ତି ଦୟାନିଧି ।

ସ୍ତ୍ରୀ—ଆହେ, ମୁହୂର୍ତ୍ତିକେ ତ ଏ କଥା ଘଟିଲା । ପୁଅକୁ ଟୁଆଇଲି ପିଆଇଲି, ଏଇଲଗେ ତ ଖେଳୁଥିଲା, କଣ ହେଲା କାନ୍ଦି ଉଠିଲା, ଘୁଡ଼ୁଁ ଘୁଡ଼ୁଁ ଟା ହାତ ମୁଠା ମୁଠା କଲା, ନେଳ ପଡ଼ିଗଲା । କଣ ହେଲା

କଣ ହେଲା ଦେଖୁ ଦେଖୁ ତ ଶେଷ । ଆମେ ତ ଆବାକାବା ହୋଇଗଲୁ । ଘରେ ତ ଔଷଧ ଅଛି, ଦେବାକୁ ବେଳ ସହିଲା ନାହିଁ । କଣେ କରିବ କହିଲ ?

ସ୍ୱାମୀ—କଣ କରିବ ? ଏହିପରି କନ୍ଦାକଟା କଲେ ମୁଣ୍ଡ ବାଡ଼େଇଲେ, ନ ଖାଇଲେ ନ ପିଇଲେ, ବାହୁନି ଗୀତ ଗାଇଲେ, କଣ ସେ ଆଉ ଫେରି ଆସିବ ? ସଂସାର ମଧ୍ୟରେ ଦେଖୁଛ କେହି ଜଣେ ଫେରୁଛି ? ତାପାଇଁ କାନ୍ଦିକାନ୍ଦି ମରିଗଲେ ଭଲା ସେ ଆଉ ଫେରିବ ? ଏଣିକି ଯେତେ ଚିନ୍ତା କରିବ ତେତେ ଆପଣା ଦେହରେ କଷ୍ଟ ଭୋଗ କରିବ, ତା ବ୍ୟତୀତ ଅନ୍ୟ କିଛି ଫଳ ନାହିଁ । ଗଲା ତ ଗଲା ଆଉ ସେ କଥା ଭାବିବା ଉଚିତ ନୁହେଁ । କୋଇଲ ଲେ ଗଲା ପୁଣି ବାହୁଡ଼ି ନଇଲା । ମନକୁ ବୋଧ କରି ଶାନ୍ତ ହୁଅ, ଛୁଆଙ୍କ ପାଷାଣଠାରୁ ତ୍ରାଣ କର । ଏ ତ ସଂସାର, ଏହି ଲୀଳା ସବୁବେଳେ ଲାଗିଛି ! ନିତି ନିତି କୋଟି କୋଟି ପ୍ରାଣୀ ମରୁଛନ୍ତି, ଜନ୍ମୁଛନ୍ତି । କାହାପାଇଁ କେତେ କାନ୍ଦିବ ?

ସ୍ତ୍ରୀ—କହୁଛ ନା ନାତିଟି ହୋଇଥିଲା ଚାଲିଗଲା, ତମ ମନ କଣ ବ୍ୟସ୍ତ ହେଉ ନାହିଁ ?

ସ୍ୱାମୀ—ମୁଁ କଣ ଏ ସଂସାରରୁ ବାହାର ? ମନ ବ୍ୟସ୍ତ ହେଲେ କ'ଣ କରିବି ? ଯେଉଁ ରୋଗକୁ ଔଷଧ ନାହିଁ ତାପାଇଁ ଭାବିଲେ କଣ ହେବ ? ଯିବା ଆସିବା ତ ଲାଗିଛି । ମୋ ବୟସକରେ ଦେଖୁଛି କେତେ ଆତ୍ମୀୟ ସ୍ୱଜନଙ୍କୁ ଏହି ହାତରେ ପୋଡ଼ି ଭସ୍ମକରି ଦେଲଣି । ଜନ୍ମଦାତା ପିତା ଗଲେ ଦେଖିଲି, ସ୍ନେହମୟୀ ଯେ ସେ ଗଲେ ଦେଖିଲି, ଗର୍ଭଧାରିଣୀ ଜନନୀ ଛାଡ଼ି ଚାଲିଗଲେ, ବିମାତା ଗଲେ, ଭଗ୍ନୀ ଗଲା, ଦୁଇଟା ଝିଅ ଗଲେ, ଏ ସବୁ ତ ଗଲେ, ନିଜେ ତ ଦିନେ ଏହିପରି ଯିବି, ଏ ତ ଜଗତ ଆମ ଘରର କଥା । ସାଇପଡ଼ିଶା

ଗ୍ରାମ ଗତ ଦେଖ, କେତେ କେତେ ଲୋକ ଆମ ସାଥିରୁ ଚାଲିଗଲେଣି, ଯାଉଛନ୍ତି, ଯିବେ । ଖାଲି କଣ ଯାଉଛନ୍ତି, ବିଚିତ୍ର ପ୍ରକାରରେ ଯାଉଛନ୍ତି । ଯିବାର ନିର୍ଦ୍ଦିଷ୍ଟ ସମୟ ନାହିଁ । ଏତିକି ବୟସ ନ ହେଲେ ମଣିଷ ମରିବ ନାହିଁ, ଏପରି କିଛି କାଳ ଠିକଣା ନାହିଁ । କିଏ ପେଟରେ ରହି ମରି ଖସି ପଡ଼ୁଛି, କିଏ ତଳେ ପଡ଼ି କୁଆଁ କୁଆଁ ହୋଇ ମରିଯାଉଛି, କିଏ ଭେଣ୍ଡାରେ ଯାଉଛି, କିଏ ବୁଢ଼ା ହୋଇ ଯାଉଛି, କିଏ ବାଳକ ଅବସ୍ଥାରେ ଯାଉଛି, ବୁଢ଼ାବାପା ବସିଛି ପୋଷନ୍ତା ପୁଅ ଚାଲିଯାଉଛି, ଧଇତା ଅଛି ମାଇପ ଯାଉଛି, ମାଇପ ଅଛି ଧଇତା ଚାଲିଯାଉଛି, କିଛି ତ ଠିକଣା ନାହିଁ । କିଏ କେଉଁଠି ଥାଇ କିପରି ଏ ଜୀବନ ଘଣ୍ଟାକୁ ଚାବି ଦେଇଛି ତା ସେ ଜାଣେ । ଯେତେବେଳେ ଯାହାର ଚାବି ସରିଗଲା ସେତେବେଳେ ଘଣ୍ଟା ବନ୍ଦ ହେଲା । ସେ ଘଣ୍ଟା ବିଚିତ୍ର ଘଣ୍ଟା । ଆଉ କାହା ହାତରେ ସେ ଚାବି ନାହିଁ ଯେ ଆଉ ଥରେ ଚଳାଇ ଦେବ । ଏକା ମଣିଷଙ୍କ ପାଇଁ ଏ ନିୟମ ନୁହେଁ, ପଶୁ ପକ୍ଷୀ କୀଟ ପତଙ୍ଗ ସ୍ଥାବର ଜଙ୍ଗମ ସମସ୍ତଙ୍କପାଇଁ ଏକ ନିୟମ । ଗଛରେ ଫଳ ଫଳୁଛି—କିଏ କଷିରୁ ଝଡ଼ିପଡ଼ୁଛି, କିଏ ପାଚି ଝଡ଼ିପଡ଼ୁଛି, କିଏ ପବନରେ ଝଡ଼ିପଡ଼ୁଛି, କିନ୍ତୁ ଦିନେ ଝଡ଼ିବ, ଜନ୍ମିବ, ବଢ଼ିବ, ମରିବ ଏ ତ ଦୁନିଆ ପାଠ । ଏ ପାଠକୁ କେହି ବଦଳାଇ ପାରିବ ନାହିଁ । ଯିଏ ନାଁ ଜୀବ, ଏ ଦିନେ ଅବଶ୍ୟ ଯିବ । ଜୀବର ଧର୍ମ ଯିବ । ଏଥିପାଇଁ ଶୋକ କଲେ କି ଲାଭ ହେବ ?

ସ୍ତ୍ରୀ—ଲୋକେ ଶୋକ କରନ୍ତି କାହିଁକି ?

ସ୍ୱାମୀ—ଶୋକ କରିବାର ଦୁଇଟା ବଡ଼ କାରଣ ଅଛି । ପ୍ରଥମ କାରଣ ବର୍ତ୍ତମାନ ସୁଖରୁ ବଞ୍ଚିତ, ଦ୍ୱିତୀୟ କାରଣ ଭବିଷ୍ୟତ ସୁଖ-ଶାନ୍ତିରୁ ବଞ୍ଚିତ । ଆଉ ଗୋଟିଏ କାରଣ ଅଛି ସଙ୍ଗ ସୁଖରୁ ବଞ୍ଚିତ

ହେବା । ପାଞ୍ଚଜଣ ଲୋକ ଏକା ସଙ୍ଗରେ ଦୁଇ ମାସେ ରହିଲେ ସେମାନଙ୍କ ଭିତରେ ପରସ୍ପର ମଧ୍ୟରେ ଗୋଟାଏ ମମତା ଜନ୍ମିଯାଏ । ଛଡ଼ାଛଡ଼ି ହୋଇଗଲାବେଳେ ମନରେ ସେ ବିଚ୍ଛେଦଟା ବଡ଼ ଲାଗେ । ଏତେଦୂର ମମତା ହୁଏ ବିଚ୍ଛେଦବେଳେ କନ୍ଦାକନ୍ଦି ହୋଇଯାଏ । ଏତ ଦେଖୁଛ ମଣିଷର ପ୍ରକୃତି । ସ୍ତ୍ରୀ ପୁରୁଷଠାରୁ କେତେ ହାସାରିକ ସୁଖଭୋଗ କରୁଥାଏ, ପୁରୁଷ ସ୍ତ୍ରୀଠାରୁ ମଧ୍ୟ କେତେ ସୁଖ ଭୋଗ କରୁଥାଏ । ଭାଇ ହେଉ, ଯେ କୌଣସି ପରିବାରବର୍ଗଙ୍କଠାରୁ ମଣିଷ ସୁଖଲାଭ କରୁଥାଏ ଏବଂ ଭବିଷ୍ୟତକୁ ମଧ୍ୟ କେତେ ଆଶାବନ୍ଧ ବାନ୍ଧିକରିଥାଏ । ପୁଅ ପାଠ ପଢ଼ିବ, ଟଙ୍କା ରୋଜଗାର କରି ଆଣିଦେବ, ଜମିବାଡ଼ି କଣା ହେବ, କୋଠା ତୋଳା ହେବ, ଦୁଆରେ ହାତୀ ଝୁଲିବ ଇତ୍ୟାଦି ଇତ୍ୟାଦି କେତେ ଆଶା ମନରେ ପୋଷିଥାଏ । ପୁଅଟି ଯେବେ ଏ ସବୁ ଆଶା ପୂରଣ ନ ହେଉ ପୁଅକୁ ଯେବେ ଯମ ନେଇଯାଏ ତେବେ ସେହି ଆଶାଗୁଡ଼ିକ ଆସି ଆଖି ଆଗରେ ନୃତ୍ୟ କରି ମନେ ପକାଇ ଦେଇ କନ୍ଦାନ୍ତି । ସେ କଣ କାନ୍ଦିଲେ ଅଛି ନା ବୋବାଇଲେ ଅଛି, ମୁଣ୍ଡ ବାଡ଼େଇଲେ ଅଛି, ସେ ତ ଅଣନେଉଟା ଶର । ମଣିଷ କେତେଦିନ ଶୋକ କରେ, କାନ୍ଦେ, ପୁଣି ମୋଡ଼ି ମାଡ଼ି ହୋଇ ଅନ୍ୟ ଆଶା ଧରି ଘରଦ୍ୱାର କରେ । ଶୁଦ୍ଧଘର ସରିଲେ କ୍ରମେ କ୍ରମେ ପାସୋରି ପକାଏ । ମଣିଷ ମୋରବୋଲି ଯେଉଁ ମମତା କରେ, ସେହି ମମତା ଏ ଶୋକର କାରଣ ହୁଏ । ମୋ ପୁଅ, ମୋ ସ୍ୱାମୀ, ମୋ ଭାଇ ଏହି ଯେଉଁ ଦୃଢ଼ ବନ୍ଧନରେ ବାନ୍ଧି ହୋଇଥାଏ ସେ ବନ୍ଧନ ଛିଣ୍ଡିଗଲେ କେତେଦିନ କେଁ କାଁ ହୁଏ । ଖାଲି ମଣିଷ କାହିଁକି ? ଦେଖୁ ନାହିଁ କାଉଟା ଯେବେ ମରି ଯାଉଛି କାଉଯାକ ଏକାଠି ହୋଇ କା କା ରାବ କରି କମ୍ପାଇ ଦେଉଛନ୍ତି । ପ୍ରାଣୀ ମାତ୍ରେ ଏ ଡୋରିରେ ବନ୍ଧା ହୋଇଛନ୍ତି ।

ସ୍ତ୍ରୀ—ମୋର ବୋଲି କହିବାଟା କଣ ଦୋଷ ? ମୋ ପେଟରୁ ଯେଉଁଟି ଜନ୍ମହେଲା ତାକୁ ମୋର ବୋଲି କହିବ ନାହିଁ ତ ଆଉ କଣ କହିବ ?

ସ୍ୱାମୀ—ଆରେ, ଦୋଷ ନୁହେଁ କଣ ? ଦୋଷ ହେଉ ବା ଗୁଣ ହେଉ ସଂସାରୀମାନେ ଏ କଥା କହୁଛନ୍ତି କହିବେ, ସେଥିକି କେହି ମନା କରିପାରିବ ନାହିଁ । ବୁଝିଲେ ମଧ୍ୟ ଲୋକ ନ କହି ରହି ପାରୁନାହିଁ । ଏହା ତ ମାୟା—ମୋହିନୀ ମାୟା । କିନ୍ତୁ ପ୍ରକୃତ କଥାଟା ବୁଝିଲ ? ଯେଉଁଟି ଆମ ପେଟରୁ ଜନ୍ମ ହେଲା ତାକୁ ଆମର ବୋଲି କହିଲଇଁ । ମୋର ବୋଲି କଥାଟାର ସତ୍ୟତା କେତେଦୂର ଟିକିଏ ତଳେଇ ବୁଝିଲ । ଯେଉଁ ଜିନିଷଟା ଆମର ଅର୍ଥାତ୍ ଟଙ୍କା କହ, ପଇସା କହ, ଧାନ ଚାଉଳ ଇତ୍ୟାଦି କହ, ଯେଉଁ ଜିନିସକୁ ଆମେ ଆମର ବୋଲି ଦାବୀ କରୁଥାଇଁ ସେ ଜିନିସ କେହି ନେବାକୁ ଚାହିଁଲେ ସେ ତ ଆମ ଅନୁମତିରେ ନେଉଛି । ତମକୁ ନ ପଚାରି ନ ବତାଇ କେହି ସେ ଜିନିସ ନେଇ ପାରୁଛି ଭଲା ? ଆଚ୍ଛା କହିଲ ଏ କଥା ସତ କି ମିଛ ?

ସ୍ତ୍ରୀ—ହଁ ସତ, ଆମକୁ ନ ପଚାରି ନ ବତାଇ ନେବ କିପରି ? ସେହି କଥା ତ ଦେଖା ଯାଉଛି ।

ସ୍ୱାମୀ—ପୁଅଟିକି ଯେତେବେଳେ ଯମ ନେଇଗଲା ସେତେ-ବେଳେ ତମକୁ କିଛି ପଚାରିଲା ? ପୁଅ ଗଲାବେଳେ ତମର କିଛି ଅନୁମତି ନେଲା ? ଏମନ୍ତ କିଛି କହିଥିଲା ମୁଁ ଗଲେ ମୋ ମା କେତେ କାନ୍ଦିବ, ନାହିଁ ଯିବି ନାହିଁ, ଏ ଅଧିକାର କଣ ତାର ଅଛି ? ଆଚ୍ଛା ପୁଅ ତୁ ଯାଆ ନା, ତୁ ଗଲେ ମୁଁ କାନ୍ଦି କୋଡ଼ି ହୋଇ ମରିଯିବି । ତୁ

ଭବ ମୁଁ ମରିବା ପରେ ଯିବ—ଏ କଥା କହି ତୁମ୍ଭେ ପୁଅକୁ ଅଟକାଇ ରଖିବାର କ୍ଷମତା ତୁମ୍ଭର କିଛି ଅଛି ?

ସ୍ତ୍ରୀ—ନାହିଁ, ଏ କଥା କିଏ ବୋଲୁ ମ ? ସେ ଅଧିକାର ଥିଲେ ମୁଁ କିଣ ଛାଡ଼ିଥାନ୍ତି ? ନେଲାବାଲାକୁ କିଣ ଆଖିରେ ଦେଖିଲି ଯେ ତାକୁ କହନ୍ତି । ଦେଖିଥିଲେ ତା ଗୋଡ଼ତଳେ ପଡ଼ିଥାନ୍ତି, କନ୍ଦାକଟା କରି କଷ୍ଟେ ପୁଅକୁ ଛାଡ଼ ନ ଥାନ୍ତି । କିଏ ତ ଆସି ନେଇଗଲା, ତା ସ୍ୱରୂପ ଦେଖା ନାହିଁ । କାହୁଁ ଅଇଲା, କିଏ ଅଇଲା, କେଉଁବାଟେ ଅଇଲା, କାହାକୁ ନେଇଗଲା । କାହିଁ ମ ହେଇଟି ତ ମୋ ଧନ ଯେମନ୍ତ ଥିଲା ସେମନ୍ତ ଶୋଇଛି । କିଛି ତ ମଳିନ ହୋଇନାହିଁ । କିଏ ତା ଭିତରେ ଥିଲା, କେଉଁଆଡ଼େ କିଏ ନେଇଗଲା,କେଉଁବାଟେ ଗଲା, କିଛି ତ ଜାଣି ପାରିଲି ନାହିଁ ।

ସ୍ୱାମୀ—ଯେବେ ଜନ୍ମପଟା ଉପରେ ଏଇ ଟିକକ କ୍ଷମତା ତୁମର ନାହିଁ, ତୁମେ ତାକୁ ମୋର ବୋଲି କାହିଁକି ଦାବୀ କରୁଛ ? ଦାବୀ କରି ପୁଣି କାନ୍ଦୁଛ ? ଏହା ମୂର୍ଖତା, ଅଜ୍ଞାନ ବ୍ୟକ୍ତିତ ଆଉ କିଣ ହୋଇପାରେ ?

ଏହି ମୂର୍ଖତା ବା ଅଜ୍ଞାନତାର ଦଣ୍ଡ ଭୋଗ କରୁଥାଇ ଶୋକ, ଦୁଃଖ, ମନସ୍ତାପ । ଯାହାପାଇଁ ଶୋକ କରୁଥାଇ ସେ ଭଲା ସେକଥା ଶୁଣୁଛି ? ବାପ ମା ଏତେ ମୋ ପାଇଁ ଶୋକ କରୁଛନ୍ତି ମୁଁ ଯାଏ ତାଙ୍କୁ ଟିକିଏ ଦେଖାଦେଇ, ଆସେ ଏକଥା ହେଉଛି ? କିଛି ତ ନାହିଁ, ଆମେ ମୋର ମୋର କହି କୋହ କରୁଛ ତୋର ଫଳ କିଣ ହେଉଛି କହିଲ ? ଏଣିକି ଯେତେ ଅଧିକ ଶୋକ କରିବ ସେତେ ନିଜ ଶରୀର ଜୀର୍ଣ୍ଣ ହେବ, ଶୀର୍ଣ୍ଣ ହେବ ଯିନା, ଆଉ ଅନ୍ୟ କିଛି ଲାଭ ନାହିଁ । ସେଥିପାଇଁ ଜଣେ କହିଛନ୍ତି "ଘର ବୋଲି ଅର୍ଜିଛ ଯେତେ ପଦାର୍ଥ ।

ଘଟ ଛୁଟିଲେ ତୋତେ ବୋଲବେ ଭୂତ ରେ ; ଘର ଘରଣୀ ଦେହ କଳାଉଥିବେ, ଯେଉଁ ବନ୍ଧୁ କୁଟୁମ୍ବ ଶୁଦ୍ଧ ହୋଇବେ ଯେ । ମନବୋଧ ଚଉତିଶା ପଢ଼, ମନବୋଧ ହୋଇଯିବ ।

ସ୍ତ୍ରୀ—ଆଚ୍ଛା ହଇହେ, ଯୂା ଭିତରେ କଏ ଥିଲା ମ ? ଏ ତ ଯେମନ୍ତ ସେମନ୍ତ ଶୋଇଛି, ଥିଲା କଏ ଗଲା କଏ ?

ସ୍ୱାମୀ—ଆହେ, ଏଇଟି ପଞ୍ଜୁରୀ, ଯୂା ଭିତରେ ଥିଲା ଶୁଆ । ଶୁଆ କେଉଁଠି ଉଡ଼ି ଆସୁ ଆସୁ ଆସି ପଞ୍ଜୁରୀରେ ପଶିଲା, ପୁଣି କେଉଁଠାକୁ ଚାଲିଗଲା, ପଞ୍ଜୁରୀ ଥୁଏଁ ପଞ୍ଜୁରୀ ପଡ଼ିରହିଛି । ଶୁଆ ଥିବାଯାକେ ପଞ୍ଜୁରୀ ଜିଇଥିଲା, ଶୁଆ ଉଡ଼ିଗଲାରୁ ପଞ୍ଜୁରୀ ମଲା । କାଲି ସକାଳକୁ ପଞ୍ଜୁରୀ ସଡ଼ି ମିଳାଇ ଯିବ, ପୋଡ଼ ପୋଡା ହେବ । ଯେ ଯୂା ଭିତରେ ଥିଲା ଗଲା, ସେ ତ ଆଜ ପଞ୍ଜୁରୀ ନୁହେଁ ।

ପଞ୍ଜୁରୀ ରହିଛି ପଡ଼ି, ପଞ୍ଜୁରୀରୁ ଶୁଆ ଗଲାଣି ଉଡ଼ି ।
ମିଛେ କାନ୍ଦା ହେଉ ମୁଣ୍ଡକୋଡ଼ି । ୧ ।
ପଞ୍ଜୁରୀ ନୁହଇ ଶୁଆ, ପଞ୍ଜୁରୀ ତ ଚଳେ ହୋଇଛି ଥୁଆ ।
ମିଛେ କାନ୍ଦା ହୁଅ କୁଆବୁଆ । ୨ ।
ଶୂନ୍ୟ ଆସି ଶୂନ୍ୟେ ଗଲା, ଶୁଆ ରୂପ କିଛି ଦେଖା ନ ଗଲା ।
ମଲା ମଲା ଲାଗି ଅଛି ପାଲା । ୩ ।
ପଞ୍ଜୁରୀ ଭିତରେ ପଶି, ଜନମା ଜଠରୁ ପଡ଼ିଲା ଖସି ।
ଦେଖି ସକଳେ ହୋଇଲେ ଖୁସି । ୪ ।
ପଞ୍ଜୁରୀ ଭିତରେ ଥାଇ, ଦେଖା ଦରଶନ ସେ ଦେଲା ନାହିଁ ।
ପଞ୍ଜୁରୀକି ଦେଖି ସବେ ବାଇ । ୫ ।
ପଞ୍ଜୁରୀକି ବୋଲି ମୋର, ସକଳେ ହୋଇଲେ ମୋହରେ ଭୋଳ ।
ପଡ଼ନରେ ଉଡ଼ି ଆଶାଡ଼ୋର । ୬ ।

ପଞ୍ଜୁରୀ ଫୋପାଡ଼ ଦେଇ, ଏକା ଏକା ଶୁଆ ଗଲା ପଳାଇ ।
ପଦେ କାହାକୁ କହିଲା ନାହିଁ । ୭ ।
ତା ବାଟରେ ଆସିଥିଲା, ତା ବାଟେ ପଳାଇଗଲା ।
ପଞ୍ଜୁରୀକି ଚାହିଁ ଶୋକ କଲା । ୮ ।
ମିଛେ ବୋଲୁ ମୋର ମୋର, କେହି ନୁହଇ କାହାର ।
ଶୋକ କରୁ ମିଛେ ଅପାର । ୯ ।

ସ୍ତ୍ରୀ—ଆଚ୍ଛା ହଇହେ, ପଞ୍ଜୁରୀଭିତରେ ପଶିକରି ତ ଅଇଲା ଗଲାବେଳେ ପଞ୍ଜୁରୀଟାକୁ ନ ନେଇ ଚାଲିଗଲା କିଆଁ ?

ସ୍ୱାମୀ—ସେ ପଞ୍ଜୁରୀଟା ଆଉ ତାର ଦରକାର ହେଲା ନାହିଁ । ଆଉ ଗୋଟିଏ ନୂଆ ପଞ୍ଜୁରୀରେ ପଶିବ । ଦୁନିଆରେ ତ ୮୪ ଲକ୍ଷ ପ୍ରକାର ପଞ୍ଜୁରୀ ଅଛି । ଯେତେବେଳେ ଯେଉଁ ପଞ୍ଜୁରୀ ଭିତରକୁ ପଶିବାର ପଶୁଛି । ସେ ପଞ୍ଜୁରୀରେ କେତେ ଦିନ ରହି ପୁଣି ତାକୁ ଛାଡ଼ି ଚାଲି ଯାଉଛି । ଏହିପରି ପଞ୍ଜୁରୀ ବଦଳା ଲାଗିଛି । ତେମେ କିପରି କେଉଁ ଲୁଗାଟା ବଦଳି କେଉଁ ଲୁଗାଟା ପିନ୍ଧୁଛ ! ସବୁବେଳେ କଣ ଗୋଟିଏ ଲୁଗା ପିନ୍ଧୁଛ ? ଠାକୁର ପୂଜା କଲାବେଳେ ମଠାଟାଏ ପିନ୍ଧୁଛ, ଦେଉଳକୁ ଗଲାବେଳେ ଭଲ ଚକଚକିଆ ଶାଢ଼ୀଟାଏ ପିନ୍ଧି ଯାଉଛ, କୌଣସି କୁଣିଆ ଘର ଗଲେ କି ବନ୍ଧୁବାନ୍ଧବ ଘରକୁ ଗଲେ ପ୍ରକାରେ ଲୁଗା ପିନ୍ଧୁଛ, ବାହା ନିମନ୍ତ୍ରଣରେ ପ୍ରକାରେ ଶାଢ଼ୀ ପିନ୍ଧୁଛ, ପୋଖରୀପାଣି ଗଲେ ଗାମୁଛା ଖଣ୍ଡେ ପିନ୍ଧୁଛ—ଏପରି ତ କରୁଛ, କାମ ଅନୁସାରେ ବସନ ପିନ୍ଧାପିନ୍ଧି କରୁଛ ତ ? ସେହିପରି ଏ ଜୀବ-ଶୁଆ କରୁଛି । କେତେବେଳେ କେଉଁ ମୁଖା ପିନ୍ଧି ବୁଲୁଛି । କର୍ମ ଭୋଗ କରିବା ପାଇଁ ଯେଉଁ ମୁଖା ଯେତେବେଳେ ଆବଶ୍ୟକ ତେତେବେଳେ ସେ ମୁଖା ପିନ୍ଧି ବୁଲୁଛି । ଜନ୍ମ ମରଣଟା ସେହିପରି

କେହି କାହାର ନୁହେଁ, ଯେ ଯାହାର କର୍ମ ପଥରେ ଚଳୁଛି । ଯେତେବେଳେ ଯେଉଁଠି ଅଳ୍ପ ଯାଉଛି ସେଠି କର୍ମଶେଷ ହେଲେ ପୁଣି ଆଉ ଠା’କୁ ଚାଲି ଯାଉଛି । ନାଟକ ହେଲାବେଳେ ରଙ୍ଗମଞ୍ଚରେ କଣ ଦେଖିଛ ? ଜଣେ ଲୋକ କେତେବେଳେ ରଜା ପୋଷାକ ପିନ୍ଧି ରଜା ହେଉଛି, କେତେବେଳେ ହନୁମାନ ପୋଷକ ପିନ୍ଧି ହନୁମାନ ସାଜୁଛି, କେତେବେଳେ ରାଣୀ ପୋଷାକ ପିନ୍ଧି ରାଣୀ ହେଉଛି, କେତେବେଳେ ଦାସୀ ପୋଷାକ ପିନ୍ଧି ଦାସୀ ହେଉଛି, କେତେବେଳେ ସୈନ୍ୟ ହେଉଛି, କେତେବେଳେ ସେନାପତି ହେଉଛି, ଜଣେ ଲୋକ ନାନା ପ୍ରକାର ବେଶ ସାଜୁଛି । ସେହିପରି ଏ ଶରୀରଟା ଗୋଟାଏ ପୋଷାକ । ଯେତେ ପ୍ରକାର ଶରୀର ଦେଖୁଛ, କୁକୁର, ବିଲେଇ, ମଣିଷ, ବାଘ, ଗଛ ଇତ୍ୟାଦି ଗୋଟିଏ ଗୋଟିଏ ପୋଷାକ । ଜୀବାତ୍ମା ଏତେପ୍ରକାର ପୋଷାକ ପିନ୍ଧି ଏ ସଂସାର ରଙ୍ଗମଞ୍ଚରେ ଅଭିନୟ କରୁଛି । ତା ଅଭିନୟ ସରିଗଲାରୁ ସେ ପରଦା ପଛକୁ ଚାଲିଯାଇ ପୁଣି ଆଉ ଗୋଟାଏ ପୋଷାକ ପିନ୍ଧି ପୁଣି ଆସୁଛି ।

ସ୍ତ୍ରୀ—ପୋଷାକ·ପିନ୍ଧିବା କଥାଟା ତ ବୁଝି ପାରିଲି ନାହିଁ ? ଯେ ଗଲା ତା’ର କଣ ଏ ଶରୀରଟା ଅଲଗା ?

ସ୍ୱାମୀ—ଆଚ୍ଛା ଦେଖି ଦେଖି, ଶରୀରଟା ତ ଯେମିତି ଥିଲା ସେମିତି ପଡ଼ି ରହିଛି । କିଛି ତ ଖୁଣ ହୋଇ ନାହିଁ ! ଏଇ ଶରୀର ତ ଚାଲୁଥିଲା ବୁଲୁଥିଲା ଖାଉଥିଲା କଥା କହୁଥିଲା ତେବେ ଏ କାମସବୁ କରୁ ନାହିଁ କାହିଁକି ! କେହି ତ ଭିତରେ ଥିବାରୁ ଏଇଶରୀର ଜୀଅନ୍ତା ହୋଇ ଏ ସବୁ କାମ କରୁଥିଲା । ଏବେ କିଏ ଭିତରୁ ବାହାରି ଗିବାରୁ ଏ ଶରୀରଟା ମଡ଼ାହୋଇ ପଡ଼ିଲା ? ଯେତେବେଳେ ବଞ୍ଚିଥିଲା କିଏ ତା ଭିତରେ ଥାଇ କହୁଥିଲା ଏ ମୋ ଦେହ, ମୋ ହାତ,

ମୋ ଗୋଡ଼, ମୋ ନାକ, ମୋ ଆଖି, ମୋ କାନ ଇତ୍ୟାଦି ! ତେବେ କହୁଛ ଏ ଘର ମୋର । ତେବେ ତ ଆଉ ଘର ନୁହଁ । ତେବେ ଅଲଗା, ଘର ଅଲଗା । ସେହିପରି ଯେ ଶରୀରରେ ଥାଇ କହୁଥିଲା ଏ ଶରୀର ମୋର ସେ ତ ଶରୀର ନୁହେଁ । ଶରୀର ଅଲଗା, ସେ ଅଲଗା । ସେହି କାରଣରୁ ଶରୀର ଅଲଗା ପଡ଼ି ରହିଲା, ସେ ଚାଲିଗଲା ।

ସ୍ତ୍ରୀ—ହଁ ଏପରି ବୁଝିଲେ ଅଲଗା ବୋଲି ଜଣା ପଡ଼ୁଛି । କିନ୍ତୁ ଆମେ ତ କିଛି ଜାଣି ପାରୁ ନ ଥାଇଁ ।

ସ୍ୱାମୀ—ଏ ବ୍ରହ୍ମଜ୍ଞାନର ପାଠ । ଯିଏ ମନ ଲଗାଇ ବୁଝିଲେ ବୁଝିବ ସିନା । ନ ବୁଝିବାଯାଏ ମୋହମୟ ମାୟାରେ ପଡ଼ି ଘାଣ୍ଟି ହେଉଥିବ । ଦେଖୁଛ ତ ମଣିଷ କେତେ ପରିଶ୍ରମରେ କେତେ ଧନ ଅର୍ଜୁଛି, କେତେ ଗାଡ଼ି-ଘୋଡ଼ା କୋଠାବାଡ଼ି କରି ଭୋଗ ବିଳାସରେ କେତେ ଦିନ ଗଡ଼ୁଛି, କିନ୍ତୁ ଯେତେବେଳେ ଆଖି ବୁଜି ଦେଉଛି ଚତୁର୍ଦ୍ଦିଗ ଅନ୍ଧକାର । ଯେ ଯେଉଁଠି ସବୁ ପଛରେ ରହିଲା, କଉଡ଼ିଏ କଉଡ଼ି ସାଥିରେ ଗଲା ନାହିଁ କି କେହି ଦେଲା ନାହିଁ । ହାତରେ ସୁନା ମୁଦିଟାଏ ଥିଲା ତାକୁ କାଢ଼ି ରଖିଲେ । ଶୂନ୍ୟରୁ ଆସି ଶୂନ୍ୟକୁ ଗଲା, ଘରଦୁଆର ତ କିଛି ନ ଗଲା-ଏକଥା ନିତି ଦେଖୁଥାଇ । ତେବେ ଏଇଲାଗେ ବାଡ଼ିଘରୁ ଶାଗ ପତରଟାଏ କିଏ ନେଇଗଲେ ହିଁ ସହୁ ନାହିଁ, ତା ସଙ୍ଗେ ମାଡ଼, ଫଉଦାରି, ମାଲି ମାମଲା କରି ତାକୁ କଇଦୀ ଖାନାକୁ ନେବାଯାଏ ଲାଗୁଥାଇଁ । ଏହାକୁ କହନ୍ତି ମାୟା ମମତା । ଯେତେ ଯୋଗୀ ଋଷି ହେଲେ ମଧ୍ୟ ଏ ମମତା ଡୋରି ଛିଣ୍ଡାଇ ପାରୁ ନାହାନ୍ତି । ଭାଗବତ ପରି କହୁଛି :—

"ବିଷ୍ଣୁ ମାୟାକୁ ସତ୍ୟ ବୁଝି
ପ୍ରାଣୀ ଅଛନ୍ତି ଏଥି ମଜ୍ଜି ।"

ଏ ମମତା ହେତୁ ପୃଥିବୀରେ ଘୋର ସମର ଲାଗିଛି, ହାଣକାଟ ମାର ମଧ୍ୟ ଲାଗିଛି । ମଣିଷ କେତେଟା ଦିନ ବଞ୍ଚୁଛି ତଥାପି ମୋର ମୋର ବୋଲି ଆକାଶ ପାତାଳ ଜଳ ସ୍ଥଳ କମ୍ପାଇ ଦେଉଛି । କେତେ ବୁଦ୍ଧି ଖର୍ଚ୍ଚ କରି କେତେ ପ୍ରକାର ସୁଖ ଭୋଗ କରିବା ପାଇଁ ରାତି ଦିନ ଲାଗିଛି । ପ୍ରତ୍ୟେକ ପ୍ରାଣୀ କେବଳ ସୁଖ ଲୋଡ଼ୁଛି, ଦୁଃଖ ଲୋଡ଼ୁ ନାହିଁ । ପେଟ ଖଣ୍ଡକ ପାଇଁ ନାନା ବେଶ ଧରୁଛି, ତଥାପି ଆଶା ମେଣ୍ଟୁ ନାହିଁ । ସାଂସାରିକ ସୁଖ ବୋଲି ଯାହାକୁ ମଣୁଛି ସେତ ଦି ଦିନର ସୁଖ, ସେଥିରେ ତୃପ୍ତ ନାହିଁ । କିଏ କହୁଛି ଖାଅ ପିଅ ମଉଜ କର, ଜୀବନର ଏହା ପ୍ରଧାନ ଲକ୍ଷ୍ୟ । କିଏ କହୁଛି ଏଗୁଡ଼ାକ ପରମସୁଖ ନୁହେଁ, ଏଥିରେ ଶାନ୍ତି ମିଳୁନାହିଁ, ଏଗୁଡ଼ାକ ପଶୁବୃତ୍ତି । ପଶୁପକ୍ଷୀ ତ ଖାଉଛନ୍ତି, ପିଉଛନ୍ତି, ଶୋଉଛନ୍ତି, ଭୟ କରୁଛନ୍ତି, ସନ୍ତାନ ଜନ୍ମ କରୁଛନ୍ତି, ମଣିଷ ଅଧିକ କଣ କଲା ଯେ ଗର୍ବ କରିବ ? ଭାଗବତ କହୁଛି :—"ମାନବ ଜନ୍ମରଏ ଲାଭ, ଯେବେ ଗୋବିନ୍ଦେ କରେ ଭାବ ।" ଦିବ୍ୟ ମାନବ ଜନ୍ମ ପାଇ ମଣିଷ ଯେବେ ଜଗତ୍‌ପିତା, ସୃଷ୍ଟିକର୍ତ୍ତା, ପରମେଶ୍ୱରଙ୍କୁ ଚିହ୍ନି ନ ପାରିଲା ତେବେ ପଶୁପକ୍ଷୀ ମଣିଷ ଭିତରେ ପ୍ରଭେଦ କଣ ? ଗୋବିନ୍ଦଙ୍କୁ ଚିହ୍ନି ତାଙ୍କ ପାଦପଦ୍ମରେ ମନ ରଖି ତାଙ୍କ ସୃଷ୍ଟି ରକ୍ଷା କରିବାପାଇଁ ଅନାସକ୍ତ ଭାବରେ ସବୁ କର୍ମ କରିଯାଅ । ତେବେ ଏ ସଂସାର ବନ୍ଧନ, ମାୟା ବନ୍ଧନ, ମମତା ଡୋର ଛିଣ୍ଡିବ । କେତେ ମୁନିଙ୍କର କେତେ ମତ । ଏ ବନ୍ଧନ ଅତି ଜଟିଳ, ଅତି କୁଟିଳ, ଅତି ପଙ୍କିଳ । ମଣିଷ ଏଥିରେ ଥରେ ବାନ୍ଧି ହେଲେ ଆଉ ମୁକ୍ତ ହେବା ସହଜ ନୁହେ । ଦେବତାମାନେ ତ ଛିଣ୍ଡାଇ ପାରୁନାହାନ୍ତି । ଯାବତ୍ କାୟା ତାବତ୍ ମାୟା ।

ସ୍ତ୍ରୀ—କାୟାରୁ ମାୟା ହୁଏ କପରି ?

ସ୍ୱାମୀ—କାୟା ବା ଶରୀର ଖୋଳରେ ପଶିଲେ ମାୟା ପ୍ରଭିଚକ୍ଷୁ ପିନ୍ଧେ । ଦେଖିଥିବ ତ ହଳଦିଆ ରଙ୍ଗର କାଚ ଥାଇ ପ୍ରଭିଚକ୍ଷୁ ଲଗାଇଲେ ଯେଉଁ ଆଡ଼କୁ ଚାହିଁ, ସବୁ ହଳଦିଆ ବର୍ଣ୍ଣ ଦେଖାଯାଏ । ସେହିପରି ଏ କାୟା ଯନ୍ତ୍ରରେ ମାୟା ପ୍ରଭିଚକ୍ଷୁ ଖଞ୍ଜା ଯାଇଛି । ସେ ଖୋଳରେ ପଶି ଗଲାରୁ ମାୟା ମୋହମା ଲଗାଇ ଦିଏ । ମମତାବର୍ଣ୍ଣ ସବୁଠି ଦେଖାଯାଏ, ସବୁ ମୋର ମୋର କହେ । ଖାଲି କଣ ଭୁଣ୍ଡରେ କହେ—ସେଥିରେ ତନ୍ମୟ ହୁଏ । ମନେ କରେ ଏଇଟା ସତ୍ୟ । ଅସଲ ମୂଳକଥାର ଆଲୋଚନା ଭୁଲିଯାଏ । ଆପଣାକୁ ଆପେ ଚିହ୍ନିପାରେ ନାହିଁ । ମୁଁ ମୋହର ନେଇ ବିଷୟା-ବିଷ ଖାଇ ଉନ୍ମତ୍ତ ହୋଇପଡ଼େ । ଦେବତାମାନେ ମଧ୍ୟ ଏହି ଦଶା ଭୋଗ କରନ୍ତି ।

ସ୍ତ୍ରୀ—ଦେବତାମାନେ ଏପରି ଭୋଗ କରୁ ନ ଥିବେ । ସେମାନେ ତ ସ୍ୱର୍ଗରେ ଥାନ୍ତି, ସେମାନେ କାହିଁକି ଏପରି ଭୋଗ କରିବେ ?

ସ୍ୱାମୀ—ଆହେ, ଦେବତାମାନେ କଣ ଚିରକାଳ ସ୍ୱର୍ଗରେ ଥାଆନ୍ତି କି ? ପୁଣ୍ୟ ଶେଷ ହେଲେ ପୁଣି ମର୍ତ୍ତ୍ୟକୁ ଆସନ୍ତି । ଶୁଣିବ, ଥରେ ଇନ୍ଦ୍ରଙ୍କୁ ଅଭିଶାପ ମିଳିଲା, ସେ ମର୍ତ୍ତ୍ୟରେ ୧୨ ବର୍ଷ ଘୁଷୁରି ଜନ୍ମ ହେବେ । ଇନ୍ଦ୍ର ଘୁଷୁରି ପେଟରେ ଜନ୍ମ ହେଲେ । ସେ ଘୁଷୁରି ଖୋଳରେ ପଶି ପେଟକୁ ବାହାରିଲେ । ଘୁଷୁରି ମେଳରେ ବଢ଼ିଲେ । ଚାହୁଁ ଚାହୁଁ ୧୨ବର୍ଷ ପୂରିଲା, ତାଙ୍କର ଆଉ ପୂର୍ବଜନ୍ମ କଥା ମନେ ପଡ଼ିଲା ନାହିଁ । ଘୁଷୁରି ହୋଇ ପଙ୍କରେ ଲଟପଟ ହୋଇ,

ଝିଷ୍ଟା ଭୋଜନ କରି ପରମ ପ୍ରୀତି ଲାଭ କଲେ । ଦେବତାମାନେ ଶୁଣିଲେ କଣ ହେଲା ଇନ୍ଦ୍ର ତ ଫେରିଲେ ନାହିଁ, ଯାଅ, ତାଙ୍କ ମନେ ପକାଇ ଦେବ, ତାଙ୍କ ଅଭିଶାପ କାଳ ଶେଷ ହେଲା, ସେ ଆସନ୍ତୁ । କେତେ ଜଣ ଦେବତା ଆସି ତାଙ୍କୁ ଚେତାଇ ଦେଲେ; ତଥାପି ମନେ ପଡ଼ିଲା ନାହିଁ, ବରଂ ସେ କହିଲା ତାଙ୍କୁ କାମୁଡ଼ି ଗୋଡ଼ାଇଲେ, ଓଲଟି କହିଲେ ମୁଁ ଇନ୍ଦ୍ର ଫିନ୍ଦ୍ର ଜାଣେ ନାହିଁ । ମୁଁ ଏଠାରେ ମହା ମଉଜରେ ଅଛି, ଦେଖ ମୋର ଘୁଷୁରୁଣୀ ପିଲା ଝିଲା, ଏମାନଙ୍କୁ ଛାଡ଼ି ମୁଁ କୁଆଡେ ଯିବି ? ତେମେ କଣ ମୋ ଘୁଷୁରୁଣୀଟିକି ନେବାପାଇଁ ମତେ ଏତେ କଥା କହୁଛ କି ? ଯାଅ ମୋ ପାଖରୁ ନଚେତ୍ ଏ ଦାନ୍ତରେ ତମକୁ ଭୁଷି ମାରିଦେବି । ଜଣ ଜଣ ହୋଇ କେତେ ଦେବତା ଆସି ନଗ୍ନ ବାଣୀ ଶୁଣି ଫେରିଗଲେ । ଶେଷକୁ ସବୁ ଦେବତାମାନେ ମହାଦେବଙ୍କୁ ପଠାଇଲେ । ମହାଦେବ ଆସି ପ୍ରଥମେ ଯେତେ ବୁଝାଇଲେ ନ ହେଲା, ମୋହ ଭାଙ୍ଗିଲା ନାହିଁ । କାୟାରୁ ମାୟା ତୁଟିଲା ନାହିଁ ବରଂ ବୃଦ୍ଧି ହେଲା । ମହାଦେବ ଅବାକ୍ ହୋଇ ଚନ୍ତା କଲାପରେ ତ୍ରିଶୂଳ ଧରି ଗୋଟିଏ ଛୁଆକୁ ମାରିଦେଲେ । ଘୁଷୁରିର କ୍ରୋଧ ଦ୍ୱିଗୁଣ ବଢ଼ିଲା । ସେ କ୍ରୋଧରେ ମହାଦେବଙ୍କୁ ମାରି ଦେବାକୁ ଉଠିଲେ । ତଳେ ପଡ଼ି ଗଡ଼ି କାନ୍ଦ କାଟି ଅସ୍ଥିର ହେଲେ, ତଥାପି ମୋହ ତୁଟିଲା ନାହିଁ । ଏପରି ଗୋଟି ଗୋଟି କରି ସବୁ ଛୁଆଙ୍କୁ ମାରିଲେ, ତଥପି ମୋହ ଭାଙ୍ଗିଲା ନାହିଁ । ପରେ ଘୁଷୁରୁଣୀକି ମାରିଦେଲେ, ତଥପି ମୋହ ଭାଙ୍ଗିଲା ନାହିଁ । ଶେଷରେ ମହାଦେବ ତ୍ରିଶୂଳ ମାରି ଘୁଷୁରିକି ମାରିଦେଲେ, କାୟା ତୁଟିଲା, ମାୟା ମଧ୍ୟ ତୁଟିଲା । ଇନ୍ଦ୍ର କାୟା ଛାଡ଼ି ଦେଖିଲେ, ମହାଦେବ ଆଶ୍ଚର୍ଯ୍ୟ ହେଲେ,କହିଲେ ଓହୋ ଏ କାୟା ଭିତରେ କି ମାୟା ଅଛି

ମୁଁ ତ କିଛି ବୁଝି ପାରିଲି ନାହିଁ । ମୁଁ ଯେ ଇନ୍ଦ୍ର ଥିଲି ଏ କଥା ମୋର ଆଦୌ ସ୍ମରଣ ହେଉନି ନାହିଁ ! ମୋତେ ତ ଘୁଷୁରି ଜୀବନ ଭରି ସୁଖ ଲାଗୁଥିଲା । ମହାଦେବ ଇନ୍ଦ୍ର ପୁଣି ସ୍ୱର୍ଗକୁ ଗଲେ । ଆମେ ଘୁଷୁରିକି ଦେଖିଲେ ବିଷ୍ଠା ଖାଉଛି ବୋଲି ଘୃଣା କରୁଥାଉଁ, କିନ୍ତୁ ଘୁଷୁରିର ସେଥିରେ ମହାଆନନ୍ଦ, ମହାସୁଖ, ନ ହେଲେ ସେ ବିଷ୍ଠା ଖାଇ ପାରନ୍ତା ନାହିଁ । ପ୍ରାଣୀ ଯେତେବେଳେ ଯେଉଁ କାୟା ଖୋଳରେ ପଶେ, ସେ ପୂର୍ବଜନ୍ମ କଥା ପାସୋରି ପକାଏ । ସେହି ଜନ୍ମରେ ସେ ସୁଖ ମନେ କରେ । ଏ ମୋହିନୀ ମାୟା । ଏ ସମସ୍ତଙ୍କୁ ମୁଗ୍ଧ କରି ରଖିଛି । କର୍ମ ଭୋଗ କ୍ଷୟ ନ ହେବା ପର୍ଯ୍ୟନ୍ତ ଜନ୍ମ ମରଣ ଯନ୍ତ୍ରଣା ଭୋଗ କରୁଛି, କରୁଥିବ ।

ସ୍ତ୍ରୀ—ତେବେ ଏ ମାୟାରୁ କିପରି ମୁକ୍ତ ହେବ ?

ସ୍ୱାମୀ—ଗୀତାରେ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି ଯେ ମୋଠାରେ ଯେଉଁମାନେ ପ୍ରସନ୍ନ ହୁଅନ୍ତି ଅର୍ଥାତ୍ ଆତ୍ମସମର୍ପଣ କରନ୍ତି ସେମାନଙ୍କର ମାୟାବନ୍ଧନ ତୁଟିଯାଏ ! କାୟ ମନ ବଚନରେ ଯେ ଈଶ୍ୱର ବ୍ୟତୀତ ଅନ୍ୟ କାହାକୁ ଜାଣେ ନାହିଁ, ଅନ୍ୟର ଶରଣ ନଏ ନାହିଁ, ଈଶ୍ୱରଙ୍କ ସୃଷ୍ଟି ରକ୍ଷା ପାଇଁ ସକଳ କାର୍ଯ୍ୟ କରେ, ମୁଁ ମୋର ଭାବ ଛାଡ଼େ, ସେ କେବଳ ଏ ମାୟା ବନ୍ଧନକୁ କାଟେ ।

ସ୍ତ୍ରୀ—ତେବେ କଣ ସବୁବେଳେ ଈଶ୍ୱରଙ୍କୁ ଧ୍ୟାନ କରି ବସିବ, ଆଉ କିଛି କାମ ଦାମ କରିବ ନାହିଁ ?

ସ୍ୱାମୀ—ନା ହେ, ଭଗବାନ, ନିଷ୍କର୍ମା ହୋଇ ବସିବାକୁ କହୁ-ନାହାନ୍ତି । ସେ କହୁଛନ୍ତି, ମୋତେ ସ୍ମରଣ କରି ମୋ ପାଇଁ ସବୁ କାମ କର । ମୋ ପାଇଁ କଲେ ଦୋଷ, ତା ପାଇଁ କଲେ କିଛି ଦୋଷ ନାହିଁ । ମୋ ପାଇଁ କଲେ ପାପ, ତା ପାଇଁ କଲେ କିଛି

ପାପ ନାହିଁ । ମୁଁ ଯେବେ ପାଣ୍ଡବ ଏ ଲୋକଗୁଡାଙ୍କୁ ହାଣିକୁଟି ମାରି ସେମାନଙ୍କ ରାଜ୍ୟ ନେଇ ରଜା ହେବି । ତେବେ ନରହତ୍ୟା ଦୋଷରେ ମୁଁ ପାପଭୋଗ କରିବି, ନରକଗାମୀ ହେବି । ମୁଁ ଯେବେ ପାଣ୍ଡବ ଯେ ଏ ଲୋକେ ଅନ୍ୟାୟ ଅତ୍ୟାଚାର କରୁଛନ୍ତି, ଏମାନେ ଦୁଷ୍ଟ, ଏମାନେ ଈଶ୍ୱର ସୃଷ୍ଟିର ନିୟମ ଭାଙ୍ଗୁଛନ୍ତି, ଏମାନଙ୍କୁ ଭଗବାନଙ୍କ ସୃଷ୍ଟି ନିୟମ ରକ୍ଷା ପାଇଁ ମାରିବା ଆବଶ୍ୟକ, ଏ ପ୍ରେରଣା ଭଗବାନ ଦେଉଛନ୍ତି । ହେ ଭଗବାନ୍ ! ତବ ଇଚ୍ଛା ପୂରଣ ପାଇଁ ମୁଁ ଏମାନଙ୍କୁ ହତ୍ୟା କରୁଛି, ତେବେ ସେଥିରେ ମୋର କିଛି ପାପ ନାହିଁ । ଏ କଥା ତୁଣ୍ଡରେ କହିଲେ କେବଳ ହେବ ନାହିଁ । ଏପରି ଭାବରେ ତନ୍ମୟ ହେବା ଆବଶ୍ୟକ । ମନ, ବଚନ, ବାହାର, ଭିତର ଏକ ହେବା ଆବଶ୍ୟକ । ହୃଦୟରୁ ଅହଂକାର ପୂର୍ଣ୍ଣ ମାତ୍ରାରେ ଧ୍ୱଂସ ହେଲେ ଏ ଭାବ ହେବ । ମନକୁ ଆୟତ୍ତ କଲେ ହେବ ।

ଦୁର୍ଗମ ପଥ ଏ ଭଜନ, ଭୟେ ଭଜନ୍ତି ଯୋଗୀ ଜନ ।

ଶ୍ରୀମତୀ ପରା ଦୂତୀକି କହିଥିଲେ—ହେ ଦୂତୀ ! ମତେ ତୁ ଗୋବିନ୍ଦ ପ୍ରୀତି କଥା କହ ନାହିଁ । ମୁଁ ପାରିବି ନାହିଁ । ମୁଁ ଏଥିକି ପାତ୍ର ନୁହେଁ ।

ବଡ଼ କଠିନ ଏ ପ୍ରୀତି ପାଳିବା, ତୀକ୍ଷଣ ଅସି ଧାରେ ପଥ ଚାଲିବା ।
ଶୂନ୍ୟ ଆରୋହଣଠାରୁ କଠିନ, ପବନ ଫାନ୍ଦେ ଧରିବା ଲକ୍ଷଣ ॥
ପ୍ରୀତି ରକ୍ଷାଠାରେ, ଯଥା ପାରଦ ରଖିବା ମୁଠାରେ ।
ଲାଖ ଘୋଡ଼ା ନଦଗାଳ ସୁଆର, ପ୍ରଚଣ୍ଡାନଳେ ପଥ ଚାଲିବାର ।
ତହିଁ ନ କରି ରହିବ ଶରୀର, ତହୁଁ ଅଧିକ ପ୍ରୀତି ପାଳିବାର ।
କହୁଛି ଏତିକି, ଦୁହୁଁ ଜାହାର ସେ ପ୍ରୀତି ସାତକି ।

ସ୍ତ୍ରୀ—ପ୍ରୀତି କଣ କିଛି ବୁଝି ପାରିଲି ନାହିଁ । ପ୍ରୀତିରେ କଠିନ କଣ ଅଛି ?

ସ୍ୱାମୀ—ପ୍ରୀତି ଅର୍ଥ ସନ୍ତୋଷ । ଭଗବାନଙ୍କ ସନ୍ତୋଷ ପାଇଁ ଯେଉଁ କାର୍ଯ୍ୟ କରାଯାଏ । ଶ୍ରଦ୍ଧାରେ, ଭକ୍ତିରେ ଭଗବାନଙ୍କ ସନ୍ତୋଷ ପାଇଁ ଯାହା କରାଯାଏ, ତାହା ପ୍ରୀତି ବା ପ୍ରେମପୂର୍ବକ କରାଯାଏ । ନିଜର ସନ୍ତୋଷ ପାଇଁ ଯାହା କରାଯାଏ ତାହା କାମ । କୌଣସି ହେତୁ ବା କାରଣ ନ ଥାଇ କେବଳ ଭଗବାନଙ୍କ ସନ୍ତୋଷ ପାଇଁ ଯାହା କରାଯାଏ ତାହା ପ୍ରକୃତ ପ୍ରୀତି । ଶ୍ରୀମତୀ କହିଲେ—ହେ ଦୂତି ! ତୁ ଶ୍ରୀକୃଷ୍ଣଙ୍କଠାରେ ପ୍ରୀତି କଥା ଯାହା କହୁଛୁ ସେ କଥା ମୁଁ କରି ପାରିବି ନାହିଁ । ସେ ପରୀକ୍ଷାରେ ମୁଁ ପାରିବି ନାହିଁ । ସେ ତ ବଡ଼ କଠିନ କଥା ! କଠିନ ବୋଲି କଣ ଏମନ୍ତ ସେମନ୍ତ କଠିନ । ଧାରୁଆ ଖଣ୍ଡା ଉପରେ ବାଟ ଚାଲିବା, ଶୂନ୍ୟକୁ ବିନାଶ୍ରୟରେ ଉଠିବା, ପବନକୁ ଫାନ୍ଦରେ ଧରିବା, ପାରଦକୁ ମୁଠାରେ ରଖିବା, ଏସବୁଠାରୁ ସେ ତ ଆହୁରି କଠିନ । ଲାଖରେ ଗୋଟାଏ ଘୋଡ଼ା ତିଆରି କରିବା, ଲହୁଣୀରେ ଗୋଟିଏ ସୁଆର ତିଆରି କରି ଘୋଡ଼ା ଉପରେ ବସାଇବା, ଏ ଘୋଡ଼ାକୁ ନେଇ ପ୍ରଚଣ୍ଡ ଅନଳରେ ଚଳାଇବା, ଏଥିରେ ଲାଖ ଲହୁଣୀ ତ ନିଆଁ ଦେଖିବା ମାତ୍ରେ ତରଳିଯିବ ; ଘୋଡ଼ା ସୁଆର ଏ ରହିବ କପରି ? ଏ ଯେତେ କଠିନ, ପ୍ରୀତି ପାଳିବା ତାଠାରୁ ଆହୁରି ଅଧିକ କଠିନ । ମୋ ହାତେ ସେ କଥା ହୋଇ ପାରିବ ନାହିଁ । ମୋର ସେଥିକି ଦୂରରୁ ଜୁହାର ଜୁହାର ! ଯେ ଶ୍ରୀକୃଷ୍ଣଙ୍କ ଠାରେ ପ୍ରୀତି କରିବ ସେ ଏସବୁ କଠିନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ଆବଶ୍ୟକ । ଟିକିଏ ଏପାଖ ସେପାଖ ହେଲେ ଚଳିବ ନାହିଁ । ଟିକିଏ ଧାନେ ଟଳିଗଲେ ଗଲା ! ଅନ୍ୟ କିଛି ଆଶା ଭରସା ମନ

ଧ୍ୟାନରେ ନ ଥିବ । ଚିକିଏ ମନ ମଧ୍ୟରେ ଯେବେ ଅହଙ୍କାର ରହିଗଲା ତେବେ ବାରବର୍ଷର ତପ ଶୁଖୁଆ ପୋଡ଼ାରେ ଯିବ ।

ସ୍ତ୍ରୀ—ମନମଧ୍ୟରେ କଣ କଳୁଷ ରହିବ ନା ? ଶ୍ରୀମତୀ ତ ସବୁ-ବେଳେ କୃଷ୍ଣ କୃଷ୍ଣ ହେଉଥାନ୍ତି, କୃଷ୍ଣବିନୁ ସେ ତ କିଛି ଜାଣନ୍ତି ନାହିଁ ଶ୍ରୀକୃଷ୍ଣଙ୍କର କିପରି ସନ୍ତୋଷ ହେବ ସେଥିପାଇଁ ତ ସେ ସବୁବେଳେ ବ୍ୟସ୍ତ । ଶୟନେ ସ୍ୱପନେ ଜାଗରଣେ ସର୍ବଦା କୃଷ୍ଣ କୃଷ୍ଣ ହେଉଥାନ୍ତି ।

ସ୍ୱାମୀ—ହଁ, ସେ କଥା ସତ । ସେଥିପାଇଁ ତ ଶ୍ରୀମତୀ ଭକ୍ତଜନ-ମାନଙ୍କ ମଧ୍ୟରେ ଶ୍ରେଷ୍ଠ ହୋଇଥିଲେ ! ତଥାପି ତାଙ୍କ ମନରେ ସର୍ବଦା ଅବୋଧ ଯେ ତାଙ୍କ ପ୍ରୀତି ପୂର୍ଣମାତ୍ରା ନୁହେଁ । ଠିକ୍ ଭାବେ ପ୍ରୀତି ପାଳି ପାରିଲି ନାହିଁ—ଏହି ଚିନ୍ତା ସବୁବେଳେ ତାଙ୍କୁ ବ୍ୟସ୍ତ କରଉଥାଏ । ଶୁଣିଥିବ ତ ଦ୍ରୌପଦୀ ଦୁଃଶାସନ କଥା ? ଦୁଃଶାସନ ଦ୍ରୌପଦୀଙ୍କୁ ଯେତେବେଳେ ବିବସନ କଲେ ସେ ଆର୍ତ୍ତନାଦରେ ଶ୍ରୀକୃଷ୍ଣଙ୍କୁ ଡାକ ପକାଇଲେ । ଡାକୁଥାନ୍ତି ସତ; କିନ୍ତୁ ବାମ ହସ୍ତରେ ଗୁଣ୍ଡି ଉପରେ ଅଞ୍ଚଳକୁ ଭିଡ଼ି ଧରିଥାନ୍ତି । ଏଇଥିପାଇଁ ତାଙ୍କ ଡାକ ଶୁଣାଗଲା ନାହିଁ, କାରଣ ଅଞ୍ଚଳକୁ ଆଶ୍ରୟକରି ଧରିଥିଲେ । କିନ୍ତୁ ଯେତେବେଳେ ଦୁଇହାତ ଉପରକୁ ଟେକି ଅଞ୍ଚଳ ଛାଡ଼ିଦେଇ ଭଗବାନ ରକ୍ଷା କର ବୋଲି ଡାକ ପକାଇଲେ, ଭଗବାନ ଅସ୍ଥିର ହୋଇ ଦଉଡ଼ିଲେ, କୋଟିବସ୍ତ୍ର ଯୋଗାଇ ଦେଲେ । ଏ ବିଷମପରୀକ୍ଷା ସବୁ ଆଶା ଭରସା ଛାଡ଼ି ଯେ ତାଙ୍କୁ ଏକମାତ୍ର ଆଶ୍ରା କରିବ ସେ ତା ଡାକ ଶୁଣନ୍ତି । ଆମର ସେପରି ବିଶ୍ୱାସ ନାହିଁ, ସେପରି ଦୃଢ଼ ଭକ୍ତି ନାହିଁ । ଆମ ମନ ତ ବାର ବୁଦାରେ ପଶୁଛି, ମୁଁ ଯାହା କଲେ ଯାହା ହେବ, ତା କଲେ ତା ହେବ ଏପରି ହେଉଥାଇଁ । ଆମର ତ ଭଗବାନ ଅଛନ୍ତି ବୋଲି ବିଶ୍ୱାସ ନାହିଁ, ଆମ କଥା ସେ ଶୁଣିବେ

କଅଁ ? ଆମ ମନରେ ବାର ଗର୍ବ, ବାର ଅହଙ୍କାର, ବାର ଦମ୍ଭ । ଆମେ ତ ଧର୍ମକୁ ସବୁ ମନେ କରୁଥାଉଁ । ଆମ କର୍ମ ଆମେ ଭୋଗୁ ଥାଉଁ । "କର୍ମକ୍ଷଣ ଦେହ ସହେ, ଅରଣ୍ୟେ ଅଜଗର ଗ୍ରାସେ ।" ସୁତରାଂ ସତ୍ତ୍ୱବା ଏ ସଂସାରରେ ପ୍ରଧାନ ଧର୍ମ ।

ସ୍ତ୍ରୀ—କେତେ ସତ୍ତ୍ୱକ ମ ? ମଣିଷର ଧୈର୍ଯ୍ୟ କେତେ ? ଯେତେ ବୁଝାଇଲେ ମନ କଣ ବୁଝୁଛି ? ମନ ତ ବଡ଼ ଦୁର୍ବଳ, ଟିକକେ ଟଳି ଯାଉଛି !

ସ୍ୱାମୀ—ସେ କଥା ସତ । ଗୋଟାଏ ବଳୁଆ ଖୁମ୍ବକୁ ଆଶ୍ରାକଲେ ମନ ବଳୁଆ ହେବ । ପୃଥିବୀରେ ଭଗବାନଙ୍କଠୁଁ ବଳି ଆଉ ବଳୁଆ ଖୁମ୍ବ କଏ ଅଛି ?

ମହାବାହୁ ହେ ମୋର ଜଗାକାଳିଆ,
ତବ ଭୁଜବଳେ ମୁଁ ବଳିଆ । ଧ୍ରୁବ ॥

ଆସ ପ୍ରଭୁ ଆସ, ନ କର ନିରାଶ, ମଙ୍ଗଳ ବିଧାନ ବନମାଳିଆ ।
ତବ ବିନୁ ଆନ, ନାହିଁ ସାହା ଜାଣ, ତୁମ୍ଭେ ଏ ସଂସାର ନାବକାଳିଆ ।୧।
ନ ଥିଲେ କରୁଣା, ଯୋଗୀ ଋଷି ବଣା, କ ଛାର ମାନବ କଞ୍ଜମାଳିଆ
କୃପାକର ବାରେ, ଏ ଯଜ୍ଞ ବେଦୀରେ, ଡାଳିଦିଅ ଶୁଭାଶିଷ ଡାଳିଆ ।୨
ଶଙ୍ଖରେ ପୂରାଇ, କର ଚକ୍ରଘୁରାଇ ରକ୍ଷାକର ପ୍ରଭୁ କାଳ ଦଳିଆ ।
ଦିବ୍ୟତାପକୁ ରଖ, ଆହେ ପଦ୍ମମୁଖ, ଦେଇ ଦିବ୍ୟଜ୍ଞାନ ଚକାଡୋଳିଆ ।୩
ବରୁଣ ନନ୍ଦିନୀ, ଦେଖି ସ୍ୱର୍ଣ୍ଣପାଣି, ସଙ୍ଗତେ ଆଣିବ କୁଞ୍ଜକେଳିଆ,
ଶ୍ରୀମୁଖ ବଚନ ହେବ କହେ ଆନ, ନେଲି ମୁଁ ଶରଣ ଗୁଞ୍ଜମାଳିଆ ।୪।
ଅଭୟ ପ୍ରଦାନ, ଅଭାବ ପୂରଣ, କରିଦେବ ହେ କାଳିନ୍ଦି କୂଳିଆ,
ଲକ୍ଷଣାବେକ୍ଷଣ, କର ଅନୁକ୍ଷଣ, ବୋଲେ ଜଗବନ୍ଧୁ ଆହେ କାଳିଆ ।୫

ଏପରି ଖାଲି ଗୀତରେ ଗାଇଲେ ହେବ ନାହିଁ, ମୁଖସ୍ଥ କଲେ ହେବ ନାହିଁ, ଏହି ଭାବରେ ପାଗଳ ହେଲେ ହେବ । ମନ ବଚନ କର୍ମରେ ଏହି ଭାବଛଡ଼ା ଅନ୍ୟପ୍ରକାର ଭାବର ସତ୍ତା ନ ଥିବ ତେବେ ସିନା ହେବ ! ଏଥିପାଇଁ ସାଧନା ଆବଶ୍ୟକ । ସାଧନା କରିବ କିନ୍ତୁ ଭଗବାନଙ୍କର କୃପା ହେଲେ ସାଧନାରେ ସିଦ୍ଧି ହେବ । ମଣିଷର ଆୟୁ କେତୋଟି ଦିନ ? ଗୁହୁଁ ଗୁହୁଁ ପାଣି ସୁଅପରି ବହି ଯାଉଛି । ଶିଶୁ ଅବସ୍ଥାରେ ଗଲା କେତେଦିନ, ବାଳକ ଅବସ୍ଥାରେ ଖେଳ ବୁଲି ଗଲା କେତେ ଦିନ, କିଶୋର ଅବସ୍ଥାରେ କାମିନୀ ପ୍ରେମରେ ଗଲା କେତେ ଦିନ, ପ୍ରୌଢ଼ ଅବସ୍ଥାରେ ଧନ ଚିନ୍ତାରେ ଗଲା କେତେ ଦିନ, ବୃଦ୍ଧବୟସକୁ ରୋଗମାନେ ଆସି ଆକ୍ରମଣ କଲେ—ଗୁହୁଁ ଗୁହୁଁ ତ ଯମଦ୍ୱାରେ ହାଜର, ମଣିଷ କେତେବେଳେ କଣ କରିବ ?

ସ୍ତ୍ରୀ—ହଇହେ, ମଣିଷ ମରିଯାଉଛି କାହିଁକି ମ ? ନ ମରି ଚିରକାଳ ଥିଲେ ତ ଭଲ ହେଉଥାନ୍ତା ?

ସ୍ୱାମୀ—ନାହିଁହେ, ସେ କଥା ଏ ସୃଷ୍ଟିରେ ନାହିଁ । ଏ କଇଫିୟତ୍ ମୁଁ ଦେଇ ପାରିବ ନାହିଁ । ଯେ ସୃଷ୍ଟି କରୁଛନ୍ତି, ସେ ସେ କଥା କହି ପାରିବେ ! ସଂସାର ଅର୍ଥାତ୍ ସମ୍ୟକଭାବରେ ସରି-ଯିବା । ସରୁଛି, ପୁଣି ହେଉଛି ପୁଣି ଯାଉଛି । ଏ ତ ଜଗତର ଧର୍ମ ! ଗୋଟିଏ କେହି ତ ଅମର ହୋଇ ନାହାଁନ୍ତି । ଅମର ନୁହନ୍ତି, ତଥାପି ଅମର ବୋଲି ମନେ କରି ପୃଥିବୀକି ଦଳି ପକାଉଛନ୍ତି । ଅମର ହୋଇଥିଲେ ଆଉ ଏ ଦୁନିଆଁ ରହନ୍ତା ନାହିଁ । ଭଙ୍ଗା ଗଢ଼ା ଅହ ରହ ଲାଗିଛି ! ପ୍ରତି ମୁହୂର୍ତ୍ତରେ ପ୍ରାଣୀମାନେ ଯମ ମନ୍ଦିରକୁ ଯାତ୍ରା କରୁଛନ୍ତି, ତଥାପି ଯେ ରହୁଛନ୍ତି ସେ ପାଉଛନ୍ତି ତମ୍ବା ମୁଣ୍ଡି ବାନ୍ଧି ଅମର ହେଲେ । ସଂସାରରେ ଏହା କେବଳ ଆଶ୍ଚର୍ଯ୍ୟ କଥା । ଏହି ନୃତ୍ୟ ଲାଗିଛି, ସଂସାର ରଙ୍ଗମଞ୍ଚରେ ଏହି ନାଟକ ଅଭିନୀତ ହେଉଛି ।

ସ୍ତ୍ରୀ—ହଇହେ, କହୁଛ ତ ସଂସାରଟା ଅନିତ୍ୟ । ଜୀବ ଆସିଛି—ଯିବ, ତେବେ ଏତେ ଗଣ୍ଡଗୋଳ ଲଗିଛି କାହିଁକି ? ଜାତି, ଜାତୀୟ ଜୀବନ, କଂଗ୍ରେସ ବା ଜାତି ମହାମେଳା, ଯୁଦ୍ଧ ଏସବୁ କାହିଁକି ?

ସ୍ୱାମୀ—ସବୁ ସେହିପରି କ୍ଷଣସ୍ଥାୟୀ । ଗୁଡ଼ାଏ ମଣିଷ ଏକାଠି ରହିବାରୁ ନାନା ପ୍ରକାର ଚିନ୍ତା ଜଳ୍ପନା କଳ୍ପନା କରୁଛନ୍ତି । ବଳୁଆ ଯେ ହେଲା ସେ ଦୁର୍ବଳ ଉପରେ ଅତ୍ୟାଚାର କରିବାରୁ ଆତ୍ମରକ୍ଷା-ପାଇଁ ନାନା ଉପାୟ ପାଞ୍ଚୁଛନ୍ତି । ଗୋଟାଏ ରାଜା ହେଉଛି, ଗୁଡ଼ାଏ ପ୍ରଜା ହେଉଛନ୍ତି—ଏ ଗୋଟାଏ ମଧ୍ୟ ଖେଳ । ଭଗବାନ ଏ ଲୀଳା ଦେଖୁଛନ୍ତି । ପିଲାଏ ଧୂଳିଘର କରି ଖେଳାଳି ପରି ଖେଳୁଛନ୍ତି ପୁଣି ଗୋଡ଼ମାରି ଭାଙ୍ଗି ଦେଉଛନ୍ତି । ଆଜି ଯେଉଁଠି ଗ୍ରାମ, କାଲି ସେଠି ସମୁଦ୍ର । ଆଜି ଯେ ସମୁଦ୍ର, କାଲି ସେ ଗ୍ରାମ । ଗୋଟାଏ ସ୍ରୋତ ଚାଲିଛି । ସଂସାରଟାକୁ ଅନିତ୍ୟ ବୋଲି ତ କେହି ମନେ କରୁନାହିଁ । ସମସ୍ତେ ଏ ସବୁ ସତ୍ୟ ବୋଲି ମନେ କରିବାରୁ ଦୁଃଖ ସହୁଛନ୍ତି । ଆଜି ଏତିକି ଥାଉ ।

---

## ତ୍ରୟୋଦଶ ପରିଚ୍ଛେଦ

## ସଙ୍ଗୀତ

ସ୍ତ୍ରୀ—ହଇହେ, ଗୋଟିଏ ସଙ୍ଗୀତ ଗାଇଲ ? କେତେଦିନ ସଙ୍ଗୀତ ଶୁଣିନାହିଁ ।

ସ୍ୱାମୀ—ସଙ୍ଗୀତ ଶୁଣିବ ? କଣ ସଙ୍ଗୀତ ଗାଇବି ? କହନ୍ତୁ ମନ ଫୁଲିଣିଆ ଗୀତ ଗାଏ । ସବୁବେଳେ ଏ ସଂସାର ଧନ୍ଦାରେ ପଡ଼ି

ମନଟା ତ ମଳିନ ହୋଇ ଯାଇଛି କଣ କରିବା ! ଆଚ୍ଛା, ତମ ଗ୍ରନ୍ଥାଟା ଲଗିଦେବା କାହିଁକି ? ପଦେ ଦ୍'ପଦ ଗାଇଦେବା, ଶୁଣ !

( ୧ )

ସଙ୍ଗୀତ, ତୋର ମୋହନ ସ୍ୱନ । ଅନାୟତ୍ତେ ମୋହି ନଅଇ ମନ । ଧ୍ରୁ ।
ଅମର ଧାମରେ ତୋର ଜନମ । ଅମର ମନ୍ତ୍ରରେ ଗଢା ପରାଣ ।୧।
ଛ ରାଗ ଛତିଶ ରାଗିଣୀ ଦେଇ । ମନୋହର ବପୁ ଗଢ଼ିଛି ବହି ।୨।
ତାଳମାନ ଯନ୍ତ୍ର ବାଦ୍ୟ ଆଶ୍ରାରେ । ନବ ନବ ବପୁ ଧରୁ ଧରାରେ ।୩।
ଲଳିତ ଅମିୟ ମଧୁର ବାଣୀ । ବଳେ ମନ ମୀନ ନଅଇ ଟାଣି ।୪।
ବିଶ୍ୱ ବିମୋହନ ସପତ ସ୍ୱର । ମୋହିତ ହୁଅନ୍ତି ଦେବତା ନର ।୫।
ତ୍ରିଭୁବନ ମୋହନ ଜଗୁଟ ଜାଣୁ । ବିଶ୍ୱପ୍ରାଣୀ ମନ ପରାଣ କିଣୁ ।୬।
ଏ ବିଶ୍ୱତୋହରଛନ୍ଦରେଛନ୍ଦା । ଶୁଣି କେ ତୋଠାରେ ନପଡ଼େ ବନ୍ଧା
ଶ୍ରୁତିରେ ପଶି ତୁ ବିନାଶୁ ଧୃତି । ନିତି ଶୁଣୁଥିଲେ ବଢ଼ଇ ପ୍ରୀତି ।୮।
ସାକ୍ଷାତ ନାଦ ବ୍ରହ୍ମ ଅଟୁ ତୁହି । ଜଗବନ୍ଧୁ ଶ୍ରୀଚରଣେ ନମଇ ।୯।

( ୨ )

ଉଠ କଳାକାହ୍ନୁ, ପାହିଲାଣି ରାତି ରେ, କଳାହାତି । ଧ୍ରୁବ ।
ପଳାଉଛି ନିଶା ଯୋଷା, ଗୋଡ଼ାଇ ଆସୁଛି ଉଷା,
ଚାଲକୁ ଗଲାଣି ତଷା, ତେଜ ଧନ ପଲଙ୍କ ସୁପାତି ରେ । ୧ ।
ବୁଡ଼ିଲାଣି କୁଆଁ ତରା, ଡାକୁକ ଦେଲେ 'ନାଗରା,
ଜାଗିଲେଣି ବିଶ୍ୱସାରା,ପିକ କୁହୁ ଡାକିଲାଣି ମାତି । ୨
ଶଶି କୁମୁଦ ବିରସ, ନଳିନୀ ମନ ସରସ,
ତେଜ ତୁ ଧନ ଆଳସ୍ୟ ଆସିଲେଣି ବନମଣି ଭାତିରେ ।୩ ।
ଶୁଭିଲା କାକଳି ସ୍ୱନ, ବିଶ୍ୱପତି ସ୍ତୁତି ଗାନ
ମଧୁପ ମଧୁଗୁଞ୍ଜନ, ଡାକିଲେଣି ଆସି ହାରେ ସାଥିରେ ।୪ ।

ଭକ୍ତେ ଧ୍ୟାନ ଜଗବନ୍ଧୁ, ଉଠ ହେ ଗୋକୁଳ ଇନ୍ଦୁ
ଲପନ ସେଚନା ବନ୍ଧୁ, ଦେଖି ଲସିପିକନ୍ତି ଅସାନ୍ତ ରେ । ୫

( ୩ )

କେଶର କୁଞ୍ଜରୁ ଅଳି ଅଇଲୁ କି ତୁମ୍ଭି
କହ କି କରୁଥିଲେ ମୋ ପରାଣ ମାଧୋଇ ରେ । ଧ୍ରୁବ ।
ସରାଗରେ ତୁ ଆସୁଛୁ, ଗୁଣୁ ଗୁଣୁ ଗାଇଅଛୁ,
ଆସ ମୋ ଶ୍ରୁତିରେ ଧୀରେ କହ ବେଗେ କହ୍ନ ରେ । ୧ ।
କି କରୁଥିଲେ ମୋ ବନ୍ଧୁ କୁଞ୍ଜବନ ରାଜା ଇନ୍ଦୁ
କହ କୁଶଳ ବାରତା ଫଣପୁ ତୁଠାଇ ରେ । ୨ ।
ଆସ ଆସ ପ୍ରିୟ ଅଳି, ଯେଣ ମୋର ଏତେ ଅଳି,
ଆକୁଳ ହୁଏ ପରାଣ ଯାଅ ମୋତେ କହି ରେ । ୩ ।
ପରଶିଥିଲୁ କି ଅଙ୍ଗ, ଲଭିଥିଲୁ କି ସେ ଭାଗ୍ୟ,
ଆସ ମୋ ଅଙ୍ଗରେ ବସ ଧନ୍ୟା ହେବି ମୁହିଁ ରେ ।୪ ।
ଆଜ ସୁପ୍ରଭାତ ମୋର, କେତେ ଜନ୍ମ ତପ ଫଳ,
କାହାର ଶ୍ରୀମୁଖ ପ୍ରାତେ ଥିଲା ଆଗେ ଚାହିଁ ରେ । ୫ ।
କହ କହ ଅଳି ମୋତେ, ଶ୍ରୁତିପଟରେ ଗୁପତେ,
ପୋଡ଼ା ପରାଣେ ଚନ୍ଦନ ଲେପିଦିଅ ତୁହି ରେ । ୬ ।
କୁଶଳ ବାରତା ଶୁଣି, ସୁଖୀ ହେବ ଅଭାଗିନୀ,
ଏହା ବିନୁ ଆନ ସୁଖ ମୋର ଲୋଡ଼ା ନାହିଁ ରେ । ୭ ।
ମଲ୍ଲୀକଢ଼ି ବେଣ୍ଟ ପରେ, ବସିଥିଲୁ କି ଥରେ,
ଦେବ ଦୁର୍ଲ୍ଲଭ ତୋ ଭାଗ୍ୟ ଆସ ବେଗେ ଧାଇଁ ରେ । ୮ ।
ନିକଟକୁ ଆସି ଥରେ ପୁଣି ଚାଲିଯାଉ ଦୂରେ,
ଡରୁଛୁ କି କାଳେ ତତେ ବାନ୍ଧି ରଖିବଇଁ ରେ । ୯ ।

ଉଡ଼ ଉଡ଼ ଯାଉ ଆସୁ ମୋ ବନ୍ଧୁ ଶ୍ରୀଅଙ୍ଗେ ବସୁ
ପାଇଲୁ ଏ ବର କେଉଁ ଦେବଙ୍କୁ ମନାଇ ରେ ।୧୦।
ଭାବ ଶ୍ରୀମନ୍ତ ଏସନ, ଭାବାବେଶରେ ମଜନ
ଭଣେ ଜଗବନ୍ଧୁ ଦୀନ, ଅଧୀର କମ୍ପାଇ ରେ ।୧୧।

---

ସ୍ତ୍ରୀ—ଅଚ୍ଛା, ଏବେ କଣ ପରା ଦେଶ ଜାତି ବିଷୟରେ କେତେ କଣ ବୋଲାଯାଉଛି ? ସେପରି ଗୀତ ଗୋଟାଏ ଗାଇଲ ନାହିଁ ? ସେଭଳି ଗୀତ କବିତାକୁ ଆଜକାଲି ଲୋକେ ଭାରି ଆଗ୍ରହ କରୁଛନ୍ତି ପରା ?

ସ୍ୱାମୀ—ଶୁଣ କହୁଛି ।

ବନ୍ଦଇ ଭାରତ ତବ ଶ୍ରୀଚରଣ,
ଜନ୍ମଭୂମି ମାତ ଭୁବନ ଭୂଷଣ ।
ଜନନୀ ଭାରତ ବିଶ୍ୱ-ବିମୋହିନୀ,
ମାଗେ କଳ୍ପଲତା, ପବିତ୍ର ଧରଣୀ ।
ଭୂମଣ୍ଡଳେ ନାହିଁ ଦେଶ ତୋ ସମାନ,
କେଉଁ ଶିଳ୍ପୀ ତୋତେ କଲା ନିରମାଣ ।
ସ୍ୱୟଂ ବିଶ୍ୱକର୍ମା ଶିଳ୍ପୀ ଜଗତ୍ପତି,
ନିରମାଣି ଆପେ କଲେ କି ବସତି !
ତୋ ଶିର ମୁକୁଟ ଶୁଭ୍ର ହିମଗିରି,
ତୋ କଟିମେଖଳା ଯମୁନା କାବେରୀ ।
କେତେ ପୁଣ୍ୟତୋୟା ନଦୀ ତୋ ଶରୀରେ,
ପୀୟୁଷ ପ୍ରବାହ ଯେସନ ବହେ ଖରେ ।

ନାନା ଫଳ ଫୁଲେ ଶୋଭେ ତୋ କାନନ,
ତୋ ବିହଙ୍ଗ ଗାଏ ସପ୍ତସ୍ୱରେ ଗାନ,
ନିତ୍ୟ ଲୀଳାପ୍ରିତ ବସନ୍ତ ତୋ ଦେଶେ,
ବିରାଜିତ ଅଙ୍ଗ ନିତି ନବବେଶେ,
ଧନଧାନ୍ୟ ପୁଷ୍ପ ଫଳ ପରିପୂର୍ଣ୍ଣ,
ଭାରତ ଭୂମି ତୁ ସୁଖ ପ୍ରସ୍ରବଣ ।
ଋଷି ମୁନି ବେଦ ମୁଖରିତ ଦେଶ,
ଧରିଛୁ ପବିତ୍ର ଧାମ ତୁ ଅଶେଷ ।
ଧର୍ମ, ଅର୍ଥ, କାମ, ମୋକ୍ଷପ୍ରଦା ତୁହି,
ତୋପରି ଦେଶ ତ ଏ ଜଗତେ ନାହିଁ ।
କେତେ ଧର୍ମବୀର କର୍ମବୀର ଜନ,
କରିଥିଲେ କୋଳେ ଜନମ ଗ୍ରହଣ ।
ସତ୍ୟ ତ୍ରେତା ଯୁଗ ଦ୍ୱାପର ବିଷମ,
ବଳୁ ଘୋଷେ ବୋଷୁ ଅଛଇ ପୁରାଣ ।
ବନେ ବସି ଜ୍ଞାନ ବୃକ୍ଷ ମୂଳ ପରେ,
ଶିକ୍ଷା ଦୀକ୍ଷା ଗୁରୁ ଥିଲୁ ଜଗତରେ ।
ତୋ ପବିତ୍ର କୋଳେ କେତେ ଅବତାର
ହେଲେ ଯୁଗେ ଯୁଗେ ଅନାଦି ଈଶ୍ୱର ।
କେତେ ପତିବ୍ରତା ସତୀ ଶିରୋମଣି,
ସୀତା ଦମୟନ୍ତୀ ସାବିତ୍ରୀ ପଦ୍ମିନୀ ।
କେତେ ବୀରାଙ୍ଗନା ଜନମି ତୋ କୋଳେ,
ଲୀଳା ଖେଳା କରି ସ୍ମୃତି ରଖିଗଲେ ।
ଧନ ଜନ ଗୋପଲକ୍ଷ୍ମୀ ଥିଲୁ ପୂରି,
ସେହି ଐଶ୍ୱର୍ଯ୍ୟ ହେଲୁ ତୋ ଭଗାରି ।

ଅନନ୍ୟ ସୁନ୍ଦର ମୋହନ ମୂରତି,
ଦେଖି ଲୋଭକଲେ ବିଦେଶୀ ଅରାତି ।
ଅଛି ସେହି ଦେଶ ନଦୀ ଗିରିବନ,
ଆଜ ପୂର୍ବକଥା ମଣୁଛୁଁ ସ୍ୱପନ ।
ନିଜ ଠାରେ ନାହିଁ ନିଜର ବିଶ୍ୱାସ,
ମଣେ ପୂର୍ବକଥା ସବୁ ଅବିଶ୍ୱାସ ।
ହୋଇଛି ଭାରତେ ଘୋର ଦୁରଦଶା,
କାନ୍ଦି ଉଠେ ପ୍ରାଣ ଦେଖିଲେ ତୋ ଦଶା ।
ଅନ୍ନପୂର୍ଣ୍ଣା ଯାର ଜନନୀ ଭାରତ,
ଅନ୍ନ ପାଇଁ ହାତ ପତାଏ ତା ସୁତ ।
କି ଘୋର ପାତକ କଲୁ ମାଗୋ ତୁହି,
ଏ ଦଣ୍ଡ ବିହିଲା ନିଦାରୁଣ ବିହି ।

---

ଉଠ ରେ ଉତ୍କଳ ଆଜ କେତେକାଳ
ପଡ଼ିଥିବୁ ଘୋର ଅନ୍ଧାରେ ତୁହି ।
ଜାଗି ଉଠ ବେଗେ, ଉଠ ହେ ସରାଗେ
ନବବଳ ବପୁ ବିଜ୍ଞାନ ନେଇ । ଧ୍ରୁବ ।
ତେଜ ହିଂସା ଦ୍ୱେଷ ଉଠ ରେ ଉତ୍କଳ,
ଜାତି ହିତେ ଲାଗ ଛାଡ଼ି ସ୍ୱାର୍ଥ ଖେଳ ।
ଦେଖ କେତେ ଜାତି, ଉଠୁଛନ୍ତି ମାତି,
ନିଜ ଦେଶ ହିତେ ପରାଣ ଦେଇ । ୧ ।
ନବ ପ୍ରଦେଶରେ ନବଭାବ ଘେନି
ଉଠ ହେ ଉତ୍କଳ ଜନ୍ମାଇ ମେଦିନୀ ।

ଉଦାର ଚିତ୍ତରେ, କରମ କ୍ଷେତ୍ରରେ,
ନିଜ ଜାତି ମାନ ରଖ ହେ ଭାଇ । ୨ ।
ଶିଳପ ଭାସ୍କର ଯେ ଦେଶ ସମ୍ପତ୍ତି,
ଲଭିଥିଲା ଦିନେ ଜଗତରେ ଖ୍ୟାତି ।
ଆଜ ସେ ଓଡ଼ିଆ, ବିଦେଶେ ମୂଲିଆ
ଦୁଇ ଓଳି ପେଟ ମୁଠାକ ପାଇଁ । ୩ ।
ଥିଲା ଧରମା ଯେ ଦେଶର ସନ୍ତାନ,
ବାରଶ ବଢ଼ାଇ ହିତେ ଦେଲା ପ୍ରାଣ ।
କୋଣାର୍କ ମନ୍ଦିର ମହୋଦଧି ତୀର,
ମୂକ ସାକ୍ଷୀ ହୋଇ ଅଛଇ ରହି । ୪ ।
ନାହିଁ ବାହୁ ବଳ, ସମର ବିକ୍ରମ,
ଯା ଦେଖି ବଇରି ଚିତ୍ତ ହୁଏ ଭ୍ରମ ।
ବିଶାଳ ଶରୀର, କାହିଁ ଗଲା ତୋର,
ନିଜ ଦେଶେ ପରଦେଶୀ ବୋଲାଇ । ୫ ।
ବୁଲୁଁ ଚଉଦିଗ, ତୋ ହାଟ ବଜାର,
କି ଦରବ ଅଛି ଦେଖ ତୋ ଦେଶର ।
ପୁଞ୍ଜି ପାଣ୍ଠି ଦେଇ, କିଣୁ ସବୁ ଭାଇ,
ତୋ ଧାନ ଚାଉଳ ଯାଏ ଉଭାଇ । ୬ ।
କେତେ କାଳ ଭାଇ ଓଡ଼ିଆ ସନ୍ତାନ,
ଦୁଃଖ ପାରାବାରେ ପହଁର ଅଜାଣ ।
ଅବସାଦ ନୀରେ ବୁଡ଼ିଯିବ କିରେ,
ରସାତଳ ବାସୀ ହେବୁ କି ଭିନ୍ନ । ୭ ।

ଜାଗିଲେଣି ଜାତି ସରବ, ଏକା ଏ ଓଡ଼ଶା ଜାତି ଆଜି ନିରବ । ଧ୍ରୁବ ।
ଇଂଲଣ୍ଡ ଆମେରିକା, ଫରାସୀ, ଚିନା, ଆଫ୍ରିକା,
ଦେଖ ଜରମାନୀ ଦେଶ ଦମ୍ଭ ଗରବ । ୧ ।
ସେ ଦେଶେ ଶିଳ୍ପ ବାଣିଜ୍ୟ, କରି ଲୋକେ ହେଲେ ଆର୍ଯ୍ୟ
ଆର୍ଯ୍ୟ ଓଡ଼ିଆ ଅନାର୍ଯ୍ୟ ଶୂନ୍ୟ ବିଭବ । ୨ ।
ସେ ଦେଶେ ଜୀବିକା ଶିକ୍ଷା, ଏ ଦେଶ ଜୀବିକା ଭିକ୍ଷା
ହିଂସା ଦ୍ୱେଷ ସାର ଦୀକ୍ଷା ଆଲସ୍ୟ ଭାବ । ୩ ।
ଉଠରେ ଓଡ଼ିଆ ଜାତି, ଘୁଞ୍ଚରେ ମିଶାଇ ଛାତି,
ଦେଶ ସ୍ୱାର୍ଥ ଯଜ୍ଞେ ମାତି ଉଠ ସରବ । ୪ ।

---

ସ୍ତ୍ରୀ—ଆମ ଦେଶରେ ତ ଦି ଭାଇଙ୍କର ମନ ମିଳୁନାହିଁ, ଆଉ ଦେଶଯାକ ଏକା ମନ ଏକା ଚିତ୍ତ ହୋଇ କେଉଁ କାମ କରିବେ ମ ? ଖାଲି ଗୁଡ଼ାଏ ଲେଖା ଲେଖି ହେଉଛି ସିନା, କାମରେ କଏ କରୁଛି ?

ସ୍ୱାମୀ—ଆହେ, ଗୋଟାଏ କଥା ଅଛି, ମଇଁଷି ସିଙ୍ଗ ଫଟା ଯୁଝିଲା ବେଳକୁ ଗୋଟା । ଆମ ଘର ଭିତରେ ଯେତେ ବାଦ ବିବାଦ, ମନୋମାଳିନ୍ୟ ଥାଉ ଆମ୍ଭେମାନେ ବାହାର ବିଷୟରେ ଏକମନ ହେବା ଆବଶ୍ୟକ । ଜାତି ବିଷୟ ବା ଦେଶ ବିଷୟରେ ପଡ଼ିଲାବେଳେ ସବୁ ବ୍ୟକ୍ତିଗତ ବାଦବିବାଦ ଭୁଲିଯିବାକୁ ହେବ । ବର୍ତ୍ତମାନ ଇଉରୋପରେ ଯେଉଁ ଯୁଦ୍ଧ ଲାଗିଛି ଶୁଣୁଛ ତ ? ଇଂରେଜ ଲୋକଙ୍କ ଭିତରେ କଣ ବ୍ୟକ୍ତିଗତ ମତଭେଦ ନାହିଁ ? ଯଥେଷ୍ଟ ଅଛି, କିନ୍ତୁ ଯେଉଁବେଳେ ଜର୍ମାନୀ ଅସି ବିଲାତ ଆକ୍ରମଣ କରୁଛି ତେତେବେଳେ ସବୁ ଇଂରେଜମାନେ ଏକଯୋଗ ହୋଇ ଲଢ଼ୁଛନ୍ତି

ଧନ ପ୍ରାଣ ଦେଇ ଦେଶର, ଜାତିର ମାନ ମହତ୍ତ୍ୱ ରକ୍ଷା କରୁଛନ୍ତି ! ଏହାକୁ କହନ୍ତି "ଜାତୀୟ ଜୀବନ ।" ଆମ ଭାରତୀୟ ଜାତିର ସେହିପରି ଭାବ ହେବା ଆବଶ୍ୟକ ।

ସ୍ତ୍ରୀ—ସେପରି ଭାବ ଭାରତବାସୀଙ୍କର ହେଉନାହିଁ କାହିଁକି ?

ସ୍ୱାମୀ—କାହିଁକି ହେଉ ନାହିଁ ବୁଝି ପାରୁନାହଁ ! ଆମ ଭିତରେ ମତାନ୍ତର ମନାନ୍ତର ବହୁତ ଅଛି । ଦେଖୁଛ ତ ହିନ୍ଦୁ ମୁସଲମାନ ଭିତରେ ସ୍ଥାନେ ସ୍ଥାନେ କି ଭୟାବହ ଲୋମହର୍ଷଣ କାଣ୍ଡ କାରଖାନା ଲାଗିଛି ! କେଉଁ ଦେଶରେ ଶତ୍ରୁ ସଙ୍ଗେ ହାଣମାର ଲାଗଲା । ଆମ ଦେଶରେ ଆମ ଭିତରେ ହାଣ ମାର ଘର ପୋଡ଼ା-ପୋଡ଼ି ଲାଗିଛି । ଏ ଦେଶରେ ଏ ପରିସ୍ଥିତିରେ ଜାତୀୟ ଜୀବନ କିପରି ହେବ ? ଧର ଆମ ଓଡ଼ିଶା ଦେଶ । ଏ ଦେଶରେ ବାସ କରୁଥିବା ଲୋକଙ୍କୁ ଓଡ଼ିଆ କହନ୍ତି । ଯେତେ ଓଡ଼ିଆ ଏ ପ୍ରଦେଶରେ ବାସ କରନ୍ତି ସମସ୍ତେ ଗୋଟିଏ ଜାତି ଅର୍ଥାତ୍ ଓଡ଼ିଆ ଜାତି । ଓଡ଼ିଆ ଜାତିଟା କିପରି ଧନୀ ମାନୀ ଜ୍ଞାନୀ ହେବେ ସେ କଥା ଯେବେ ପ୍ରତ୍ୟେକ ଓଡ଼ିଆ କି ପୁରୁଷ କି ସ୍ତ୍ରୀ ସମସ୍ତେ ଯେତେବେଳେ ଏକ ଭାବରେ ଉନ୍ମତ୍ତ ହେବେ ସେତେବେଳେ ବୁଝିବାକୁ ହେବ ଯେ ଆମେ ଜାତି ପାଇଁ ଜୀବନ ଲାଭ କଲୁଣି । ଯେତେବେଳେ ବ୍ୟକ୍ତିଗତ ଜୀବନ ସଂପ୍ରସାରିତ ହୋଇ ସମଗ୍ର ଜାତିଟାକୁ ତା ସ୍ୱାର୍ଥ ଭିତରକୁ ନେଇପାରିବ ସେତେବେଳେ ଜାତୀୟ ଜୀବନ ପୂର୍ଣ୍ଣ ମାତ୍ରାରେ ହେଲା ବୋଲି ଜାଣିବ । ଏଥିପାଇଁ ଶିକ୍ଷା, ସାଧନା ଆବଶ୍ୟକ । ଏ ଦିଗରେ ଭାରତରେ ଶିକ୍ଷା, ସାଧନା ନାହିଁ । ଭାରତ ତାର ନିଜତ୍ୱ ଭୁଲି ଯାଇଛି ।

ଜାତି ହିତେ ଯେହୁ କରେ ସଦା ପଣ,
ଜାତି ଯଶ ଗଉରବ ଯାର ଠାଣ ।
ଜାତୀୟ ଉନ୍ନତି ସଦା ଯାର ଧ୍ୟାନ,
ଜାତିହିତେ ଦେଇ ପାରଇ ଜୀବନ !
ଜାତିର କଲ୍ୟାଣ ମଙ୍ଗଳବିଧାନ,
ଜାତି ନିନ୍ଦାକୁ ଯେ ମଣେ ତୀକ୍ଷ୍ଣବାଣ ।
ନିଜ ଧନ ଜନ ଗଉରବ ମାନ,
ଏସବୁ ଅଟଇ ମୋ ଜାତିର ଧନ ।
ଯାଉ ଅବା ଥାଉ ଆପଣା ପରାଣ,
ଆପଣା ଜାତିର ନୋହୁ ଅପମାନ ।
ଥିଲି ଧର୍ମପଦ ନଗଣ୍ୟ ସନ୍ତାନ,
କାରଣ ବଢ଼ାଇ ହିତେ ଦେଲି ପ୍ରାଣ ।
ଏମନ୍ତ ଭାବରେ ଗଢ଼ା ଯାର ମନ
ଅଟୁ ଜାଣ ତାର ଜାତୀୟ ଜୀବନ ।
ଯେଉଁ ଅବସ୍ଥାରେ ଥାଉ ଯେଉଁ ଜନ,
ମନେ ଥିବ ସଦା ଜାତିର କଲ୍ୟାଣ ।
ଲାଗିଅଛି ସଦା ଜନମ ମରଣ,
ଅବଶ୍ୟ ଯିବଟି ଦିନେ ଏ ଜୀବନ ।
ଅଟଇ ଅମର ଜାତିର ଜୀବନ,
ପ୍ରାଣପଣେ ସଦା ରଖ ତାର ମାନ ।

---

## ଚତୁର୍ଦ୍ଦଶ ପରିଚ୍ଛେଦ

## ସଂସାରରେ ସୁଖୀ କିଏ ?

ସ୍ତ୍ରୀ—ହଇହେ, ଏ ସଂସାରରେ ସୁଖୀ କିଏ କହିଲ ?

ସ୍ୱାମୀ—ଆଚ୍ଛା, ଭଲ କଥାଟିଏ ପଚାରିଲ । ତୁମେ ଆଗେ କହିଲ ସୁଖୀ ବୋଲି କାହାକୁ କହୁଛ ?

ସ୍ତ୍ରୀ—ଯାହାଙ୍କର ସୁଖରେ ଦିନକାଳ ଯାଉଛି ସେମାନେ ସୁଖୀ । ଯାହାର ବହୁତ ଟଙ୍କା ସୁନା ଅଷ୍ଟରତ୍ନ ଧାନ ଚାଉଳ ପ୍ରଭୃତି ଅକଳନ। ଅଛି, ଯେତେବେଳେ ଯାହା ଦରକାରୁଛି ମନ ଇଚ୍ଛା ଖର୍ଚ୍ଚ କରୁଛି, ମନ ଇଚ୍ଛା ପିନ୍ଧୁଛି, ମନ ଇଚ୍ଛା ଖାଉଛି, ମନ ଇଚ୍ଛା ଦାନ ଧର୍ମ୍ମ କରୁଛି ସେ କେବଳ ସୁଖୀ । ଦେଖୁଛ ଶୁକଦେବ ବାବୁଙ୍କ ଘର ଦ୍ୱାର ସୁଖରେ ଚଳୁଛି । ତା ଭାରିଯା ହେଲେ କଣ ହେବ ଖାଲି ସୁନା ଅଳଙ୍କାରରେ ଛପର ହୋଇଛି । ଘର କଣ ଦେଖିବ, ଦ୍ୱାର କଣ ଦେଖିବ, ଘୋଡ଼ାଗାଡ଼ି, ମଟର, ଉଡାଜାହାଜ—କେଉଁ ଜିନିଷ ଯାନବାହନର ଅଭାବ ନାହିଁ । ଖାଇବା ପିଇବା କଥା କଣ କହିବ! ଘିଅ ଖାଇ ଦୁଧରେ ଆଞ୍ଚୋଉଛନ୍ତି ମସ !

ସ୍ୱାମୀ—ଆହେ ; ସୁଖ ଦୁଃଖ ବୋଲି କଣ ଦୁଇଟା ଜିନିଷ ଅଛି କି ? ମୁଁ ତ ଏପରି ଦୁଇଟା ଜିନିଷ ଥିବାର ଦେଖି ପାରୁ ନାହିଁ । ଦୁଃଖ ସୁଖ ଦୁଇଟା ମନର ଅବସ୍ଥା ବା ବିକାର । ଜଣେ ଯେଉଁ କଥାକୁ ସୁଖ ମନେ କରେ ଆଉ ଜଣେ ସେହି କଥାକୁ ଦୁଃଖ ମନେ କରେ । କୁକୁର ବିଷ୍ଠା ଖାଇବାକୁ ସୁଖ ପାଏ, କିନ୍ତୁ ମଣିଷ ସେହି ଖାଦ୍ୟକୁ ଅସୁଖ ମନେ କରେ । କେହି

କେହି ବିଷୟ ଜଞ୍ଜାଳକୁ ସୁଖ ମନେ କରେ, କେହି କେହି ସେହି ବିଷୟ ଜଞ୍ଜାଳକୁ ଦୁଃଖ ମନେ କରେ ଏବଂ ସେହି ବିଷୟ ତ୍ୟାଗକରି କୌପୀନ ପରିଧାନ କରେ, ସନ୍ନ୍ୟାସୀ ହୋଇ ବୁଲିବାକୁ ସୁଖ ମନେକରେ । ବୁଦ୍ଧଦେବ ରାଜପୁତ୍ର, ବିଷୟ ଜଞ୍ଜାଳ ଛାଡ଼ି ସନ୍ନ୍ୟାସୀ ହେଲେ । କିଏ ଧନଦ୍ରବ୍ୟକୁ ସୁଖ ମନେ କରେ, କିଏ ଧନଦ୍ରବ୍ୟକୁ ଦୁଃଖ ମନେ କରେ । ସୁଖ ମନରେ, ଧନରେ ନାହିଁ । ଜଣେ ଲୋକର ଅଜସ୍ର ଧନ ସମ୍ପତ୍ତି ଅଛି, କିନ୍ତୁ ଏପରି ଉତ୍କଟ ପେଟମରା ରୋଗ ଅଛି ଯେ ସେ ମୁଠିଏ ଅନ୍ନ ଖାଇପାରେ ନାହିଁ । ତେବେ ସୁଖ କାହିଁ ? ସେ ଧନରୁ କି ସୁଖ ମିଳିଲା ? କାହାର ଧନ ଅଛି, ସେ ଖାଇପାରୁ ନାହିଁ । କାହାର ଜନ ଅଛି ଧନ ନାହିଁ । କାହାର ସବୁ ଅଛି ସ୍ତ୍ରୀଟି ମରିଗଲା—ସେ ସୁଖ ଗଲା । କାହାର ସବୁ ଅଛି, ପୋଷିଲା ପୁଅଟି ଚାଲିଗଲା—ସେ ସୁଖ ସବୁ ଉଭେଇଗଲା । ଏହିପରି ଗୋଟି ଗୋଟି କରି ଦେଖିଲେ କିଏ କେଉଁଥିରେ ସୁଖୀ, କିଏ କେଉଁଥିରେ ଦୁଃଖୀ ତାର ସୀମା ମିଳିବ ନାହିଁ । ମନ ଯେତେବେଳେ ଯେଉଁ ଅବସ୍ଥାକୁ ସୁଖ ବୋଲି ମନେ କରୁଛି ସେଇଟା ସୁଖ, ଯେତେବେଳେ ଦୁଃଖ ବୋଲି ମନେ କରୁଛି ସେଇଟା ଦୁଃଖ ।

ସ୍ତ୍ରୀ—ତେବେ କଣ ସୁଖ ବୋଲି ଗୋଟିଏ କିଛି ନିର୍ଦ୍ଦିଷ୍ଟ ବସ୍ତୁ ନାହିଁ ?

ସ୍ୱାମୀ—ଯୁଧିଷ୍ଠିରଙ୍କୁ ଧର୍ମବକ ଥରେ ପଚାରିଥିଲେ, ସୁଖ କଣ ? ସେ କହିଥିଲେ—"ଦିନ ଦୁଇପହରେ ଯେ ଖାଏ ଶାକ ଅନ୍ନ । ଅଋଣୀ ଅପ୍ରବାସୀ ହେ ସୁ ୀ ସେହି ଜନ ।" ଯେ ଦିନ ଦୁଇ ପହରଠାରେ ଶାକ ଭାତ ମୁଠାଏ ଖାଏ, କାହାଠାରୁ ଋଣ କରେ ନାହିଁ କି ପ୍ରବାସ

କରେ ନାହିଁ ସେ ହେଉଛି ସୁଖୀ । ପ୍ରକୃତରେ ସାଂସାରିକ ସୁଖରେ ଏହା ହେଉଛି ସୀମା । ଜଣେ ଭକ୍ତ କହିଥିଲେ, "ବିନା ଦୈନ୍ୟେନ ଜୀବନଂ, ବିନା କଷ୍ଟେନ ମରଣଂ, ନନ୍ଦ ନନ୍ଦନ ପଦାବ୍ଜ ସେବନଂ ସମ୍ଭବତୁ ମମ ଜନ୍ମ ଜନ୍ମନି । କାହାରି ପାଖେ ଧନ ପାଇଁ ପ୍ରାର୍ଥୀ ନ ହୋଇ; କାହାରି ପାଖେ ଦୈନ୍ୟଭାବ ନ ଦେଖାଇ ଯେବେ ଜୀବନ ଯାପନ କରି ପାରିବି ମରଣ ସମୟରେ କିଛିମାତ୍ର ଯନ୍ତ୍ରଣା କଷ୍ଟ ଭୋଗ ନ କରି ହଠାତ୍ ହାତ ଗୋଡ଼ ଚଳୁଥିବ ମରିଯିବି । ଭଗବାନଙ୍କ ଶ୍ରୀଚରଣରେ ମତି ଥିବ, ଏହି କଥା ମିଳିଲେ ଜୀବନ ସାର୍ଥକ ହେବ । ଏଥୁଁ ଅଧିକ ଆଉ କଣ ଲୋଡ଼ିବ ? ଭକ୍ତ ଭଗବାନଙ୍କୁ ଏହି ପ୍ରାର୍ଥନା ଜଣାଉଛି । ହେ ଭଗବାନ, ମତେ ଏହି ବର ଦିଅ । ଯଦି ଜନ୍ମ ହେବାକୁ ହେବ ତେବେ ଏହି କଥାମାନ ମତେ ମିଳୁଥାଉ ।"

ସ୍ତ୍ରୀ—ତେବେ ସୁଖ ଦୁଃଖ ଦିଟା ଶବ୍ଦ ଅଛି କିଆଁ ?

ସ୍ୱାମୀ—ମନର ଦୁଇଟା ଅବସ୍ଥା ପରା ! ସୁଖର ଅଭାବ ଦୁଃଖ । ଦୁଃଖର ଅଭାବ ସୁଖ । ଏ ଦୁଇଟା ଅବସ୍ଥା ତ ଲୋକ ଅନୁଭବ କରୁଛି । ଦୁଇଟା ଶବ୍ଦ ନ ହେଲେ ଦୁଇଟା ଅବସ୍ଥାର ପ୍ରଭେଦ ଜଣାଯିବ କିପରି ? ଦୁଃଖ ଅର୍ଥ ଅଭାବ । ଯେଉଁ ବିଷୟର ଅଭାବ ଯେ ଅନୁଭବ କରେ ସେଇଟା ତାର ଦୁଃଖ । ମନେକର ଜଣେ ଲୋକର ଆଦୌ ସନ୍ତାନ ହେଲନାହିଁ । ସେ ସେହି ଅଭାବଟାକୁ ଦୁଃଖ ବୋଲି ମନେ କରେ । ଜଣେ ଲୋକର ବହୁତ ଗୁଡ଼ାଏ ସନ୍ତାନ ହେଲେ ସେ ତାଙ୍କୁ ଉପଯୁକ୍ତ ଭାବେ ଖୁଆଇ ପିଆଇ ନ ପାରିଲା, ତେବେ ମଧ୍ୟ ତା ମନରେ ଦୁଃଖ ହୁଏ । କାହାର ପିଲା ହୋଇ ମରିଗଲେ ସେଥିରେ ତାର ଦୁଃଖ । ପୁଅ ଅଛି, ଅଥଚ ସେ ଅକର୍ମଣ୍ୟ ଅର୍ଥାତ୍ ଯେତିକି କେମିତି ପ୍ରଭୃତି ହେଲେ

ତେବେ ମଧ୍ୟ ମନରେ ଦୁଃଖ ହୁଏ । ଯେ ଯେତେ ପ୍ରକାର ଅଭାବ ଅନୁଭବ କରେ ତାର ତେତେ ପ୍ରକାର ଦୁଃଖ ମନରେ ଜନ୍ମେ ।

ସ୍ତ୍ରୀ —ଏପରି ଭାବ ମନରେ ଜନ୍ମେ କାହିଁକି ?

ସ୍ୱାମୀ—ଏଇଟା ମଣିଷର ସ୍ୱଭାବ । ମଣିଷ ହେଉ ଯେ କୌଣସି ପ୍ରାଣୀ ହେଉ, ସେ ସର୍ବଦା ସୁଖଭୋଗ ଇଚ୍ଛା କରେ । ଆମ ଘରେ ଯେଉଁ କୁକୁରଟି ଅଛି ଦେଖୁଛ ରାତିରେ ଶୋଇବାକୁ ଖୋଜି ଖୋଜି ଯେଉଁଠି ଖଣ୍ଡେ ଆସନ ପଡ଼ିଥିବ ତା ଉପରେ ଶୋଇବ, ତଳେ କେବେ ଶୋଇବ ନାହିଁ । ଦାଣ୍ଡରେ ହାଟରେ କେତେ କୁକୁର କେଉଁଠି ତଳେ ଶୋଉଛନ୍ତି ; କିନ୍ତୁ ଏ ଦାଣ୍ଡରେ ନ ପଡ଼ି କୋଠାଘର ଭିତରେ ରହିଲା, ମୁଣ୍ଡରେ ଭାତଟିକି ଖାଇବାକୁ ପାଇଲା, ସିମିଣ୍ଟି ପଡ଼ି ଅଗଣା ତିଆରି ହୋଇଛି ମାଟି ଧୂଳି ନାହିଁ, ତଥାପି ସେ ତଳୁ ଯାଇ ଖଣ୍ଡେ ଆସନ ଖୋଜିଲା, ତା ଉପରେ ଶୋଇ ତାକୁ ବେଶି ଆରାମ ଲାଗିଲା । ଏଥିରୁ ବୁଝିବ ଯେ ପ୍ରାଣୀର ସୁଖ ଖୋଜିବାଟା ସ୍ୱାଭାବିକ । ପ୍ରାଣୀ ନିଜେ ଯେତେବେଳେ ଯେଉଁ ଅବସ୍ଥାରେ ପଡ଼ୁଛି ସେଥିରେ ସନ୍ତୁଷ୍ଟ ନ ହୋଇ ଆଉ କିଛି ଅଧିକ ସୁଖ ଖୋଜୁଛି । କିଏ କେଉଁ କଥାକୁ ସୁଖ ମନେ କରୁଛି ତହିଁରେ ନିଶ୍ଚୟତା କିଛି ନାହିଁ । ଯେତେ ଅଭାବ ପୂରଣ ହେଉଛି ତେତେ ଅଭାବ ପୁଣି ବଢ଼ି ଯାଉଛି ।

ସ୍ତ୍ରୀ—ତେବେ ଆମର ଯେଉଁ ଇଂରେଜ ରାଜା, ସେ ଭାରି ସୁଖରେ ଥିବେ, ତାଙ୍କର ତ କେଉଁ କଥାରେ ଅଭାବ ନାହିଁ ! ତାଙ୍କର ତ ଏଡ଼େବଡ଼ ରାଜ୍ୟ ଯେ, କହନ୍ତି ପରା ତାଙ୍କ ରାଜ୍ୟରେ ସୂର୍ଯ୍ୟାସ୍ତ ହୁଏ ନାହିଁ । ଚଳନ୍ତି ଅଚଳନ୍ତି ସମ୍ପତ୍ତି କେତେ ରହିଛି, ଖାଇବା ପିନ୍ଧିବା ଲଗାଇବା, ଆସ୍ଵୁ ଅଳଙ୍କାର କେଉଁ କଥାରେ ଅଭାବ ! ଭାରତ କିଶ ରାଜ ସିଂହାସନ କାହାକୁ ମିଳେ, କେତେ ଜନ୍ମର ତପସ୍ୟାରେ ମିଳିପାରେ । ମୁଁ ଭାବୁଛି ସେହି ଏକା ସୁଖୀ ।

ସ୍ୱାମୀ—ଆହେ, ନାହିଁ ହେ, ଦେଖିଲ ପରା ଅଷ୍ଟମ ଏଡ୍‌ୱାର୍ଡ଼ ଯେ ବର୍ତ୍ତମାନ ରାଜାଙ୍କ ପୂର୍ବ ରାଜା ଥିଲେ ସେ କଣ କଲେ ? ଏ ରାଜସିଂହାସନକୁ ଗୋଇଠା ମାରି ଫୋପାଡ଼ି ଦେଇ ପଳାଇଲେ । ସେ ସିଂହାସନକୁ ତୃଣଠାରୁ ଅତି ତୁଚ୍ଛ ମନେ କଲେ । ସେ ସିଂହାସନ ତାଙ୍କ ସୁଖ ପିପାସା ମେଣ୍ଟାଇ ପାରିଲା ନାହିଁ । ସେ ଗୋଟିଏ ସ୍ତ୍ରୀ-ପ୍ରେମକୁ ଏ ସିଂହାସନଠାରୁ ଅଧିକ ସୁଖ ମନେକଲେ । ଏ ସିଂହାସନରେ ଥାଇ ତାଙ୍କ କୁଳର ବିଧାନ ଅନୁସାରେ ସେ ସ୍ତ୍ରୀକୁ ବିବାହ ହୋଇ ପାରିଲେ ନାହିଁ, ସୁତରାଂ ସେ ମନେକଲେ ସେ ସ୍ତ୍ରୀ ଲାଭ ନ ହେଲେ ଏ ସିଂହାସନ ତୁଚ୍ଛ । ରାଜସିଂହାସନ ଛାଡ଼ିଦେଲେ, ଧନରତ୍ନ ସବୁ ତୁଚ୍ଛ ମନେକଲେ, ଏଡ଼େ ବିଶାଳ ସାମ୍ରାଜ୍ୟର ସମ୍ରାଟ ପଦ ତାଙ୍କୁ ବିଷ ପିତା ଲାଗିଲା, ସେ ଯାଇ ବାହାରେ ଗୋଟିଏ ସାଧାରଣ ଲୋକପରି ସେ ସ୍ତ୍ରୀକି ନେଇ ବାସକଲେ, ତାକୁଇ ତାଙ୍କର ପରମ ଚରମ ସୁଖ ବୋଲି ମନେକଲେ । ତୁମେ ଯେ କହୁଛ ଖାଲି ଗୁଡ଼ାଏ ଧନ ହେଲେ ସୁଖ ହେବ, ତା ନୁହେଁ । ସେ ରାଜା ତ ଏପରି ମନେ କଲେ । ଆଉ କେହି ହୋଇଥିଲେ ପାଞ୍ଚୁଥାନ୍ତା, ଯା ହୋ ଗୋଟିଏ ସ୍ତ୍ରୀଲୋକ ପାଇଁ ଏଡ଼େବଡ଼ ରାଜଗାଦି ଛାଡ଼ିଦେବି ! ରାଜଗାଦି ଥିଲେ କାଲି ଗଣ୍ଡା ଗଣ୍ଡା କେତେ ସ୍ତ୍ରୀ ମିଳିବେ । ଏହିପରି ଦେଖ କାହା ମନ କେଉଁଥିରେ ସନ୍ତୁଷ୍ଟ, ତହିଁର ସୀମା ନାହିଁ । ଏ ସଂସାର ଗୋଟିଏ ପାଗଳଖାନା । ଆମେ ସମସ୍ତେ ଗୋଟିଏ ଗୋଟିଏ ପାଗଳ । ତେବେ କିଏ କେଉଁ ବିଷୟରେ ପାଗଳ ତହିଁର ପ୍ରକାର ଭିନ୍ନ ଭିନ୍ନ । କିଏ ଟଙ୍କା ପାଇଁ ପାଗଳ, କିଏ ସମ୍ପତ୍ତି ପାଇଁ ପାଗଳ, କିଏ ସ୍ତ୍ରୀ ପାଇଁ ପାଗଳ, କିଏ ପୁଅଝିଅ ପାଇଁ ପାଗଳ, କିଏ ହରି ନାମରେ ପାଗଳ, କିଏ କଳକରି ପାଗଳ, କିଏ ପଦ ପଦବୀ ପାଇଁ ପାଗଳ, କିଏ ଯଶ କୀର୍ତ୍ତି, ଖ୍ୟାତି

ଅର୍ଜନ କରିବାପାଇଁ ପାଗଳ, କିଏ ଅଳଙ୍କାର ଲଗାଇବା ପାଇଁ ପାଗଳ, କିଏ ମଦ ଖାଇବା ପାଇଁ ପାଗଳ, କିଏ ମାଂସ ଖାଇବା-ପାଇଁ ପାଗଳ, କିଏ ଅଫିମ ଗଞ୍ଜାଇ ଖାଇବା ପାଇଁ ପାଗଳ, କିଏ ବିଦ୍ୟା ପଠନରେ ପାଗଳ, ଦେଖିପାଅ ଗୋଟି ଗୋଟି କରି ଜଣକର ଗୋଟିଏ ପ୍ରକାର ପାଗଳାମି ଅଛି । ଯେ ଯେଉଁ ବିଷୟରେ ପାଗଳ ସେ ବିଷୟ ପାଇଲେ ତାର ସୁଖ, ନ ପାଇଲେ ଦୁଃଖ । କେତେ-ବେଳେ ମନ କେଉଁ ବିଷୟକୁ ରହୁଛି ତହିଁର ଠିକଣା ନାହିଁ । ଏଇଟାକୁ ଛାଡ଼ ସେଇଟା, ସେଇଟାକୁ ଛାଡ଼ ସେଇଟା ଏପରି ମଧ୍ୟ ମନ ଭ୍ରମୁଛି ।

ସ୍ତ୍ରୀ—ଆଚ୍ଛା ତେବେ କେଉଁ ସୁଖ ଲାଭ କଲେ ମଣିଷ ଆଉ କୌଣସି ସୁଖରେ ମନ ବଳାଇବ ନାହିଁ ?

ସ୍ୱାମୀ— ସଂସାରର ଯାବତୀୟ ବିଷୟ ସୁଖ କ୍ଷଣସ୍ଥାୟୀ । ଏଇ-ଲାଗେ ଟକ ବା ସବାକ ଚଳଚିତ୍ର ଦେଖିବାକୁ ଗଲ । ଦେଖିଲ ଟିକିଏ ମନରେ ଆନନ୍ଦ ହୋଇଗଲା । ସେଠୁ ପୁଣି ନାଟକ ଦେଖିବାକୁ ମନହେଲା । ତାକୁ ଟିକିଏ ଦେଖି ଆନନ୍ଦ ହେଲ । ସେଠୁ ପୁଣି ଚଇତି ଘୋଡ଼ା ଆସିଲା ତାକୁ ଦେଖି ଟିକିଏ ଆନନ୍ଦ ହେଲ । ସେ ଗଲା ସେଠୁ ପୁଣି ମେଳଣ ଦେଖିବାକୁ ମନହେଲା । ଏହିପରି ଦେଖ ଯେ ମଣିଷ ହୁସିଆର ହେବା ଦିନଠାରୁ ଆଜପର୍ଯ୍ୟନ୍ତ ୫୦ ବର୍ଷ ହେଲା ୫୦୦୦୦ ସୁଖ ଭୋଗ କଲଣି, ତଥାପି ମନରେ ଶାନ୍ତି ନାହିଁ କି ତୃପ୍ତି ନାହିଁ । ପୁଣି କେତେ କଥାକୁ ମନ ବଳୁଛି । ଜୀବନ ଯିବା ପର୍ଯ୍ୟନ୍ତ ମଣିଷ ତୃପ୍ତ ହେଉନାହିଁ ! ଏଥିରୁ ଜଣାଯାଏ ସାଂସାରିକ ବିଷୟ ଆତ୍ୟନ୍ତିକ ସୁଖ ଦେଇ ନ ପାରେ । ମଣିଷ ସୁଖ ଖୋଜୁଛି ମାତ୍ର ପ୍ରକୃତ ସୁଖ ପାଇ ପାରୁନାହିଁ । ସେ ସୁଖ କଣ ? ସେ ସୁଖ ପରମାତ୍ମା ଦର୍ଶନ ସୁଖ । ବେଦବେଦାନ୍ତ ପ୍ରଭୃତି ସକଳ ଶାସ୍ତ୍ର ଏହି କଥା

କହୁଛି । ସେହି ସୁଖ ପରମ ଓ ଚରମ ସୁଖ । ସେହି ସୁଖ ଲାଭ କରିବାକୁ ଯୋଗୀ,ଋଷି, ମୁନି, ସାଧକମାନେ କେତେ ଯତ୍ନ କରୁଛନ୍ତି, କେତେ ସାଧନା କରୁଛନ୍ତି, ତଥାପି ପାଇ ପାରୁ ନାହାନ୍ତି, କେହି କେହି ପାଉଛନ୍ତି ।

ସ୍ତ୍ରୀ—ସମସ୍ତଙ୍କୁ ସେ ସୁଖ ମିଳୁନାହିଁ କାହିଁକି ?

ସ୍ୱାମୀ— ସମସ୍ତଙ୍କ ମନ ଠିକଣା ହୋଇ ପାରୁନାହିଁ । ମନ ତ ବାରଆଡ଼େ ବୁଲୁଛି, ତାଙ୍କ ପାଦପଦ୍ମରେ ଏକାଗ୍ର ହୋଇ ଲାଗିଲେ ସିନା ହୁଅନ୍ତା ! ଈଶ୍ୱର ଚିନ୍ତା କରୁ କରୁ ଲକ୍ଷେ ଚିନ୍ତା ଆସି ମନରେ ପ୍ରବେଶ କରି ତାକୁ ବାରଆଡ଼କୁ ଟଣା ଓଟରା କରୁଛି । ମନଟା ଆୟତ୍ତ ହୋଇପାରୁ ନାହିଁ । ମନ ଆୟତ୍ତ ହେଲେ ସାଧନାରେ ସିଦ୍ଧି ମିଳନ୍ତା । ମନର ମୂଳେ ଭଗବାନ । "ମନ ତୋହର ନିଜ ଗୁରୁ, ଉଦ୍ଧବ କେତେ ତୁ ପଚାରୁ" । ଭାଗବତ କହୁଛି, ଗୀତା କହୁଛି ଆଉ ସବୁ ଚିନ୍ତା ମନରୁ ଲୋପ କରି କେବଳ ମତେ ଯେ ଉପାସନା କରେ, ସେ ତାକୁ ପ୍ରାପ୍ତ ହୁଅନ୍ତି ।

ସକଳ ଚିନ୍ତା ମନୁ ତେଜ । ଏକା ଗୋବିନ୍ଦ ପାଦେ ଭଜ ।
ଏମନ୍ତେ ନିତି ଯେ ଭଜଇ । ମୁଁ ତାକୁ ପ୍ରାପତ ହୁଅଇ ।
ତାହାର ରକ୍ଷଣାବେକ୍ଷଣ । ମୁଁ କରୁଥାଇ ଅନୁକ୍ଷଣ ।
ଏମନ୍ତେ ଯେ ଭଜି ନ ପାରେ । ମୁଁ ଥାଏ ତାହାଠାରୁ ଦୂରେ ।
ଯେ ବୋଲେ ନିଜ ବାହୁବଳେ । ସକଳ କାର୍ଯ୍ୟ ତାର ଚଳେ ।
ମୁଁ ଥାଏ ତାହାଠାରୁ ଦୂରେ । ମତ୍ତ ହୁଏ ସେ ଅହଙ୍କାରେ ।
ତା କର୍ମ ଫଳ ସେ ଭୁଞ୍ଜଇ । ପାପ ପୁଣ୍ୟରେ ଭାଗୀ ହୋଇ ।
ମୋ ପାଦପଦ୍ମେ ଯାର ମତି । ଆନନ୍ଦେ ନିଏ ଦିବାରାତି ।
ସଦା ଆନନ୍ଦ ସଦା ସୁଖ । ନ ହୁଏ କାହିଁରେ ବିମୁଖ ।

ପ୍ରସନ୍ନ ସଦା ତାର ଚିତ୍ତ । ମିଳୁ ନ ମିଳୁ କିଛି ବିତ୍ତ ॥
ପ୍ରେମେ ଉନ୍ମତ୍ତ ସଦା ଚଳେ । କର୍ମ୍ମ କରଇ ଯାହା ମିଳେ ॥
ଯେ କାଳେ ଯେମନ୍ତ ମିଳଇ । ଆନନ୍ଦେ ଉଦର ପୋଷଇ ॥
ନ ପାଇ ନ ହୁଏ ନିରାଶ । ସନ୍ତତ ମନରେ ସନ୍ତୋଷ ॥
ନିବୃତ୍ତି ମାର୍ଗେ ଯେ ଭ୍ରମଇ । ଏମନ୍ତେ ଦିନ ଚଳୁଥାଇ ॥

ସ୍ତ୍ରୀ—ଆଚ୍ଛା ପ୍ରବୃତ୍ତି ମାର୍ଗରେ ଯେଉଁମାନେ ଚଳନ୍ତି ସେମାନେ କଣ କରନ୍ତି ?

ସ୍ୱାମୀ—ସେମାନେ ବିଷୟ ବୃଦ୍ଧିରେ ମନ ବଳାନ୍ତି । କିପରି ଟଙ୍କା ହେବ, କିପରି ସମ୍ପତ୍ତି ବାଡ଼ି ବଢ଼ିବ, କିପରି କୋଠା ବାଡ଼ି ଘୋଡ଼ା ଗାଡ଼ି ଇତ୍ୟାଦି ଯାନବାହନ ବୃଦ୍ଧିହେବ, କିପରି ଭଲ ଖାଇବା, ଭଲ ପିନ୍ଧିବା, ରାଜ୍ୟ ସମ୍ପତ୍ତି ବଢ଼ିବ । ରଜା ମହାରଜା ହେବା ଏହି ବିଷୟ ବାସନା ଚରିତାର୍ଥ ପାଇଁ ଚୋରି ଡକାଇତି,ମଣିଷମାରି ଯୁଦ୍ଧ ଇତ୍ୟାଦି ନାନା ପ୍ରକାର ଉପାୟ ଅବଲମ୍ବନ କରିବା, ଆକାଶ ପାତାଳ, ଜଳ ସ୍ଥଳ, ସମୁଦ୍ର ଗିରିଆଦିରେ ଧନ ଆଶାରେ ବୁଲିବା ପ୍ରବୃତ୍ତିମାର୍ଗର କାର୍ଯ୍ୟ । କଣ କଲେ କି କର୍ମ୍ମ କଲେ, ଧନାଗମ ହେବ ଏହି ଚିନ୍ତା ତା ମନକୁ ଗ୍ରାସ କରେ । ନାନା ପ୍ରକାର ଶିଳ୍ପ ବାଣିଜ୍ୟ କୃଷି କରି ନାନା ଦେଶକୁ ନେଇ କ୍ରୟ ବିକ୍ରୟ କରି ଧନାର୍ଜନ କରିବା ତାହାର ପ୍ରଧାନ ଲକ୍ଷ୍ୟ । ଏଥିପାଇଁ ସେ ନାନା ବାଧାବିଘ୍ନ ଅତିକ୍ରମ କରେ, ଜୀବନକୁ ବିପଦସଙ୍କୁଳ କରି କାର୍ଯ୍ୟ କରିବାକୁ କୁଣ୍ଠିତ ହୁଏ ନାହିଁ ।

ଧନ ଅର୍ଜନେ ତାର ମନ । ଧନକୁ ଦେଖଇ ସ୍ୱପନ ॥
ଧନ ଅର୍ଜନେ ଡିଡିପରି । ଲଙ୍ଘଇ ପର୍ବତ ସାଗରି ॥
ସନ୍ତତ ଧନ ଧନ ହୋଇ । ତାହାର ଭୋକ ଶୋଷ ନାହିଁ ॥
ନାନା ପ୍ରକାର କରେ କର୍ମ୍ମ । ଧନ ଅର୍ଜନ ତାର ଧର୍ମ୍ମ ॥

ଧନର ଅଭିବୃଦ୍ଧି ହେଲେ । ମନରେ ସୁଖ ଲଭେ ହେଲେ ॥
ଧନହୁଁ ନ ଜାଣଇ ଆନ । ଧନରେ ସଦା ମନ ଧ୍ୟାନ ॥
ଧନଟି ପରମ ଦେବତା । ଧନେ ତାହାର ସଦା ଚିନ୍ତା ॥
ଧନ ସମ୍ପତ୍ତି ଯାର ଯେତେ । ସେ ବଡ଼ ଲୋକ ଏ ଜଗତେ ॥
ଯାହାର ଅଛି ଧନ ବଳ । ସକଳେ କିଙ୍କର ତାହାର ॥
ବସେ ସେ ଜଗତ ଉପରେ । ସକଳେ ବସିଥାନ୍ତି ତଳେ ॥
ଯାହାର ଅଛି ଧନ ବଳ । ସକଳ ଗୁଣ ତାଠି ଠୁଳ ॥
ସକଳେ ତାର ଗୁଣ ଗାଇ । ତା ମନ ତୋଷୁଥାନ୍ତି ଯାଇ ॥
ଅନେକ ପରକାର ସ୍ତୁତି । କରୁ ଯେ ଥାନ୍ତି ନିତି ନିତି ॥
ଯାହାର ସ୍ତୁତି ଶୁଣି ତୋଷ । ତାକୁ ଧନରେ କରେ ତୋଷ ॥
ଯେ ତାକୁ ତୋଷି ନ ପାରିଲା । ତା କୋପ ଅନଳେ ପଡ଼ିଲା ॥
ଘଟିବ ତାର ସର୍ବନାଶ । ସଂଶୟ ଏଥି ନାହିଁ ଲେଶ ॥
ଧନିକ ପାଶେ ଯେହୁ ଯାଏ । ଦୀନ ଭାବରେ ଠିଆ ହୁଏ ॥
ଦେଖି ଧନିକ ରୂପ ମୁଖ । ଶଙ୍କା ଦକାରେ ଲଭେ ଦୁଃଖ ॥
ଧନିକ ମଣେ ସବୁ ଲୋକ । ତାହାର ଦାସ ବା ସେବକ ॥
ତା ଆଜ୍ଞା ଯେହୁ ନ ପାଳିବ । କୋପାନଳରେ ଜଳିଯିବ ॥
ଧନିକ ଯା କହେ ସୁନ୍ଦର । ତା କଥା ସବୁଠାରୁ ସାର ॥
ବହୁତ କାନକୁହା ଲୋକ । କାନରେ କହନ୍ତି ଅନେକ ॥
ସେ କଥାମାନ ସତ ମଣି । ଆନକୁ କରିପାରେ ଖୁଣି ॥
ବଡ଼ ଉତ୍ତମ ସେହି ଲୋକ । ବତାନ୍ତି ନାନା ନକ ଠକ ॥
ଭଲ ଲୋକକୁ ହେଳ କରି । ଘଟାନ୍ତି ଏ ଗୁପ୍ତ ବଇରୀ ॥
ଭିନ ତୁଣ୍ଡରେ ଭଗବାନ । ଭୂତ ହୁଅନ୍ତି ଅକାରଣ ॥
ଦମ୍ଭ ଗରବ ତାର ଦେଖି । ଭଲ ଲୋକଟି ଯାଏ ଶଙ୍କି ॥
ଖଚ ଚୂଗୁଲି କଥାମାନ । ଶୁଣି ସନ୍ତୋଷ ତାର ମନ ॥

ଦମ୍ଭ ଦରପ ଅହଙ୍କାର । ପୂରି ରହିଛି ହୃଦେ ତାର ।
ମଣେ ସେ ନିଜକୁ ଈଶ୍ୱର । ପାପ ପୁଣ୍ୟକୁ ନାହିଁ ଡର ।
ପରର ଚକ୍ଷି ଶପି ଦେଲେ । ମନେ ଆନନ୍ଦ ଲଭେ ଭଲେ ।
ଶୁଣିଲେ ପୃଥିବୀ କମ୍ପଇ । କାକୁ ଖାତର ତାର ନାହିଁ ।
କାଳ ପଛରେ ଲୁଚିଥାଏ । ଦେଖି ଏ ନୃତ୍ୟ ହସୁଥାଏ ।
ଧନ ଦରବ ଯେତେ ଅଛି । ସଙ୍ଗେ ନ ନେବ ଅବା କିଛି ।
ସକଳ ଥିବ ତୁ ତ ଯିବୁ । ଦଣ୍ଡକେ କରିଦେବି କାବୁ ।
ବିଷୟ ବନ୍ଦୋବସ୍ତ ପାଇଁ । ସମୟ ଦେବ ନାହିଁ ମୁହିଁ ।
ଏକ୍ଷଣି ଯିବ ନାହିଁ ମନେ । ମତ୍ତ ହୋଇଛି ଏହୁ ଧନେ ।
ଧର୍ମ କର୍ମକୁ ସବୁ ଏଡ଼ି । ବିଷୟ ମଦେ ଅଛି ଜଡ଼ି ।
ମୋ ଦୂତମାନେ ଯେତେବେଳେ । ପହଞ୍ଚିବେ ବେଳକାଳେ ।
କଠୋର ଦଣ୍ଡ ଦେଇ ନେବେ । ଆପତ୍ତି ନ ଶୁଣିବେ କେବେ ।
ଆଖି ବୁଜିଲେ ଅନ୍ଧକାର । ଏ କଥା ନ କରେ ବିଚାର ।
ପ୍ରବୃତ୍ତି ମାର୍ଗେ ଏ ବେଭାର । ଲଗି ରହିଛି ସ୍ୱାର୍ଥ ଖେଳ ।
ସମଦରଶୀ ଯେଉଁ ନର । ଲୋକ ମଧ୍ୟରେ ସେହୁ ସାର ।
ବିଷୟେ ନୁହେ ଅସକତ । ଦଧିରେ ନବନୀତ ମତ ।
ସବୁରି ସଙ୍ଗେ ସଙ୍ଗ ହୋଇ । କାହାରି ସଙ୍ଗେ ନ ମିଶଇ ।
ଧନ ଅରଜ ଧର୍ମ କରେ । ପରକୁ ନ ପୀଡ଼ଇ ତିଳେ ।
ପର ଆପଣା ତାର ନାହିଁ । ସଭିଙ୍କି ସମାନ ଦେଖଇ ।
ନିର୍ମଳ ହୃଦ ଅଟେ ତାର । ନ ମଣେ ନିଜକୁ ଈଶ୍ୱର ।

# ୧୪ଶ ପରିଚ୍ଛେଦ

## ଜାତିଭେଦ

ସ୍ତ୍ରୀ—ହଇ ହେ, ସମସ୍ତେ କହୁଛନ୍ତି ଆମ ଦେଶରେ ଯେପରି ଜାତିଭେଦ ଅଛି ଅନ୍ୟାନ୍ୟ ଦେଶରେ ସେପରି ନାହିଁ । ଆମ ଦେଶରେ ଏପରି ଜାତିଭେଦ ହେଲା କାହିଁକି ? ଏପରି କରିବାରେ ଲାଭ କ୍ଷତି କଣ ? ମୁଁ ତ କିଛି ବୁଝିପାରୁ ନାହିଁ ?

ସ୍ୱାମୀ—ତୁମେ ତ ଦେଖିଛ ସବୁ ମଣିଷଙ୍କ ହାତରେ ସବୁ କାମ ହୁଏ ନାହିଁ । ଆପଣା ଗୁଣ ଅନୁସାରେ ଭିନ୍ନ ଭିନ୍ନ ଲୋକ ଭିନ୍ନଭିନ୍ନ କାମ କରନ୍ତି । ସମସ୍ତଙ୍କୁ କଣ ସବୁ କାମ ଆସେଇବ ? ଲୋକର ଗୁଣ ଯେପରି ଏକ ନୁହେଁ, ପ୍ରତ୍ୟେକର କର୍ମ ମଧ୍ୟ ଏକ ନୁହେ । ଏହିପରି ଭିନ୍ନ ଭିନ୍ନ କର୍ମ କରୁ କରୁ ଲୋକମାନଙ୍କର ନାମ ମଧ୍ୟ ଭିନ୍ନ ଭିନ୍ନ ହେଲା । ଯେ ଗୁଡ଼ରେ ନାନାପ୍ରକାର ମିଷ୍ଟାନ୍ନ ପ୍ରସ୍ତୁତ କଲା ତା ନାମ ହେଲା ଗୁଡ଼ିଆ । ତନ୍ତରେ ଯେ ଲୁଗା ବୁଣିଲା ତା ନାମ ହେଲା ତନ୍ତୀ । ଯେ ପାଟଦ୍ୱାରା ନାନାକାର୍ଯ୍ୟ କଲା ତା ନାମ ହେଲା ପାଟରା । ଯେ ଖଡ଼ୁ ତିଆରି କଲା ତା ନାମ ହେଲା ଖଡ଼ୁରା । ଯେ ଥୋଡ଼ ବଳଦରେ ବ୍ୟବସାୟ କଲା ତା ନାମ ହେଲା ଥୋଡ଼ଆ । ଯେ କାଚ ବ୍ୟବସାୟ କଲା ତା ନାମ କାଚରା । ଯେ ଫୁଲମାଳ ତିଆରି କଲା ସେ ମାଳି ଇତ୍ୟାଦି ଯେତେ ନାମ ଦେଖିବ ସବୁ ଗୋଟିଏ ଗୋଟିଏ କାମରୁ ଜନ୍ମିଛି । ଯେତେ ଲୋକ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ କାର୍ଯ୍ୟ କଲେ ସେମାନେ ଏକ ଶ୍ରେଣୀ ବା ଜାତିଭୁକ୍ତ ହେଲେ, ସେମାନେ ଗୋଟିଏ ଗୋଟିଏ ଗୋଷ୍ଠି ବାନ୍ଧି ଚଳିଲେ, ସେମାନଙ୍କ ମଧ୍ୟରେ ପରସ୍ପର ସ୍ନେହ ସହାନୁଭୂତି,

ପଂକ୍ତି ଭୋଜନ, ବିବାହ ସମ୍ବନ୍ଧ ଚଳିଲା । ଏହିପରି ଚତୁ ଚନ୍ତୁ ପ୍ରତ୍ୟେକ କର୍ମକୁ ନେଇ ଗୋଟିଏ ଗୋଟିଏ ଜାତି ହେଲା । ଯେ ଯାହାର କର୍ମ ନେଇ ଜୀବନ ବୃତ୍ତି ଚଳାଇଲେ । ପ୍ରତ୍ୟେକ ଜାତି ପ୍ରତ୍ୟେକ ଜାତି ଦ୍ୱାରା ଉପକୃତ ହୋଇ ଚଳିଲେ । କେହି କାହା କର୍ମ ଉପରେ ହସ୍ତକ୍ଷେପ କଲେ ନାହିଁ । ପ୍ରତ୍ୟେକ ଜାତିର କର୍ମ-ଦ୍ୱାରା ପ୍ରତ୍ୟେକ ଜାତି ଲାଭବାନ୍ ହେଲେ । ସମାଜ ଅତି ସୁଖ ସ୍ୱାଚ୍ଛନ୍ଦ୍ୟରେ ରହିଲା । ଅକର୍ମା ସମସ୍ୟା ରହିଲା ନାହିଁ । ସମସ୍ତେ ଯେ ଯାହା କର୍ମରେ ନିଯୁକ୍ତ ରହି ଖାଇପିଇ ସୁଖରେ କାଳ ଯାପନ କଲେ । ଅକର୍ମା ସମସ୍ୟା ସମାଧାନ ପାଇଁ ଏହା ପ୍ରକୃଷ୍ଟ ଉପାୟ । ଏହି ଉପାୟ ଉଦ୍ଭାବନ କରି ହିନ୍ଦୁମାନେ ଅକର୍ମା ସମସ୍ୟା ସମାଧାନ କରି ପାରିଥିଲେ । କାହାରି ଖାଦ୍ୟାଭାବ ନ ଥିଲା । ଦେଶ ସମୃଦ୍ଧି-ଶାଳୀ ଥିଲା । ଦେଶରେ ଏକତା ଥିଲା ।

ସ୍ତ୍ରୀ—ତେବେ ଜାତିଭେଦକୁ ଏବେ ଲୋକେ ଦୋଷ ଦେଉଛନ୍ତି କାହିଁକି ?

ସ୍ୱାମୀ—ଦୋଷ ଦେବାର ମଧ୍ୟ କାରଣ ଅଛି । ପୂର୍ବେ ବୃତ୍ତି ଭେଦରୁ ଜାତି ଭେଦ ହୋଇଥିଲା ସତ, କିନ୍ତୁ ସବୁ ଜାତି ମନେ କରୁଥିଲେ ଯେପରି ସେମାନେ ଗୋଟିଏ ପରିବାରଭୁକ୍ତ । ସବୁ ଜାତି ମଧ୍ୟରେ ପରସ୍ପର ସ୍ନେହ ସୌହାର୍ଦ୍ଦ୍ୟ ସହାନୁଭୂତି ଥିଲା । ପ୍ରତ୍ୟେକ ଜାତିର ସୁଖ ଦୁଃଖରେ ଅନ୍ୟ ଜାତିମାନେ ଭାଗୀ ହେଉଥିଲେ । କାହାରି ପ୍ରତି କାହାର ଘୃଣା ଭାବ ନ ଥିଲା । ପ୍ରତ୍ୟେକ ଜାତିର ପ୍ରତ୍ୟେକ ଜାତି ସହିତ ଭ୍ରାତୃଭାବ ଥିଲା । ପ୍ରତ୍ୟେକର ଆପଦ ବିପଦ ବେଳେ ଅନ୍ୟମାନେ ଅଣ୍ଟା ଭିଡ଼ି ସାହାଯ୍ୟ କରୁଥିଲେ । ବର୍ତ୍ତମାନ କାଳକ୍ରମେ ସେ ବନ୍ଧନ ଛିଣ୍ଡି ଯାଇଛି । ପ୍ରତ୍ୟେକ ଜାତି ପ୍ରତ୍ୟେକ ଜାତିଠାରୁ ଅଲଗା ହୋଇ ରହିଛନ୍ତି । ଅସ୍ପୃଶ୍ୟତା ଦୋଷ ଉତ୍କଟ

ଆକାର ଧାରଣ କରିଛି । ଶୂଦ୍ର ଛୁଇ ବ୍ରାହ୍ମଣ ଉପରେ ପଡ଼ିଲେ ସେ ଛୁଆଁ ହୋଇ ସ୍ନାନ କରୁଛି । ଉଚ୍ଚ ବର୍ଣ୍ଣ ଲୋକ ନୀଚ ବର୍ଣ୍ଣ ଲୋକଙ୍କୁ କୁକୁର ବିରାଡ଼ି ଅପେକ୍ଷା ଅତି ଦୀନ ହୀନ ମନେ କରୁଛନ୍ତି । ବରଂ କୁକୁର ସ୍ପୃଶ୍ୟ, ମାତ୍ର ମନୁଷ୍ୟ ଅସ୍ପୃଶ୍ୟ । ଧୋବା ଯେଉଁ ଲୁଗା ଧୋଇ କରି ଆଣେ ସେ ଲୁଗା ସ୍ପୃଶ୍ୟ, ମାତ୍ର ଧୋବା ଅସ୍ପୃଶ୍ୟ । ଏହିପରି କେତେଗୁଡ଼ାଏ ଆବର୍ଜନା ସମାଜ ମଧ୍ୟରେ ପ୍ରବେଶ କରିଛି ଏବଂ ଭ୍ରାତୃଭାବକୁ କଳଙ୍କିତ କରିଛି । ଯେଉଁ ବନ୍ଧନ ବଳରେ ଏ ଜାତି ଗୋଟିଏ ପରିବାର ପରି ଚଳୁଥିଲା, କାଳକ୍ରମେ ସେ ବନ୍ଧନ ଶିଥିଳ ହୋଇ ଛିଣ୍ଡି ଯିବାରୁ ଭେଦ କୀଟ ପ୍ରବେଶ କରି ଜାତିଟାକୁ ଛିନ୍ନ ଭିନ୍ନ କରିଛି ।

ସ୍ତ୍ରୀ—ଆଚ୍ଛା, ଏପରି ହେଲା କାହିଁକି ?

ସ୍ୱାମୀ—ସେଥିରେ ଅନେକ କଥା ଅଛି । କହି ବସିଲେ ମହାଭାରତ ହେବ । ଅସଂଖ୍ୟ କାରଣ ଏକାଠି ହୋଇ ଏ ପରିସ୍ଥିତି ଜନ୍ମିଛି । ଭାରତର ଅନେକ ଚିନ୍ତାଶୀଳ ଲୋକ ଏ କଥା ବୁଝୁଛନ୍ତି । ସମାଜକୁ ପୁଣି ଗଢ଼ିବାକୁ କ୍ଷୀଣ ଉଦ୍ୟମ ହେଉଛି, କିନ୍ତୁ ତାହା ଯଥେଷ୍ଟ ହେଉ ନାହିଁ । ସମାଜ ବଡ଼ ବିଶୃଙ୍ଖଳ ହୋଇଛି ! କାହା କଥା କେହି ମାନୁ ନାହିଁ । ଯେ ଯାହା ହାତରେ ଚଉଦପାଆ । କାହାଠାରେ କାହାର ବିଶ୍ୱାସ ନାହିଁ । ନାନା ଦଳ, ଗଣ୍ଡଗୋଳ, ସ୍ୱାର୍ଥ ଖେଳ ପୁରପଲ୍ଲୀରେ ପ୍ରବେଶ କରି ଛାରଖାର କରିଦେଉଛି । ସମାଜର ଉପର ସ୍ତରରେ ଯେଉଁମାନେ ମଞ୍ଚଧରି ବସିଛନ୍ତି ବୋଲି କହୁଛନ୍ତି ସେମାନଙ୍କ ଭିତରେ ମଧ୍ୟ ଏକମେଳ ଓ ଏକମତ ନାହିଁ । ଗାନ୍ଧିଜୀ ଡାକ ଦେଉଛନ୍ତି; କିନ୍ତୁ ତାଙ୍କ କଥା କାର୍ଯ୍ୟରେ କେହି କରୁ ନାହାନ୍ତି । ସେ ମଧ୍ୟ ଡାକ ଡାକ ଥକିଲେଣି । ଏହିପରି ଭାରତ

ଅବସ୍ଥା ସମୁଦ୍ରେ ଭ୍ରମଣଂ ତଥା । ଭଗବାନଙ୍କର କି ଇଚ୍ଛା କିଛି ଜଣା ପଡୁ ନାହିଁ ।

ସ୍ତ୍ରୀ—ସମାଜଟା ଏପରି ବିଶୃଙ୍ଖଳ ହେଲା କାହିଁକି ? ରାଜା କାହିଁକି ସୁଧାରୁ ନାହାନ୍ତି ? ଆଗେ ତ ରାଜାମାନେ ସମାଜର କର୍ଣ୍ଣଧାର ଥିଲେ ।

ସ୍ୱାମୀ—ଆହେ, ବର୍ତ୍ତମାନ ଭାରତ ଯେ ରାଜଚକ୍ରବର୍ତ୍ତୀ ସେ ତ ଖ୍ରୀଷ୍ଟଧର୍ମାବଲମ୍ବୀ । ସେ ତ ଆମ ଧର୍ମ୍ମ ସମାଜ ଉପରେ ହସ୍ତକ୍ଷେପ କରିବେ ନାହିଁ ବୋଲି କହି ଦେଇଛନ୍ତି । ଆମ ଧର୍ମ ଆମ ସମାଜକୁ ରକ୍ଷା କରିବା ପାଇଁ ସେ ଦାୟୀ ନୁହନ୍ତି । ତେଣୁ ଆମ ଧର୍ମ ଆମ ସମାଜକୁ ରକ୍ଷା କରିବା ପାଇଁ ଆମ୍ଭେମାନେ ଦାୟୀ । ଆମେ କରି-ପାରିବା କପରି ? କେହି କାହା କଥା ମାନୁ ନାହିଁ । ତେଣୁ ସମାଜ ସଂସ୍କାର ଧର୍ମରକ୍ଷାରେ ବିଶୃଙ୍ଖଳା ଘଟୁଛି । ଯାହା ମନ ଯାହା ହେଲା ସେ ସେ ବାଟରେ ଗଲା । ସମାଜର ଯେପରି ଶୃଙ୍ଖଳା ଥିଲା ସେ ସବୁ କ୍ରମେ ଭାଙ୍ଗି ଯାଉଛି । ଜଣେ କେହି କର୍ଣ୍ଣଧାର ନାହିଁ, ସମସ୍ତେ ଭୁଆଁ ବୁଲୁଛନ୍ତି । ସମାଜର ଅବସ୍ଥା ଦିନକୁ ଦିନ ଅତି ଶୋଚନୀୟ ହୋଇଛି । ଆଚ୍ଛା ଆଜି ଏତିକି ଥାଉ ।



## ୧୭ଶ ପରିଚ୍ଛେଦ

ସ୍ୱାମୀ—ହଇହେ, ତମେ ଆଜି କେଉଁଠାକୁ ଯାଇଥିଲ କି ?

ସ୍ତ୍ରୀ—ଯାଇଥିଲି ପରା ଅନ୍ନପୂର୍ଣ୍ଣା ନାଟକାଭିନୟ ଦେଖି । ତମେ ଟିକିଏ ଯାଉନାହଁ ? ଭଲ ନାଟକ କରୁଛନ୍ତି ମ ।

ସ୍ୱାମୀ—ଆଉ ଦେଖୁଛି ଘରେ ରହି ହେବ ନାହିଁ । ଦୁଇ ଦୁଇଟା ସବାକ ଚଳଚ୍ଚିତ୍ର ଦୃଶ୍ୟ ଦେଖାଇବା ପାଇଁ ଦୁଇଟା ଦଳ

ଆସି ଉପସ୍ଥିତ ଅଛନ୍ତି । ଗୋଟାଏ ତ ସ୍ଥାୟୀ ଭାବରେ ଏଠି ଘରକରି ଅଛି, ଆଜ ଗୋଟାଏ ଅସ୍ଥାୟୀ ଭାବରେ ଅଛି । ଏମାନଙ୍କ ସାଥିକି ପୁଣି ଗୋଟାଏ ନାଟକ ଦଳ ଆସିଲେ । କାହାର କେତେ ପଇସା ଅଛି ଯେ ନିତି ଏ ସବୁ ଦେଖିବ ।

ସ୍ତ୍ରୀ—ତମେ ପ୍ରା କହୁଛ ସିନା ଶହ ଶହ ଲୋକ ତ ପୁଣି ଯାଉଛନ୍ତି ! ମଣିଷର ଆଖି ଅଛି ଦେଖିବ କାନ ଅଛି ଶୁଣିବ । ଥରେ ଦେଖିଲେ କଣ ମନ ବୋଧ ହେବ ! ନିତି ନିତି ଦେଖିବାକୁ ମନ ହେବ । କେତେ ଲୋକ ପିଇବା ପାଣି ବନ୍ଧା ପକାଇ ଦେଖିବାକୁ ଯାଉଛନ୍ତି ।

ସ୍ୱାମୀ—ଆହେ, ସେ ତ ଗୋଟାଏ ନିଶା । ଥରେ ଢଥର ନିଶା ଖାଇଲେ ଯେପରି ଲୋକେ ଛାଡ଼ିପାରନ୍ତି ନାହିଁ ସେହିପରି ଏ ସବୁ ରଙ୍ଗ ରହସ୍ୟ ଦେଖିବାକୁ ଯେ ମନ ବଳାଇବ ସେ ତାହା ଛାଡ଼ି ପାରିବ ନାହିଁ, ନିତି ନିତି ଦେଖିବାକୁ ମନ ହେବ ହିଁ ହେବ ।

ସ୍ତ୍ରୀ—ନାଟକ ଯେବେ ଅଭିନୀତ ନ ହେବ ତେବେ ଲୋକେ ନାଟକ ଲେଖିବେ ନାହିଁ । ନାଟକାଭିନୟ ଯେବେ ଲୋକେ ନ ଦେଖିବେ ତେବେ ଅଭିନୟ ହେବ କାହିଁକି ? ସେମାନେ ଯେବେ ପଇସା ନ ନେବେ ତେବେ ଚଳିବେ କିପରି ? ଏ ସବୁ କଥା ତ ବିଚାର କରିବା ଆବଶ୍ୟକ ।

ସ୍ୱାମୀ—ନୃତ୍ୟ କଳା, ଗୀତବାଦ୍ୟ କଳା, ଚିତ୍ରକଳା ଏ ସବୁର ଅଭିବୃଦ୍ଧି ଆବଶ୍ୟକ । ଏ ସବୁର ଅଭିବୃଦ୍ଧି ଲାଗି ଚର୍ଚ୍ଚା ଆବଶ୍ୟକ । ଏ ସବୁର ଚର୍ଚ୍ଚା ଲାଗି ରଙ୍ଗାଳୟ ପ୍ରଭୃତି ଆବଶ୍ୟକ । କିନ୍ତୁ ସବୁ କଥାର ଗୋଟିଏ ସୀମା ଅଛି । ନାଟକ ଦୃଶ୍ୟକାବ୍ୟ । ନାଟକ ଅଭିନୀତ ନ ହେଲେ ମାଧୁର୍ଯ୍ୟ, ଚରିତ୍ର ଚିତ୍ରଣ ଜଣା ପଡ଼ିବ ନାହିଁ । ତେବେ ଏ ସବୁର ଭଲ ଗୁଣ ଅଛି ଏବଂ ମନ୍ଦ ଗୁଣ ଅଛି ।

ଏ ସବୁରୁ ଶିକ୍ଷା କରିବାର ଅନେକ ଭଲ କଥା ଅଛି ପୁଣି ଅନେକ ମନ୍ଦ କଥା ମଧ୍ୟ ଅଛି । କିଏ ସେଥିରୁ ଭଲ ଆଦର୍ଶ ଶିଖି ଘରକୁ ଫେରୁଛି କିଏ ବା ମନ୍ଦ ଆଦର୍ଶ ନେଇ ଘରକୁ ଫେରୁଛି । ତୁମ୍ଭେ ଜାଣ ଭଲ ଆଦର୍ଶ ଅପେକ୍ଷା ଲୋକେ ମନ୍ଦ ଆଦର୍ଶକୁ ଚଟ୍‌କରି ଧରନ୍ତି । ସେହି କାରଣରୁ ସଦା ସର୍ବଦା ରଙ୍ଗ ରହସ୍ୟରେ ମାତିଲେ ମନ ବିକ୍ଷିପ୍ତ ହୁଏ ଓ ସବୁବେଳେ ସେହି କଥା ଲେଉଟେ ।

ସ୍ତ୍ରୀ—ରଙ୍ଗାଳୟରେ ଭଗବାନଙ୍କ ଚରିତ ଅଭିନୀତ ହୁଏ । ତାକୁ ଦେଖିଲେ ଶୁଣିଲେ କଣ କିଛି ଲାଭ ନାହିଁ ?

ସ୍ୱାମୀ—ସେ ସବୁ ଦେଖିଲେ ଶୁଣିଲେ ଲାଭ ଅଛି ସତ, କିନ୍ତୁ ମନଟାକୁ ସେହିପରି ସଂଯତ କଲେ ତ ହେବ । ମନ ଯେବେ ଲାଗିଯିବ ତେବେ ତ ଲାଭ ଅଛି । ମନ୍ଦ କଥାରୁ ମଧ୍ୟ ଅନେକ ଭଲକଥା ହୁଏ, ଶୁଣିଥିବ ତ ବିଲ୍ୱମଙ୍ଗଳଙ୍କ କଥା ।

ସ୍ତ୍ରୀ—ବିଲ୍ୱମଙ୍ଗଳଙ୍କ କଥା କଣ ?

ସ୍ୱାମୀ—ଦେଖ, ବିଲ୍ୱମଙ୍ଗଳ ନାମରେ ଜଣେ ବ୍ରାହ୍ମଣ ଯୁବକ ଥିଲେ । ସେ ଗୋଟିଏ ଜମିଦାର ପିଲା । ସେ ଗୋଟିଏ ବେଶ୍ୟା ସଙ୍ଗରେ ଆସକ୍ତ ହୋଇ ପଡ଼ିଲେ । ବେଶ୍ୟାର ନାମ ଚିନ୍ତାମଣି । ବିଲ୍ୱମଙ୍ଗଳ ଚିନ୍ତାମଣି ଛଡ଼ା ସଂସାରରେ ଆଉ କିଛି ଜାଣୁ ନ ଥିଲେ । ତାଙ୍କ ନାମ ଜ୍ଞାନ ଧ୍ୟାନ ସବୁ ତାହାଠାରେ । ତା ପ୍ରେମରେ ଏକପ୍ରକାର ପାଗଳ ହେଲେ । ସେ ପ୍ରତିଦିନ ତ ଘରକୁ ଯାନ୍ତି । ଶୟନ, ସ୍ୱପନ, ଜାଗରଣ ସବୁ ଅବସ୍ଥାରେ ସେଇ ଚିନ୍ତାମଣି ବ୍ୟତୀତ ସେ ଅନ୍ୟ କିଛି ଜାଣନ୍ତି ନାହିଁ । ଏହିପରି ଚାଲୁଥାନ୍ତି । ଦିନେ ବାପାଙ୍କ ଶ୍ରାଦ୍ଧ ଦିନ ପଡ଼ିଲା । ଶ୍ରାଦ୍ଧ କରି ବସିଲେ, କିନ୍ତୁ ଯାହା କଲେ ଯାହା ବୋଇଲେ ସବୁ ଚିନ୍ତାମଣି । ଚିନ୍ତାମଣି ପ୍ରେମରେ ସେ ତନ୍ମୟ । ଯେ କୌଣସି ପ୍ରକାରେ ଅଧା-

ଖଣ୍ଡିଆ ଘରେ ଶ୍ରାଦ୍ଧ ସରିଲା । ବ୍ରାହ୍ମଣ ଭୋଜନ ପ୍ରଭୃତି କାଏ ଚରୁରେ, କେମନ୍ତ ଚନ୍ତାମଣି ଘରକୁ ପଳାଇବେ ସେହି ଚନ୍ତା । ଶ୍ରାଦ୍ଧଦିନ ଯାହା କିଛି ଭଲ ଖାଦ୍ୟ ପଦାର୍ଥ ହୋଇଥିଲା ସେଥିରୁ କିଛି ବାଛବୁଛି ନ ଖାଇ ନ ପିଇ ଚନ୍ତାମଣି ଘରକୁ ଗଲେ । ଯାଇ ଯାଇ ନଦୀକୂଳେ ପହଞ୍ଚିଲେ । ନଦୀ ବଢ଼ିଛି ! ରାତ ହେଲାଣି । ଡଙ୍ଗା ନାହିଁ, ନାଉରୀ ନାହିଁ, ଘୋର ଅନ୍ଧକାର । ବର୍ଷା ତୋଫାନ, ବିଜୁଳି ଘଡ଼ଘଡ଼ି । ନଈରେ ସୁଅ ପଡ଼ିଛି ଯେ ହାତମୁଣ୍ଡ ଛୁଞ୍ଚିଯିବ । ଏହିପରି ସମୟରେ ବିଲ୍ୱମଙ୍ଗଳ ନଈକୂଳେ ହାଜର । ସେ କଣ କରିଥିବେ କହିଲ ?

ସ୍ତ୍ରୀ—ସେ ଘରକୁ ଫେରି ଆସିଥିବେ ଆଉ ଏ ଅସମୟରେ କଣ କରିଥିବେ ?

ସ୍ୱାମୀ—ଚନ୍ତାମଣିଙ୍କ ଭନଯାକ ନ ଦେଖି ଯେ ପ୍ରେମରେ ଉନ୍ମତ୍ତ ହୋଇ ଦଉଡ଼ ଯାଇଛି ସେ କଣ ଫେରି ଆସିପାରିବ ? ସେ ଫେରିଲେ ନାହିଁ । ନଈରେ ପହଁରି ଆର ପାରିକି ଯିବାପାଇଁ ଡେଇଁ ପଡ଼ିଲେ । ନିଜ ପ୍ରାଣ ଅପେକ୍ଷା ଚନ୍ତାମଣି ସ୍ନେହ ଅଧିକ । ନଈକି ଡେଇଁ ପହଁରି ଗଲେ, ଗୋଟାଏ ମୃଦାର ଭସି ଯାଉଥିଲା । ତାକୁ ଗୋଟାଏ କାଠ ମନେ କରି ଧରି ପକାଇ କୁଣ୍ଢାଇ ଆର ପାରିକି ଗଲେ । ମୃଦାରର ସଡ଼ା ପଚ୍ଚ ମାଂସ ତାଙ୍କ ଦେହରେ ଲାଗି ଦେହ ଦୁର୍ଗନ୍ଧମୟ ହୋଇଗଲା । କିନ୍ତୁ ତାଙ୍କର ସେ ଜ୍ଞାନ ନାହିଁ । ସେ ଆରପାରିରେ ପହଞ୍ଚି ବିନ୍ଦୁବୁଡ଼ ଯାଇ ଚନ୍ତାମଣି ଘରେ ପହଞ୍ଚିଲେ । ରାତି ଅଧ ହେଲାଣି । ଚନ୍ତାମଣି ଖାଇପିଇ କବାଟ କିଳା ଦେଇ ଶୋଇଲାଣି । ଘର ପାଖରେ ଯିନା ପହଞ୍ଚିଲେ; ଘର ଭିତରକୁ ଯିବେ କିପରି ? ଡାକ ପକାଇଲେ କେହି ଶୁଣିଲେ ନାହିଁ, କଣ କରିବେ ? ଘର ଚାରିପାଖଯାକ ବୁଲିଲେ

କିଛି ସନ୍ତା ପାଇଲେ ନାହିଁ । କାନ୍ଥପାଖ ଦେଖିଲେ ଗୋଟିଏ ସାପ ଗାତଭିତରକୁ ମୁହଁ ଅଛି, ବାହାରକୁ ଲାଞ୍ଜଟା ବାହାରିଛି । ମନେ ଭାବିଲେ ସେ ଗୋଟାଏ ଦଉଡ଼ି । ତାକୁ ଧରି ପାଚିରି ଉପରକୁ ଚଢ଼ିଗଲେ, ପାଚିରି ଉପରୁ ତଳକୁ ଡେଇଁ ପଡ଼ିଲେ, ନାଳରେ ଦୁମ୍ କରି ପଡ଼ିଲେ । ପଙ୍କରେ ଲଟରପଟର ହୋଇପଡ଼ିଲେ, ଅଜ୍ଞାନ ହୋଇ-ଗଲେ । ଚିନ୍ତାମଣୀର ଜଣେ ଦାସୀ ଥିଲା । ସେ ପଡ଼ିବା ଶବ୍ଦ ଶୁଣି ଉଠିଲା । ମନେ କଲା କି ଚୋର ପଶିଛି । ଦୀପ ନେଇ ଦେଖିଲା । ଲୋକଟା କାଦୁଅ ପଙ୍କରେ ଲଟପଟ ହୋଇ ପଡ଼ିଛି । ଚିହ୍ନିପାରିଲା ନାହିଁ । ଚୋର ଚୋର ବୋଲି ଡାକ ପକାଇଲା । ଚିନ୍ତାମଣୀର ନିଦ ଭାଙ୍ଗିଲା । ଚିନ୍ତାମଣୀ ଆସି ଦୀପ ନେଇ ଦେଖିଲା । କେତେବେଳକେ ଚିହ୍ନିଲା । ଦାସୀକି କହିଲା, ଆଲୋ ସେ ଚୋର ନୁହେଁ, ଏ ସେହି । ଦାସୀକି କହିଲା ପାଣି ଆଣି ଧୋଇଦେ । ବିଲ୍ୱମଙ୍ଗଳ ଚେତା ପାଇ କହିଲା, "ଚିନ୍ତାମଣୀ ଚିନ୍ତାମଣୀ, ପାଣି । ଦାସୀ ପାଣି ଆଣି ଦେଲା, ଧୋଇଧାଇ ହୋଇ ଚିନ୍ତାମଣୀକି ସକଳ ବୃତ୍ତାନ୍ତ କହିଲା । ଚିନ୍ତାମଣୀ ପଚାରିଲା, "ପାଚିରି ଉପରକୁ ଉଠିଲ କିପରି ?" ବିଲ୍ୱମଙ୍ଗଳ କହିଲେ, "କାହିଁକି ଚିନ୍ତାମଣୀ । ତୁ ତ ଦଉଡ଼ି ପକାଇ ଦେଇଥିଲୁ, ତାକୁ ଧରି ଉଠିଲି । ଚିନ୍ତାମଣୀ ଶୁଣି ଅବାକ୍ । ମୁଁ ଦଉଡ଼ି ପକାଇଥିଲି, ଚାଲ ଦେଖିବା ! ଦୀପ ନେଇ ଗଲେ ଦେଖିଲେ, ସାପ । ଚିନ୍ତାମଣୀର ବାକ୍ୟ ସ୍ଫୁରିଲା ନାହିଁ । ଚିନ୍ତାମଣୀ ଭାବିଲା—ଏ ଲୋକଟା କଣ ପାଗଳ !

ସ୍ତ୍ରୀ—ଚିନ୍ତାମଣୀ ପାଇଁ ସେ ଏତେ ହୀନ ଅବସ୍ଥା ହେଲେ, ଚିନ୍ତାମଣୀର ତାଙ୍କୁ ଦେଖି ଦୟା ହେଲା ନାହିଁ । ସେ ପୁଣି କହିଲା ପାଗଳ ? ଯାହା ଲାଗି କଲି ଚୋରି, ସେହି ବୋଲେ ଚୋର !

ସ୍ୱାମୀ—ଆହେ, ଖାଲି କଣ ପାଗଳ ବୋଲି କହିଲା ? ତିରସ୍କାର କରି କହିଲା, "ଦେଖ, ମୁଁ ଘୃଣି ବେଶ୍ୟା । ମୋଠାରେ

ଯେପରି ମନ ଧ୍ୟାନ ଦେଇଛୁ, ସେହିପରି ମନ ଧ୍ୟାନ ଭଗବାନଙ୍କ-ଠାରେ ଦେଇଥିଲେ ତୁ ଭଗବାନଙ୍କ ସାକ୍ଷାତ ପାଇ ସାରନ୍ତୁଣି । ଛାର ବେଶ୍ୟାଠାରେ ମନ ଦେଇ ରାତି ନାହିଁ, ଦିନ ନାହିଁ, ବର୍ଷା ନାହିଁ, ତୋଫାନ ନାହିଁ, ମୃଦାର ନାହିଁ, ସାପ ନାହିଁ, ନଳା ପଙ୍କ ନାହିଁ ଏ ଅବସ୍ଥାରେ ଆସି ପଡ଼ିଲୁ, ଧିକ୍ ତୋର ଜୀବନ ! ତୁ ପୁରୁଷ ପୁଅ, ତୋ ଲଜ୍ଜା ଶ୍ରମ ନାହିଁ ? ଛି ଛି—

ସ୍ତ୍ରୀ—ବିଲ୍ୱମଙ୍ଗଳ ଏହା ଶୁଣି କଣ କଲେ ?

ସ୍ୱାମୀ—ବିଲ୍ୱମଙ୍ଗଳଙ୍କର ଚୈତନ୍ୟ ହେଲା । ଚିନ୍ତାମଣୀର ତିରସ୍କାର ତାଙ୍କ ହୃଦୟରେ ଗଭୀର ଚରି ଗଲଗଲା । ସେ ତିରସ୍କାରକୁ ପୁରସ୍କାର ବୋଲି ମନେକଲେ । କହିଲେ ଚିନ୍ତାମଣି ! ଚିନ୍ତାମଣି ! ଚିନ୍ତାମଣି ! ସତ କହିଲୁ । ତୁ ଆଜଠାରୁ ମୋର ଗୁରୁ ହେଲୁ । ମୁଁ ଯାଉଛି ଚିନ୍ତାମଣୀ । ଏହା କହି ବାହାରିଗଲେ । ଯେଉଁ ମନ ଚିନ୍ତାମଣୀଠାରେ ଥିଲା ସେ ମନ ଯାଇ ଭଗବାନଙ୍କ ପାଦପଦ୍ମରେ ଲାଗିଲା । ସେ ପ୍ରକୃତ ଚିନ୍ତାମଣୀକି ଖୋଜିଲେ । ଗୃହ ତ୍ୟାଗକରି ବୃନ୍ଦାବନ ଯିବେ ବୋଲି ଯାତ୍ରାକଲେ । ଯାଉଁ ଯାଉଁ ବାଟରେ ଆଉ ଗୋଟିଏ ଘଟଣା ଘଟିଲା । ପ୍ରବୃତ୍ତି ତ ମରି ନାହିଁ । ବାଟରେ ଦେଖିଲେ ଜଣେ ମହାଜନ ଘର ସ୍ତ୍ରୀ କୂଅରୁ ପାଣି କାଢ଼ୁଛି । ସ୍ତ୍ରୀଟି ପରମା ସୁନ୍ଦରୀ । ତା ଉପରେ ବିଲ୍ୱମଙ୍ଗଳର ଦୃଷ୍ଟି ପଡ଼ିଲା । ମନ ପୁଣି ତା ଆଡ଼କୁ ଦଉଡ଼ିଲା । କଣ କରିବେ । ବାସନା କପରି ଚରିତାର୍ଥ କରିବେ । ବହୁତ ଚିନ୍ତା କରି ମହାଜନ ଦ୍ୱାରେ ଯାଇଁ ଉପସ୍ଥିତ ହେଲେ । ମହାଜନ ବ୍ରାହ୍ମଣ ଅତିଥି ଦ୍ୱାରେ ଦେଖି ଭାରି ଆପ୍ୟାୟିତ ହେଲା । ଅତିଥି ସତ୍କାର କଲା । ଅତିଥି କହିଲେ, ଯାହା ମାଗିବି ତାହା ଦେବାକୁ ସତ୍ୟ କଲେ ଅତିଥି ସତ୍କାର ଗ୍ରହଣ

କରିବେ । ମହାଜନ ବିଚାର ସତ୍ୟ ଭଳି କହିଲେ—ଅତିଥି ସ୍ୱୟଂ ନାରାୟଣ ବୋଲି ତାର ବିଶ୍ୱାସ । ଯାହା ମାଗିବ ସେ ତାହା ଅମ୍ଳାନ ବଦନରେ ଦେବେ । ବିଲ୍ୱମଙ୍ଗଳ ତାଙ୍କ ମନକଥା ପ୍ରକାଶ କଲେ । ମହାଜନ ସତ୍ୟ କରିଛି । ଅମ୍ଳାନ ବଦନରେ ରାଜି ହେଲା । ତତ୍-କ୍ଷଣାତ୍ ଯାଇଁ ସ୍ତ୍ରୀକି ସବୁ ଘଟନା କହିଲା । ସ୍ତ୍ରୀ କହିଲା ସେ ପତିବ୍ରତା ସ୍ତ୍ରୀ । ପତି ତାର ଧର୍ମ, ପତି ତାର କର୍ମ । ପତି ଯାହା ଆଜ୍ଞା ଦେବେ ଧର୍ମାଧର୍ମ ବିଚାର ନ କରି ସେ ଅବଶ୍ୟ ପାଳନ କରିବ । ମହାଜନ ଏ କଥା କହି ବ୍ରାହ୍ମଣର ଭୋଜନ ଭଜନ ସବୁ ଶେଷ କରାଇଲା । ବ୍ରାହ୍ମଣକୁ ନେଇ ଆପଣା ଶୋଇବା ଘରେ ସ୍ତ୍ରୀ ପାଖେ ଛାଡିଦେଇ ବାହାରି ଆସିଲା । ସ୍ତ୍ରୀ ବେଶଭୂଷା ହୋଇ ଖଟ ଉପରେ ବସିଛି । ବ୍ରାହ୍ମଣର ହିତାହିତର ଏଠାରେ ଚୈତନ୍ୟ ହେଲା ।

ସ୍ତ୍ରୀ—ବିଲ୍ୱମଙ୍ଗଳ କଣ କଲେ ମ ? ସେ କଣ ଖଟ ଉପରକୁ ଗଲେ ?

ସ୍ୱାମୀ—ନାହିଁ, ଯାଇ ପାରିଲେ ନାହିଁ । ମନରେ ତାଙ୍କର ଭାବାନ୍ତର ହେଲା । ଭାବିଲେ "ଓଃ, ମୁଁ କି ପିଶାଚ ! ମହାଜନ କେଡ଼େ ସାଧୂଲୋକ । ସତ୍ୟରକ୍ଷା ପାଇଁ ସେ କଣ ନ କଲା ! ତାର ଧର୍ମପତ୍ନୀ ପାଖକୁ ମତେ ନିର୍ମଳ ଅନ୍ତଃକରଣରେ ପଠାଇ ଦେଲା । ମୁଁ ଏଡ଼େ ପାପିଷ୍ଠ ଯେ ଏ ଘୋର ମହାପାତକ କରିବି । ନା, ଏ କଥା କରିବି ନାହିଁ । ଏ ଆଖି ଦୁଇଟା ମୋତେ ସର୍ବନାଶ ପଥକୁ ନେଇ ଯାଉଛନ୍ତି । ଏ ଆଖି ମୋର ପରମ ଶତ୍ରୁ । ଆଖି ଥିବାରୁ ସିନା ଏ ସ୍ତ୍ରୀ ଉପରେ ନଜର ପଡ଼ିଲା । ଆଜି ଏ ଆଖିକି ବିନାଶ କରିବି । ଏପରି ମନେ ଭାବି କହିଲା, ମା ! ମୁଁ ଆଉ ଖଟ ଉପରକୁ ଯିବି ନାହିଁ । ତୁମ ମଥାର କଣ୍ଟା ଦିଟା ମତେ ଦିଅ ତ ? ମୋର ଏହି ପ୍ରାର୍ଥନା ପୂର୍ଣ୍ଣ କର ।

ସ୍ତ୍ରୀ ବଡ଼ିର ତାଙ୍କ ମନକଥା କିଛି ବୁଝିପାରିଲା ନାହିଁ, ମୁଣ୍ଡବନ୍ଧା କଣ୍ଟା ବାହାର କରିଦେଲା । ବିଲ୍ୱମଙ୍ଗଳ କଣ୍ଟା ଦୁଇଟି ଆଣି ଆଖି ଦୁଇଟିରେ ମାରି ଫୁଟାଇଦେଲେ । ଆଖିରୁ ରକ୍ତ ବହିଗଲା, ବ୍ରାହ୍ମଣ ଅନ୍ଧ ହୋଇଗଲା । ଏ ଘଟଣା ଦେଖି ସ୍ତ୍ରୀଟି ଅବାକ୍ । ସ୍ୱାମୀକୁ ଡାକ ପକାଇଲା । ମହାଜନ ଦେଖି ଅବାକ୍ ହେଲା । ସକଳ ଘଟଣା ବୁଝି ପାରିଲା । ବିଲ୍ୱମଙ୍ଗଳ ଅନ୍ଧ ହୋଇ ଆପଣା ରାସ୍ତାରେ ଗଲେ । ଭଗବାନଙ୍କର କୃପାହେଲା । ଶେଷରେ ତାଙ୍କୁ ଚକ୍ଷୁ ଦାନ ଦେଲେ, ସେ ଯୁଗଳ ମୂର୍ତ୍ତି ଦର୍ଶନ କଲେ । ଚିନ୍ତାମଣି ମଧ୍ୟ ଘରଦ୍ୱାର ଛାଡ଼ି ମାତା ହୋଇ ବୃନ୍ଦାବନରେ ଯାଇ ପହଞ୍ଚିଲା । ମହାଜନ, ସ୍ତ୍ରୀ ସହିତ ଯାଇ ସେଠାରେ ପହଞ୍ଚିଲା । ସମସ୍ତେ ଭଗବାନ ଦର୍ଶନ ପାଇଲେ । ଏଥିପାଇଁ କହନ୍ତି—"ଏହି ମନ ଯେବେ ପ୍ରସନ୍ନ ହୁଅଇ ହୁଅଇ ଅଭୟ ବର, ଏହି ମନ ଯେବେ ଅପ୍ରସନ୍ନ ହୁଏ କରୁଥାଏ ହରବର ।" ଉଦ୍ଧବ ଯେତେବେଳେ ଭଗବାନଙ୍କ ତତ୍ତ୍ୱଜ୍ଞାନ ବିଷୟ ପଚାରିଲେ ସେ କହିଲେ—"ମନ ତୋହର ନିଜ ଗୁରୁ । ଉଦ୍ଧବ କେତେ ତୁ ପଚାରୁ ।" ଆପଣା ମନକୁ ଆୟତ୍ତ କରି ନ ପାରିଲେ କିଛି ହେବ ନାହିଁ । ମନ ବଡ଼ ଚଗଲା, ପାଗଲା, ବଗୁଲିଆ । ଯେତେ ବିଷୟ ଆଣି ତାକୁ ଚଖାଇବ ତାର ପ୍ରବୃତ୍ତି ତେବେ ବଢ଼ିବ, ବିଳାସ ବାସନା ତେତେ ଜନ୍ମିବ । ବିଲ୍ୱମଙ୍ଗଳ ପରି ସାଧକ ହେଲେ ସିନା ଭଗବାନଙ୍କ ଦର୍ଶନ ମିଳିବ, ନୋହିଲେ ଭୁଆଁ ବୁଲୁଥିବ । ତେଣୁ କହୁଛି ବୁଝିସୁଝି କାର୍ଯ୍ୟ ନ କଲେ ଅପଥରେ ପଥିକ ହେବ । ଆଜି ଏତିକି ଥାଉ ।

---

# ସପ୍ତଦଶ ପରିଚ୍ଛେଦ

## ଅତି ଲେମ୍ବୁ ଚିପୁଡ଼ିଲେ ପିତା

ସ୍ତ୍ରୀ—ଦେଖିଲଣି, କଳାହାଣ୍ଡିଆ ମେଘ କିପରି ଘୋଟି ଆସୁଛି । ବିଜୁଳି ଘନ ଘନ ମାରୁଛି । ଘଡ଼ଘଡ଼ି ଘୋର ଘର୍ଘର ନାଦରେ ପୃଥିବୀକି ଫଟାଇ ଦେଉଛି । ମୂଷଳ ଧାରରେ ବର୍ଷାହୋଇ ଏହିକ୍ଷଣି ଜଳପୂର୍ଣ୍ଣ କରିଦେବ । ଆହା ଏତେବେଳେ ଧନ ମୋର କେଉଁଠି ଥିବ, କଅଣ କରୁଥିବ ! ମୁଁ ହେଲେ ତା ପାଖେ ଥାନ୍ତି । ମତେ କିଆଁ ଲଗା ମରଣ ହେଲା ନାହିଁ । କଣ ଗାଳି ହୋଇଛି ଯେ ଦାଣ୍ଡ଼ ଯିବି, କଣ କରିବି, ମନୁଷ୍ଟା ତ ଜମା ଥୟ ହେଉନାହିଁ । ହଇହେ ; ଚାରି କଲ, ପୁଅ ଖବର ଦେବ କିପରି ଅଛି । ଶୁଣିଲେ ଏ ପୋଡ଼ା ପ୍ରାଣ ଶୀତଳ ହେବ ।

ସ୍ୱାମୀ—ଆହେ ଅତି ଲେମ୍ବୁ ଚିପୁଡ଼ିଲେ ପିତା କଥାଟା ଜାଣ । ଲେମ୍ବୁ ଖୁବ ଭଲ ଜିନିଷ । ଲେମ୍ବୁରସ ସଙ୍ଗେ ଲୁଣ ଦେଇ ଖାଇଲେ ଅନେକ ପେଟ ବେମାରି ଭଲ ହୋଇଯାଏ, ଅଜୀର୍ଣ୍ଣ ନାଶ କରେ, ଉଦରାମୟ, ଆମାଶୟ ନାଶକରେ । କିନ୍ତୁ ଲେମ୍ବୁଟାକୁ ଅତି ବେଶି ଚିପୁଡ଼ି ଦେଲେ ଖୁବ ପିତା ଲଗେ, ଖାଇ ହୁଏ ନାହିଁ । ଏଥିଲାଗି କଥାରେ କହନ୍ତି—"ସର୍ବମତ୍ୟନ୍ତଗର୍ହିତଂ ।" ଅର୍ଥାତ୍ ଅତିଶୟ ଯାହା କରିବ ସେଇଟା ହିତ ନ ହୋଇ ଅହିତ ହୁଏ । ସବୁ କଥାର ପରିମାଣ ଅଛି । ସେ ସୀମା ଡେଇଁ ପଡ଼ିଲେ ହିତକଥା ଅହିତ ହୁଏ । ଅତି ବେଶି ଖାଇବା, ଅତି ବେଶି ଶୋଇବା, ଅତି ବେଶି ଦାନ ଦେବା, ଅତି ବେଶି ଗର୍ବ କରିବା, ଅତି ବେଶି ଅହଂକାର କରିବା, ଅତି ବେଶି ସ୍ନେହ କରିବା ଭଲ ନୁହେଁ ।

ସ୍ତ୍ରୀ—ମା ପୁଅକୁ ସ୍ନେହ ନ କରିବ କପରି ? ଯାହାକୁ ଦଶମାସ ଦଶଦିନ ଗର୍ଭରେ ଧରିଛି, ଯାହାପାଇଁ କେତେ ପିତା ପାଣି ଖାଇଛି, ତାକୁ ସ୍ନେହ କରିବ ନାହିଁ ? କପରି ତମ ଜିଭ ନେଉଟୁଛି ମ, ଏ କଥା କହିବାକୁ ।

ସ୍ୱାମୀ—ଆହେ ସ୍ନେହ କରିବ ନାହିଁ ବୋଲି କିଏ କହିଲା ? ସ୍ନେହ କରିବାଟା ତ ସ୍ୱାଭାବିକ । ପଶୁପକ୍ଷୀ ତ ତାଙ୍କ ପିଲାଙ୍କୁ ସ୍ନେହ କରୁଛନ୍ତି, ମଣିଷ ସ୍ନେହ କରିବ ନାହିଁ ବୋଲି କିଏ କହିଲା ? ଅତି ସ୍ନେହ କରିବ ନାହିଁ । ପୁଅ ପାଠ ପଢ଼ିବ ନାହିଁ, ଦେଶ ବିଦେଶକୁ ଯିବ ନାହିଁ, ସବୁବେଳେ କିଏ ତମ ଅଞ୍ଚଳ କାନିରେ ବନ୍ଧା ହୋଇ ତମ ଆଖେ ବସିଥିବ । ମା ବାପ ଯେବେ ପୁଅକୁ ଏହିପରି ସ୍ନେହ କରିବେ ତେବେ ପୁଅଟି ମୂର୍ଖ ହେବ, ପଇସାଏ ରୋଜଗାର କରିପାରିବ ନାହିଁ, ତା ପିଲା ମାଇପକୁ ପୋଷି ପାରିବ ନାହିଁ । ତା ଜୀବନ କେଡ଼େ କଷ୍ଟମୟ ହେବ କହିଲ ଦେଖି । କହନ୍ତି—"ପିତୃମାତୃ ଦୋଷେଣ ମୂର୍ଖତା" ପିତାମାତାଙ୍କର ପ୍ରେମ ଭିତରେ ଯେତେ ସ୍ନେହ ଥାଉ, ପାଠପଢ଼ା ପ୍ରଭୃତିରେ କଡ଼ା ନଜର ନ ହେଲେ ପୁଅର ଭବିଷ୍ୟତ ବଡ଼ ଖରାପ ହେବ । ଅନେକ ମା ଅଛନ୍ତି ଯେଉଁମାନଙ୍କ ଅତି ସ୍ନେହରୁ ପୁଅ ଉନ୍ନତି କରିପାରେ ନାହିଁ । କେବଳ ଗୋଟିଏ ଗୋଟିଏ ଡେହ୍ଲାପୁଅ ହୁଅନ୍ତି । ଘରୁ ବାହାରି କେଉଁଠାକୁ ଯିବାକୁ ସାହସ ଓ ଉଦ୍ୟମ କରନ୍ତି ନାହିଁ । ଶେଷରେ ମାଟି ହୋଇଯାନ୍ତି । କିଂଶୁକ ଫୁଲ ପରି ଗନ୍ଧହୀନ ହୋଇ ଲମ୍ବ ଶାଟପଟା ବୃଥା ହୋଇ ବୁଲନ୍ତି । ଏଥିରେ କ'ଣ ମା ବାପଙ୍କର ନାଁ ବାହାରେ ? ଆହେ ନୀତିଶାସ୍ତ୍ର କହୁଛି—ଗୁଣୀଲୋକମାନଙ୍କ ଗଣନା ସମୟରେ ଯେଉଁ ମାଆର ପୁଅ ନାମରେ ଖଡ଼ି ନ ପଡ଼େ ସେ ତା ମାଙ୍କୁ

ପୁତ୍ରବନ୍ତ କାହିଁକି କୁହାଯିବ ? ତାକୁ ବରଂ ବନ୍ଧ୍ୟା କହିଲେ ଭଲ । ଯୋଗୀ ଋଷି ମୁନିମାନେ ଏ କଥା କାହିଁକି କହିଯାଇଛନ୍ତି, ସେ ସବୁ କଣ ମିଛ !

ସ୍ତ୍ରୀ—କଥାଟା ସତ; କିନ୍ତୁ ମନ କଣ ସବୁବେଳେ ମାନେ । ମନଟା ସବୁବେଳେ ପତଳା ହୋଇଯାଏ । ସବୁବେଳେ ତାର କଥା ମନେ ପଡ଼େ । ଭଲ ଜିନିଷଟିଏ ଘରକୁ ଆସିଲେ ତାର କଥା ମନେ ପଡ଼େ । ତାର ମୁହଁ, ତାର ଚାଲିଚଳଣି ମତେ ତ ସବୁବେଳେ ଦିଶି ଯାଉଛି । ତାଠୁ ଦି'ଦିନ ଚିଠି ନ ପାଇଲେ ମୁଣ୍ଡରେ ବଜ୍ର ପଡ଼ିଲା ପରି ଲାଗେ । କଣ କରୁଥିବ, କିଏ ତା ମନ ଜାଣି ଖାଇବାକୁ ଦେବ । ଅନ୍ଧାର ଘରରେ ଏକୁଟିଆ ଶୋଉଥିବ । କାଳେ ଡରିବ, ଦେହ ମନ୍ଦ ହେଲେ ତାକୁ କିଏ ଆହା ବୋଲି କହିବ । ସେଠି ତ କେହି ସାହାପକ୍ଷ ନାହିଁ । ମୁଁ ହେଲେ ଯାଇ ତା ପାଖେ ରହନ୍ତି । ମା ମଙ୍ଗଳା ଲୋ ! ସବୁ ଶୁଭରେ ତାକୁ ସଞ୍ଜ ଯୋଡ଼ାଇ ରଖିଥା, ଝାମଯାହାରେ କଳାଶାଢ଼ୀ ଦେବି ।

ସ୍ୱାମୀ—ଏଇଗୁଡ଼ାକ ସ୍ନେହର ଚିହ୍ନ । ଏହିପରି ଗୁଡ଼ାଏ ଯେବେ ଚିଠି ପତ୍ରରେ ଲେଖାଲେଖି କରୁଥିବ ତେବେ ସେ କଣ ଆଉ ପାଠରେ ମନ ଦେଉଥିବ । ତେମେ ଯେପରି ତା କଥା ସୁମରି ହେଉଛ ସେ ସେହିପରି ତମ ସ୍ନେହକୁ ସୁମରୁ ଥିବ । ପାଠରେ ମନ ଦେଉ ନ ଥିବ । ଏ କଥା ତମକୁ ଅନେକ ଥର କହିଲିଣି, ଶୁଣୁନାହଁ । ଶେଷରେ ଦେଖିବ ସେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପାରିବ ନାହିଁ ।

ସ୍ତ୍ରୀ—ସେ ତ କପାଳ କଥା । ମୁଁ ପରା ନାହାକକୁ ତା ଜାତକ ଦେଖାଇଥିଲି, ସେ କହିଲା ତା ଦଶା ଖରାପ ପଡ଼ିଛି । ସେ କଣ

କରିବ । ଦଶା ତ ତାଙ୍କୁ ପାଠ ମନେ ରଖାଇ ଦେଉ ନାହିଁ । ଗ୍ରହ ଭଲ ପଡ଼ିଲେ ସେ ତ ବଳେ ବାଣ୍ଟ ଭୋଗମାନ ହେବ । ଗ୍ରହ ତ ଟାଣି ନେଇଯିବ, ତାର ନ ପଢ଼ିବାକୁ କଣ ଆପତ୍ତି ଥିବ ?

ସ୍ୱାମୀ—ଏ ରୋଗ ତମକୁ ଯେବେ ଧରିଲାଣି ଦେଖୁଛି ଆଉ ରକ୍ଷା ନାହିଁ । ଏ ଘରେ ପିଲାଏ ଆଉ ପାଠ ପଢ଼ିବେ ନାହିଁ । ସବୁବେଳେ ତ ଜାତକ କପାଳ ହାତ ଦେଖା ଲାଗିବ । ପିଲାଏ ପାଠ ନ ପଢ଼ିଲେ ତାଙ୍କୁ ଆଉ କାହିଁକି କହିବା । ଚଟଶାଳୀକି ପଠାଇବାର ମଧ୍ୟ ଆବଶ୍ୟକ ନାହିଁ । ଅବଧାନଙ୍କୁ ଏତେ ପଇସା ଗଣିବାର ଆବଶ୍ୟକ ନାହିଁ । କପାଳରେ ଥିଲେ ତ ଘରେ ବସି ପାଠ ହେବ । ଏଥର ବିଲରେ ଧାନ ନ ବୁଣିଲେ ହେଲା । କପାଳରେ ଥିଲେ ମନକୁ ଧାନଗଛ ଉଠି ଧାନ ଫଳିବ । କଚେରିକି ଯିବା ମଧ୍ୟ ଆବଶ୍ୟକ ନାହିଁ । କପାଳରେ ଥିଲେ ଛାତରୁ ଟଙ୍କା ଗଳି ପଡ଼ିବ । ଆଉ ଚୁଲି ଲଗାଇବା ଆବଶ୍ୟକ ନାହିଁ, କପାଳରେ ଥିଲେ ମନକୁ ଭାତ ଆସିବ । ଏଥର ନିଶ୍ଚିନ୍ତ ହୋଇ ନାକରେ ତେଲ ପକାଇ ଶୋଇଲେ ହେଲା ।

ସ୍ତ୍ରୀ—ତେବେ କଣ ଜାତକ ପାତକ ସବୁ ମିଛ ? ଜାତକ ତିଆରି ହେଉଛି କାହିଁକି ?

ସ୍ୱାମୀ—ଆହେ, ଜାତକ ମିଛ ବୋଲି କହୁନାହିଁ । ମନୁଷ୍ୟ କର୍ମାଧୀନ ମତ, କର୍ମ ଅର୍ଥ, ଯାହା କରିବ ତାହା କର୍ମ । କର୍ମକୁ କପାଳ ଅଦୃଷ୍ଟ ବୋଲି କହନ୍ତି । ପୂର୍ବ ଜନ୍ମର କର୍ମକୁ ସଞ୍ଚିତ କର୍ମ କହନ୍ତି । ପୂର୍ବ ଜନ୍ମରେ କି କର୍ମ କରିଥିଲା ତାକୁ ଦେଖିପାରେ ନାହିଁ ବୋଲି ତାକୁ ଅଦୃଷ୍ଟ କହନ୍ତି । ସଞ୍ଚିତ କର୍ମର ଫଳ ଏ ଜନ୍ମରେ ଭୋଗ ହୁଏ । ଇହଜନ୍ମର କର୍ମଫଳ ଇହଜନ୍ମରେ ବା ପରଜନ୍ମରେ

ଭୋଗ କରିବାକୁ ପଡ଼େ । ଅତି ଉତ୍କଟ ପାପ ପୁଣ୍ୟର ଫଳ ତିନି ଦିନରେ, ତିନି ପକ୍ଷରେ କିମ୍ବା ତିନି ମାସରେ ହୁଏ । କର୍ମ କେବଳ ଭୋଗରେ କ୍ଷୟ ହୁଏ ।

ଉଦ୍‌ଯୋଗୀ ପୁରୁଷ ଲକ୍ଷ୍ମୀଙ୍କି ପାଏ,
କପାଳ ଠୁକି କାପୁରୁଷ ଥାଏ ।
ଦଇବକୁ ଛାଡ଼ି ନିଜେ ଉଦ୍‌ଯୋଗ କରିବ ।
ଯତ୍ନ କରି ନ ମିଳିଲେ କା'କୁ ନ ନିନ୍ଦିବ ।

ଏପରି ମାନ୍ତି । ମୁଁ ଯତ୍ନ କଲେ ଏ କାର୍ଯ୍ୟ ଅବଶ୍ୟ ହାସଲ କରିବି, ଏ ସାହସ ଉଦ୍ୟମ ସର୍ବଦା କରୁଥିବ । ଆଶାରେ ମନୁଷ୍ୟ ବଞ୍ଚେ । ଯତ୍ନ ଷୋଳପଣ କରିବ, ତେଣିକି ଯେବେ କାର୍ଯ୍ୟ ସିଦ୍ଧି ନ ହେଲା ଜାଣିବ ଯେ କପାଳେ ନାହିଁ । ଏଥର ହେଲା ନାହିଁ ଆଉ ଥରେ କରିବ, ସେଥର ନ ହେଲେ ଆଉ ଥରେ କରିବ । ଚେଷ୍ଟା ଯତ୍ନ ଉଦ୍ୟମ କେବେ ଛାଡ଼ିବ ନାହିଁ । ଆତ୍ମନିର୍ଭରଶୀଳ ହୋଇ କାର୍ଯ୍ୟ କରୁଥିବ, ଫଳ ଈଶ୍ୱରାଧୀନ । ଫଳ ପାଇଁ କେବେ ବ୍ୟସ୍ତ ହେବ ନାହିଁ । ମନୁଷ୍ୟ କର୍ତ୍ତବ୍ୟ କର୍ମ କରିବ, ଫଳ ଭଗବାନଙ୍କ ହାତରେ । ମନୁଷ୍ୟ କର୍ମ କରିବ, ଅଳସୁଆ ହୋଇ ହେଳାରେ ବେଳା ବୁଡ଼ାଇବ ନାହିଁ । ଆମେ ଯେବେ ମନ ପ୍ରାଣ ଲଗାଇ କାମ ନ କଲେ ଦୋଷ ଆମର । ମଣିଷ ଦୁଇଚକିଆ ରଥ ଉପରେ ବସି ଚାଲୁଛି । ୧—ଦୈବ, ୨—ପୁରୁଷକାର । ପୁରୁଷକାର ଅର୍ଥ ଯତ୍ନ, ପରିଶ୍ରମ, ଉଦ୍ୟମ, ଉଦ୍‌ଯୋଗ, ସାହସ, ଦମ୍ଭ ଇତ୍ୟାଦି । ଏ ଦୁଇକଥା ମିଶିଲେ କାର୍ଯ୍ୟ ହୁଏ । ଦୈବ ଅର୍ଥ ପୂର୍ବଜନ୍ମର କର୍ମଫଳ ।

ସ୍ତ୍ରୀ—ଦୈବ ବଳବାନ୍ କି ପୁରୁଷକାର ବଳବାନ୍ ?

ସ୍ୱାମୀ—ଦୁହେଁ ବଳବାନ୍ । କେତେବେଳେ ଦୈବ ବଳବାନ୍, କେତେବେଳେ ପୁରୁଷକାର ବଳବାନ୍ । ଦୈବ ବଳବାନ୍ ବେଳେ ପୁରୁଷକାରର ବଳ ଜଣାପଡେ ନାହିଁ ସତ; କିନ୍ତୁ ପୁରୁଷକାର ନଷ୍ଟ ହୁଏ ନାହିଁ । ସେ ପରକାଳକୁ ରହେ । ପରକାଳକୁ ସେ ପୁଣି ଦୈବ ରୂପରେ ବାହାରେ । କର୍ମର ବିନାଶ ନାହିଁ । କେବଳ ଭୋଗ ଦ୍ୱାରା କର୍ମର କ୍ଷୟ ହୁଏ । ଯାହା କର୍ମ କରିବ ତାର ଫଳ ଅବଶ୍ୟ ଭୋଗ କରିବାକୁ ହେବ । ମାତ୍ର କର୍ମ ଛାଡ଼ି ଦେଲେ ଚଳିବ ନାହିଁ ।

ସ୍ତ୍ରୀ—ଆହେ, ତେମେ ଖାଲି ମତେ କହିଲେ କଣ ହେବ ତାଙ୍କ ମୁଣ୍ଡରେ ତ ସେ କଥା ପଶୁ ନାହିଁ । ଆମେ ମାଇପି ଲୋକ ଆମେ ଏବେ ସ୍ନେହ ଶ୍ରଦ୍ଧାରେ କହିଲୁ, ସେମାନେ ତପୂର ହେଲେ ଆମ କଥା ଶୁଣିବେ କିଆଁ ?

ସ୍ୱାମୀ—ହିଁ ସେ କଥା ସତ । ତେବେ ମାଆମାନେ ଏତେ ଗେଲ-ବସର କରିବା ଠିକ୍ ନୁହେଁ । ଦେଖୁନାହିଁ ବୁଦ୍ଧିବଳରେ କର୍ମବଳରେ ଆମରି ମଣିଷମାନେ ଆକାଶରେ ଉଡୁଛନ୍ତି, ଜଳରେ ବୁଡୁଛନ୍ତି, ସ୍ଥଳରେ ଦଉଡୁଛନ୍ତି । ସେମାନେ ତ ସେହି ମଣିଷ । ତାଙ୍କର ତ ଗୁରିଟା ହାତ କି ଗୁରିଟା ଗୋଡ଼ କି ଦଶଟା ତ ମୁଣ୍ଡ ନାହିଁ । ସେମାନେ ଆପଣା ବୁଦ୍ଧି ବଳରେ ଧନ ଅର୍ଜନ କରି କୋଟିପତି ହେଉଛନ୍ତି । ଆମ ଦେଶ ଲୋକେ ଖାଇବା ବିନା ଝିଙ୍କିପୋକ ପରି ମରିଯାଉଛନ୍ତି । ଅଥଚ ସେହି ବିଦେଶୀ ଲୋକେ ହଜାର ହଜାର କୋଶ ଦୂରରୁ ଆସି ଆମ ଦେଶରୁ ଧନ ଗୁଣି ନେଉଛନ୍ତି; ଅଥଚ ଆମେ ଯାଇ କେଉଁ ଦେଶରୁ ପଇସାଏ ଆଣିବା ତ ଦୂରର କଥା, ଆମରି ଦେଶରେ ଦି'ପଇସା ଅର୍ଜନ କରିପାରୁ ନ ଥାଇଁ । ସେମାନେ ଜୀବନକୁ ପାଣି ଛଡ଼ାଇ ଦେଇ ନିଜ ବାହୁବଳ ଓ ବୁଦ୍ଧି ବଳରେ ଆମ ଉପରେ ରାଜା

ଦେଖୁଛନ୍ତି । ତାଙ୍କ ମାଆମାନେ କଣ ଏହିପରି ବସି ପୁଅକୁ ଝୁରୁଛନ୍ତି ? ସେମାନଙ୍କ ପୁଅମାନେ ଦେଖୁଛ କଅଣ ଆକାଶ ଯାନ ଚଢ଼ି ଉଡ଼ିବୁଲୁଛନ୍ତି, ଆକାଶ ଛତାରେ ଉପରୁ ତଳକୁ ଓହ୍ଲାଇ ପଡ଼ୁଛନ୍ତି, ଗୁଳିଗୁଳା ତୋପ କମାଣ ମୁହଁରେ ଠିଆହୋଇ ଲଢ଼େଇ କରୁଛନ୍ତି, କଅଣ ବିସ୍ତୀର୍ଣ୍ଣ ସୁନୀଳ ପାରାବାର ବକ୍ଷରେ ଅବଲୀଳାକ୍ରମେ ଜାହାଜ ପ୍ରଭୃତିରେ ଯା ଆସ କରୁଛନ୍ତି । ଜାହାଜ ସମୁଦ୍ରରେ ବୁଡ଼ି ଯାଇପାରେ, ଆକାଶଯାନ ଖସି ପଡ଼ିପାରେ, ଏସବୁ ପ୍ରତି ତିଳେ ଭ୍ରୂକ୍ଷେପ ନାହିଁ । ସେମାନଙ୍କ ସାହସକୁ ଧନ୍ୟ । ସେମାନଙ୍କ କର୍ମକୁଶଳତାକୁ ଧନ୍ୟ । ଆପଣା କର୍ମ ବଳରେ, ଆପଣା ବୁଦ୍ଧି ବଳରେ, ଆପଣା ସାହସ ବଳରେ, ସେମାନେ ଜଳ ସ୍ଥଳ ଆକାଶ ପାତାଳକୁ ଜିଣି ପାରିଲେ, ପକ୍ଷୀପରି ଆକାଶରେ ଉଡ଼ିଲେ । ରାମାୟଣରେ ଶୁଣିଥିଲି ଇନ୍ଦ୍ରଜିତ ମେଘ ଉପରେ ରହି ଯୁଦ୍ଧ କରୁଥିଲା । ଏବେତ ସାକ୍ଷାତ ପ୍ରତ୍ୟକ୍ଷରେ ଦେଖାଗଲା । କର୍ମ ବଳ ଛଡ଼ା ଏଥିରେ ଆଉ କେଉଁ କଣ ଅଛି ? ଆମ ଦେଶ ଲୋକେ ଘର କଣରୁ ବାହାରିବେ ନାହିଁ, ବୁଦ୍ଧି ଖେଳେଇବେ ନାହିଁ । ବିଦ୍ୟା ପଢ଼ିବେ ନାହିଁ, ପଢ଼ିଲେ ମଧ୍ୟ ଉପାର୍ଜ୍ଜନ ପନ୍ଥା ଦେଖାଯିବ ନାହିଁ । ସେମାନେ ଆଉ ଭୋକରେ ନ ମରି କଣ କରିବେ ?

ସ୍ତ୍ରୀ—ସେଦେଶ କଥା ଶୁଣିଲେ ବାସ୍ତବିକ ମନେହୁଏ ଆମ ଦେଶ ଲୋକଗୁଡ଼ାକ ଅଳସୁଆ, ନିର୍ବୁଦ୍ଧିଆ, ସୁସ୍ତି, କଣପଶା ପରି ଜଣାଯାଏ । ଯେତେ ବଡ଼ ପାଠ ପଢ଼ିଲେ କଣ ହେଲା, ପ୍ରଖର ବୁଦ୍ଧି ଦେଖାଯାଉ ନାହିଁ ।

ସ୍ୱାମୀ—ମୁଁ ତ ସେହି କଥା କହୁଥିଲି, ତେତେ ଖାଲି ଗାଳି କରୁଥିଲ । ଆହେ ସବୁବେଳେ ନିରାଶ ବାଣୀ କହିବା, ସଂସାରଟା

କହୁ ନୁହେଁ ଗୀତ ଗାଇବା, କପାଳ ଆଦର ବସି ରହିବା, ଏ ସବୁ କାପୁରୁଷର ଲକ୍ଷଣ । ଯତ୍ନକଲେ ଅବଶ୍ୟ ରତ୍ନ ମିଳିବ । 'କହୁଛି ମନ ଆରେ ମୋ ବୋଲ କର' ଇତ୍ୟାଦି ମନବୋଧ ଚଉତିଶା ଅଛି ଶୁଣି ଥିବ । ମୁଁ ସେହିପରି ଆଜ ଗୋଟିଏ ଗୀତ କହୁଛି ଶୁଣ:— କହୁଛି ମନ ଆରେ ମୋ ବୋଲ କର । କରମ ପଥେ ମନ ଦିଅ ନକର ରେ । କରମଦେବ ପୂଜା ପାରବୁ ଯେବେ । କରମରେ ସଂସାର ଜିଣିବୁ ତେବେ ରେ ।୧। ଖଟ କରମ ଦେବ ପାଦେ ନମୁତ । ଖଟାଅ ତୋର ବିଦ୍ୟା ବୁଦ୍ଧି ସନ୍ତତ ରେ । ଖିର ଖେଚେଡ଼ି ଖାଇ ସୁଖେ ରହିବୁ । ଖଟପଲଙ୍କ ସୁପାତିରେ ଶୋଇବୁ ରେ । ଗୋବିନ୍ଦ ନାମ ଜପି କାଟୁଛୁ ଦିନ । ଗୋବିନ୍ଦ କି କହିଲେ ଦିଅ ତୁ ଧାନରେ । ଗତି ନାହିଁ କରମ ଦେବ ନ ସେବି । ଗଲେଣି କେତେ ଲୋକ ତୋ ସଙ୍ଗୁ ଭାବି ରେ ।୩। ଘେରାଇ କର୍ମଜାଲ ଚଉଦିଗରେ । ଘୋଟି ରହିଛି କାଳ ଭବ ସଂସାରେ ରେ । ଘୋଷ କରମଦେବ ନାମ ନମୁତ । ଘଟାଇ ପାରୁ ଅଘଟଣ ସନ୍ତତ ରେ ।୪। ମୀଳ ଆକାଶ ପାରିବାର ଝଙ୍କତ । ନଦୀ ନର୍ଦ୍ଦର ଗିରି ବନ ଯାବତ ରେ । ନାହିଁ ଏମନ୍ତ ସ୍ଥାନ ଏ ଦୁନିଆରେ । ନେତ୍ର ନ ପଡ଼େ ଯହିଁ କର୍ମଫଳରେ ରେ ।୫। ଚଳିତ ହୋଇ ଗୃହ ଆକାଶପଥେ । ଚଳାଇ ଜଙ୍ଗାଯାନମାନ ନଇତେ ରେ । ଚମକାଇ ଦେଉଛି ଗ୍ରାହକ ତୋର । ଚିତ୍ତରେ ଉପୁଜାଏ ଖ୍ରାନ୍ତି ନକର ରେ ।୬। ଛଟକେ ବାଷ୍ପଗାଡ଼ି ଶକଟ ଚଳେ । ଛୁଟି ଯାଉଛି ଶାର ବେଗେ ତଡ଼ିଲେ ରେ । ଛ ମାସ ପଥ ଏକା ଘଡ଼ିକେ ଯାଏ । ଛଅ କୋଟି ମହଣ ବୋଝାଇ ନିଏ ରେ । ୭ । ଜଗତେ ଦେଖୁଅଛ ଯେତେ ଦରବ । ଜନମି ଅଛି କର୍ମଫଳୁଁ ସରବ ରେ । ଜଗତ ଜନ ମନ ନେଉଛି ମୋହି । ଜଣେ କେ ଅଛି ଦେଖି ଭୁଲଇ

ନାହିଁ ରେ । ୮ । ଝଡ଼ ତୋଫାନ ଭୂମିକମ୍ପ ବିପତ୍ତି । ଝିମିଟେ ନାଶ କରେ କେତେ ସମ୍ପତ୍ତି ରେ । ଝଡ଼ ପଡ଼ିଲେ କେବେ ଦଇବ ବଳେ ଝଟକେ ପୁଣି ହୁଏ କରମ ଫଳେ ରେ । ୯ । ନବ ନବ ଦରବ ହୁଏ ସୃଜନ । ନିମିଷକେ ହରଇ ପ୍ରାଣୀଙ୍କ ମନ ରେ । ନେତ୍ର ଯୁଗଳ ଦେଖି ହୁଏ ଚକିତ । ନ ଟଳେ ତହୁଁ ମନ ଅତି ପବିତ୍ର ରେ ।୧୦। ଟାଣ ପଣ ଦେଖାଉ କରୁ ଗାରିମା । ଟାଳ ଦେଉଛ କେତେ ଲୋକ ବଡ଼ିମା ରେ । ଟାହି ଟାପରା ଖେଳେ କଟାଉ ବେଳା । ଟାଣେ ନ କଲେ କର୍ମ ବୁଡ଼ିବ ଭେଳା ରେ ।୧୧। ଠକାଠକି ବେପାର କରୁଛନ୍ତି କେତେ । ଠିକ ସିବୁଟି ଧନେ ନ ପାଅନ୍ତି ଚିତ୍ତେ ରେ । ଠଣ ସୁନ୍ଦର ତନୁ ତୋର ଗରବ । ଠକିଲେ କେତେକାଳ କର୍ମପୁରିବ ରେ ।୧୨। ଡାକବଚନ ଧନେ ଶୁଣିଲୁ ନାହିଁ । ଡାକ କହନ୍ତି ପ୍ରଭୁ ଜଗତସାଇଁ ରେ । ଡରଭୟ ମନରୁ ତେଜ ନିସୂତ । ଡାକହାକ କରମ କରି ନିସୂତରେ ।୧୩। ଢକା ଢୋଲ ବଜାଇ ନାଚୁଛନ୍ତି ଖେଳେ । ଢୋକି ଦେଉଛନ୍ତି ବିଷ ଅମୃତ ତୁଲ୍ୟ ରେ । ଢଳାଇ ପଡ଼ନ୍ତି ନାନା ମାଦକ ଖାଇ । ଢମ ପଣ ଦେଖାଉ ଢୋଲ ବଜାଇରେ ।୧୪। ଅଣଆୟୁତ୍ତ ହୋଇ କାଟନ୍ତି ଧନ । ଅଣାକାର ଭଜନେ ନ ଦେଉ ମନରେ । ଅଣବ୍ରୁଶ ପବନ ଆସିବ ଯେବେ । ଅଣହେତୁରେ ସ୍ଥଳସିବୁଟି ଚେତେ ରେ ।୧୫। ତତ୍ତ୍ୱ ନ କରୁ ମନ କରମ ଯୋଗ । ତୁଳ ତଳପ ଶେଯେ ଇଚ୍ଛା ସମ୍ଭୋଗରେ । ତମଗୁଣରୁ ମନ କରିଛୁ ସାର । ତେଡ଼ି ଦେଉଛୁ ସବୁ କୁଳ ବେଭାର ରେ ।୧୬। ଥକ ଯାଉଛୁ ଦେଖି କର୍ମ କଷଣ । ଥିଯୁରେ କର୍ମପଥେ ନ ଦେଉ ମନ ରେ । ଖଣ୍ଡାରେ ଥିର କର ତୋ ବୁଦ୍ଧି ମନ । ଥରହର ନ ହୋଇ କର କରମରେ । କମ୍ବଧରି ବସିଛୁ ଅଛି ସମ୍ପତ୍ତି । ଦମ୍ଭ ଗର୍ବ ତୋର ମର୍ତ୍ତ୍ୟ ଭୂପତି ରେ । ଧନ ଦରିଦ୍ର ଲୋକ ଦେଖିଲେ ମନ । ଦୂରରୁ ଦୂର କରି

ଦେଉଛନ୍ତି ପୁଣ ରେ ।୧୮। ଧାରୁଆ ଅସ୍ତ୍ରଶସ୍ତ୍ର ରଖି ସାଇନ୍ତି । ଧାନ୍ତ-କାରେ ନାଶିବୁ ଲୋକଙ୍କୁ ନିତି ରେ । ଧାଇଁଛୁଁ ଦିନରାତି ନ ମାଡ଼େ ନିଦ । ଧରକୁ ସବୁ ମଣି ଭୋଗୁ ସମ୍ପଦ ରେ ।୧୯। ନବ ନବ ବେଶ ତୁ ହେଉଛୁ ନିତି । ନବରଙ୍ଗରେ କାଟୁ ଦିବସ ରାତି ରେ । ନଟ ନଟୀ ହୋଇ ତୁ ନାଚୁଛୁ କେତେ । ନେଇଯିବଟି କାଳ ନିମିଷ ମାତ୍ରେ ରେ ।୨୦। ପିତୃଅର୍ଜିତ ଧନ ପାଇ ଆନନ୍ଦ । ପିଇ ହେଉଛୁ ମନ ବିଷୟ ମଦରେ । ପିତାମାତାଙ୍କୁ ମଣୁ ଭୃତ୍ୟ ସମାନ । ପ୍ରିୟାକୁ ଦିଅ ପରେ ଦେଉ ଆସନ ରେ ।୨୧। ଫାଙ୍କି ଦେଉଛୁ ସାଉକାର କରଜ । ଫାଙ୍କ ତାଳରେ କରୁ ସଦା ମଜଜ ରେ । ଫନ୍ଦିରଖୋର ବୋଲି କହନ୍ତି ତୋତେ । ଫାଉ କହୁଛୁ କେତେ କଥା ନିରତେ ରେ ।୨୨। ବଡ଼ ବିଷମ କର୍ମ୍ମ ଜାଲ ତୁ ହେଜ । ବାଛୁ ନଅ କେ ଭଲ କେ ମନ୍ଦ କାର୍ଯ୍ୟ ରେ । ବଡ଼ ଚତୁର କାମ କର ନିଯୁତ । ବଡ଼ମା ପଣ ଛାଡ଼ ହୁଅ ସଂଯତ ରେ । ୨୩। ଭଜିଲୁ ନାହିଁ ଦିନେ ତୁ ଭଗବାନ । ଭରମେ ଦେଲୁ ନାହିଁ ଧରମେ ମନରେ । ଭବସାଗରେ ଭେଳା ସେ ହରିନାମ । ଭଲ ଭେଲ ଚଉଳା କର କରମ ରେ ।୨୪। ମଣୁଛୁ ନିଜେ ବଡ଼ ସଭିଙ୍କେ ସାନ । ମଶାଣିରେ ତୁ ଦେଖ ସର୍ବେ ସମାନ ରେ । ମନେ ପାଉଛୁ ତୋଠୁ ବଡ଼ କ ନାହିଁ । ମଇଜେ ଦିନ ନେଇ ଦେଖାଇ ଛଇ ରେ । ୨୫ । ଯେତେ ଯେତେ କରମ କରିବୁ ଭବେ । ଯତନରେ ରତନ ପାଇବୁ ତେବେ ରେ । ଯନ୍ଦି ଦାନ୍ତ ପାଶରୁ ମାଟି ମାଆକୁ । ଯିବ ସୁଖରେ ଦିନ କାଳ କାଳକୁ ରେ ।୨୬ ରଙ୍ଗ ରହସ୍ୟ ଦିନରାତି ନ ସରେ । ରମଣୀ ରତନକୁ ବାନ୍ଧ ଗଳାରେ । ରବି ଚନ୍ଦ୍ରକୁ ତୁଚ୍ଛ ମଣୁଛୁ ମନେ । ଥିବୁ କି ଚମ୍ପା ମୁଣ୍ଡ ବାନ୍ଧ ଏ ଧାମେ ରେ ।୨୭। ଲୁଚିଛୁ ଆଖି ତୋର ବିଷୟ ରସେ । ଲକ୍ଷ୍ୟ କରି ନ ପାରୁ ତୁ ଆନ ରସେ ରେ । ଲକ୍ଷପତି ବୋଲି ତୋ ମନେ ଗରବ । ଲକ୍ଷ୍ୟ ନ କରୁ ସଙ୍ଗେ କିଛୁ ନ ଯିବ ରେ ।୨୮। ବଡ଼ଲୋକ ତୁ ବଡ଼

କୋଠାରେ ଥାଇ । ବୋଲୁଛୁ ତୋ ସମାନ କଣେ କେ ନାହିଁରେ । ବହୁତ ଖତ କଥା ଶୁଣୁ ଛୁ କାନେ । ବଣା କରନ୍ତ ବୁଦ୍ଧି ଗୃହ୍ଣ ବଚନରେ । ୧୯ । ଶରଣ ନଅ ସତ କରମ ପାଦେ । ଶର ନ ଯୋଖ ଆନେ ନାନାଦ ଫାନ୍ଦେରେ । ଶମନ ଅଛୁ ମନେ ନ ପଡ଼େ ତୋର । ଶବ ହୋଇବ ତୋର ଶିବ ଶରୀର ରେ ।୩୦। ଷଡ଼ ଋପୁ ଅଟଇ ନିଜ ବଇରୀ । ଷଡ଼ ଆନନ ତାତ ଯାହାଙ୍କୁ ଡର ରେ । ଷଡ଼ ଐଶ୍ଵର୍ଯ୍ୟଶାଳୀ ହେବୁ ମାନସ । ଷଡ଼ ମାସକୁ ତୋର ନାହିଁ ଆୟୁଷ ରେ ।୩୧। ସବୁ ଭାବନା ତୋର ଏ ପେଟ ପାଇଁ । ସକଳ ବେଶ ଧରି ହେଉଛୁ ବାଇରେ । ସବୁ ସମୟେ ପରବାଦ କନ୍ଦଳ । ସହି ନ ପାରୁ ଆନ ଶିରି ସକଳରେ ।୩୨। ହଜୁଛୁ ଧନ ଜନ ବଳ ବୟସ । ହଟି ବସିଛି କାଳ ଦେଖାଇ ଫାଶରେ । ହରି ଭଜନ କରି କର କରମ । ହଟି ନ ଯିବୁଁ ପଛେ ଅଛି କ ଯମରେ ।୩୩। କ୍ଷଣେ ନ ରସୁ ମନ ହରିଚରଣେ । କ୍ଷମାନଧିଙ୍କ ନାମ ନ ଜପୁ କ୍ଷଣେ । କ୍ଷମା କରି ପାରିବେ ଦୋଷ ସକଳ । କ୍ଷଣଭଙ୍ଗୁର ଜଗବନ୍ଧୁ କେବଳ ରେ ।୩୪।

ସ୍ତ୍ରୀ—ଆଚ୍ଛା କହୁଛ, ଆଜ ସବୁ ଦେଶରେ ଲୋକେ ବହୁତ କାମ କରୁଛନ୍ତି, ବହୁତ ଶିଳ୍ପ ବାଣିଜ୍ୟ କରି ଧନ ଅର୍ଜନ କରି ସୁଖରେ କାଳ କାଟୁଛନ୍ତି, ଆମ ଦେଶ ଲୋକଙ୍କ ମନ ସେପରି ହେଉନାହିଁ କାହିଁକି ?

ସ୍ୱାମୀ—ଆହେ,' ବୁଝି ପାରୁନାହଁ, ଆମ ଦେଶ ଲୋକେ ଅଳ୍ପକେ ସନ୍ତୁଷ୍ଟ ହୋଇଯାନ୍ତି । ଶାଗ ଭାତ ମୁଠିଏ ହେଲେ ସନ୍ତୋଷ, ଧାନ ଟ ଜମିରେ ହୁଏ । ବାରି ଘରେ ତା ମନକୁ ନାନା ପ୍ରକାର ଶାଗ ହୁଏ । ସେଥିରୁ ମୁଠିଏ ତୋଳିଆଣି ଲୁଣ ଟିକଏ ତେଲ ପକାଏ

ଦେଇ ଖରଚ ଦେଲେ କାମ ଚଳିଲା, ପେଟ ଥଣ୍ଡା ହେଲେ ଆଉ ଚିନ୍ତା କଣ ? ଓଳିକ ଥିଲେ ଆଉ ଓଳି ଲୋକେ କାମ ନ କରି ଶୋଇବେ ବସିବେ ଖେଳିବେ । ସେ ଦେଶମାନଙ୍କରେ କେବଳ କୃଷି ନାହିଁ, ଶିଳ୍ପ ବାଣିଜ୍ୟରେ ମୁଣ୍ଡ ନ ଖେଳେଇଲେ ଖାଇବେ କଣ ? ପେଟଚିନ୍ତା, ମହାଚିନ୍ତା । କପରି କେଉଁଠୁ ଆଣିବା, କଣ ଖାଇବା ଏହି ଚିନ୍ତା କଲେ ମନୁଷ୍ୟକୁ ନାନା ବୁଦ୍ଧି ଦେଖାଯାଏ । ସେମାନେ ସର୍ବଦା ଜାଗ୍ରତ । ଗତି ନାହିଁ ହିନ ନାହିଁ ସେହି ଭାବନା । ଯାହାର ଯେପରି ଭାବନା ତାକୁ ସେହିପରି ସିଦ୍ଧି ଭଗବାନ ଦିଅନ୍ତି । ଆମ ଦେଶରେ ମାଗିଆଣି ଚଳିଯାନ୍ତି । ସେ ଦେଶରେ ମାଗିବାଟା ଆଇନରେ ଦଣ୍ଡମାପ୍ୟ । ସମସ୍ତେ ଭୋକବାହା ପିଟି ଚଳିବେ, ଭିକ୍ଷା ମାଗି ପାରିବେ ନାହିଁ । ଅସମର୍ଥ ଲୋକଙ୍କପାଇଁ ଦାତବ୍ୟ ଅନୁଷ୍ଠାନମାନ ଅଛି । ସମର୍ଥ ଲୋକ ଦାଣ୍ଡରେ ବୁଲି ଭିକ୍ଷା ମାଗି ପାରିବ ନାହିଁ । ଆମ ଦେଶରେ ଭିକ୍ଷା ମାଗିବା ଲୋକ ପଣ ପଣ, ଭିକ୍ଷା ମାଗିବା ପାଇଁ ନାନା ବେଶ ଧରୁଛନ୍ତି । ପାଠ ଅଛି ପଦ ବାଣିଜ୍ୟେ ବସତେ ଲକ୍ଷ୍ମୀ, ତଦର୍ଦ୍ଧଂ କୃଷି କର୍ମଣି, ତଦର୍ଦ୍ଧଂ ରାଜ ସେବାୟାଂ, ଭିକ୍ଷା ନୈବ ଚ ନୈବ ଚ । ଶିଳ୍ପ ବାଣିଜ୍ୟରେ ଲକ୍ଷ୍ମୀ ପୂର୍ଣ୍ଣମାତ୍ରାରେ ମିଳନ୍ତି । କୃଷିକର୍ମରୁ ତହିଁରୁ ଅଧେ ମିଳେ, ରାଜସେବା କଲେ ଅର୍ଥାତ୍ ଚାକିରି କଲେ ତହିଁରୁ ଅଧେ ମିଳେ, ମାତ୍ର ଭିକ୍ଷାରେ କିଛି ମିଳେ ନାହିଁ । ଭିକ୍ଷାଟା ସବୁଠୁ ଅତି ନିକୃଷ୍ଟ କର୍ମ । ହୀନ ହୀନ ଭାବରେ ଅନ୍ୟ ଆଗରେ ହାତ ପତାଇ ଦାନ୍ତ ନିକୁଟି ଗୋଡ଼ ଭାଙ୍ଗି ଠିଆହୋଇ ମାଗିବାଟା ଅତି ହୀନ କର୍ମ । ଆମ ଦେଶରେ ଏହାକୁ ପେଟ ପୋଷିବାର ଗୋଟାଏ ବୃତ୍ତି କରିଛନ୍ତି ! ଅତି ପିଲାଦିନୁ ବାପ ପୁଅକୁ ଯେମନ ଭିକ୍ଷା ମାଗିବା ବୃତ୍ତି ଶିକ୍ଷା ଦେଉଛି । ପେଟ ଦାଉରେ ଆମଦେଶରେ ମାଧିଆ ଯୋଗୀ ବଢ଼ୁଛି । ଭିକ୍ଷା କରିବା ଲୋକ ସଂଖ୍ୟା ଯେତେ ବଢ଼ୁଛି ଦେଶରେ ବେକାର ସଂଖ୍ୟା ସେତେ ବଢ଼ିଛି ।

ଲୋକ ବସି ଖାଇବ, ମାଗି ଖାଇବ ଏହା ଭଗବାନଙ୍କ ସୃଷ୍ଟିର ଉଦ୍ଦେଶ୍ୟ ନୁହେ । ପ୍ରତ୍ୟେକ ଆପଣା ମୁଣ୍ଡ ଝାଳ ତୁଣ୍ଡେ ମାରି ଆପଣା ଆପେ ସଂଗ୍ରହ କରିବ । ଦରିଦ୍ର ଅସମର୍ଥଙ୍କୁ ଦାନ କରିବା ଶାସ୍ତ୍ରର ଆଦେଶ, ମାତ୍ର ଯାହାର ଅଛି, ସେ ସମର୍ଥ, ତାଙ୍କୁ ଦାନ କଲେ କିଛି ଫଳ ନାହିଁ । ଏ ପ୍ରକାର ଦାନ ତାମସିକ ଦାନ । ପୃଥିବୀର ସକଳ ଜାତି ବର୍ତ୍ତମାନ ଜାଗ୍ରତ । ସମସ୍ତେ କର୍ମ କ୍ଷେତ୍ରରେ ଦଉଡୁଛନ୍ତି, ଆମେ ଶୋଇ ରହିଲେ ଆମକୁ ମାଡ଼ି ଭୁଦ ଚକଟି ଦେଇ ଚାଲିଯିବେ । ସେଥିପାଇଁ କହୁଛୁ:—

ଜାଗିଲେଣି ଜାତି ସରବ
ଉତ୍କଳ ଜନନୀ ଆଜ ଏକା ନୀରବ । ଧ୍ରୁ ।

ହେଲେହେଁ ଅତି ପ୍ରାଚୀନା, ଦବ ନାହିଁ ତାର ବୀଣା
ଅଛୁ ବିଶ୍ୱବିମୋହନ ଗୀତ ଗରବ । ୧
ଜ୍ଞାନବିଜ୍ଞାନମଣ୍ଡିତା, ଶିଳ୍ପକଳା ବିଭୂଷିତା
ମଉଳି ଯାଇଛୁ ଶିଖି ବିଦେଶେ ଖରବ । ୨
ବୀର ସୁତ ପ୍ରସବିନୀ, ଆଜ ଅନ୍ନ କାଙ୍ଗାଳୁଣୀ
ମୂକସାକ୍ଷୀ ପରି ଅଛୁ ଯଶ ଗୌରବ । ୩
ଇଉରୋପ ଆମେରିକା, ଦେଶରେ ଜୀବିକା ଶିକ୍ଷା
ଏ ଦେଶର ଭାଷା ଭୂଷା, ବୃଥା ଗରବ । ୪
ଜାଗ ହେ ଓଡ଼ିଆ ଜାତି, ଛାତିରେ ମିଶାଇ ଛାତି
କରିପାର ଅସମ୍ଭବ ବିନେ ସମ୍ଭବ । ୫

—୦—

## ଅଷ୍ଟାଦଶ ପରିଚ୍ଛେଦ
## ବିଦ୍ୟା ପଠନ

ସ୍ତ୍ରୀ—ହଇହେ, ପାଠ କଣ ପଢ଼ିବି ମ ? ପାଠ ନ ପଢ଼ିଲେ କଣ ଚଳିବ ନାହିଁ ?

ସ୍ୱାମୀ—ପାଠ ଯାହାକୁ କହନ୍ତି ବିଦ୍ୟା ତାକୁଇ କହନ୍ତି । ବିଦ୍ୟା ଅର୍ଥ ଜାଣିବା । ଏ ବିଶାଳ ବିଶ୍ୱ ବ୍ରହ୍ମାଣ କଣ, କିପରି, ତାର ପ୍ରକୃତ ଗତି ବିଧି, ଲକ୍ଷ୍ୟ ଲକ୍ଷଣ ଇତ୍ୟାଦି ବିଷୟ ଜାଣିବା ଏବଂ ବିଶ୍ୱ ବ୍ରହ୍ମାଣ୍ଡର କର୍ତ୍ତା କିଏ, ସେ କାହାନ୍ତି, କେଉଁଠି କି ଆକାରରେ ଅଛନ୍ତି; ଏ ସମସ୍ତ ବିଷୟ ଜାଣିବା ଅର୍ଥ ବିଦ୍ୟା । ମନୁଷ୍ୟ ପକ୍ଷରେ ଏ ସମସ୍ତ ବିଷୟ ଜାଣିବାକୁ ବହୁ ସମୟସାପେକ୍ଷ । ଜଣେ ମଣିଷ ଏ ସବୁ ତା ଜୀବନ ସମୟ ମଧ୍ୟରେ କରି ପାରିବ ନାହିଁ । ସୃଷ୍ଟି ଆଦ୍ୟରୁ ଆମ୍ଭମାନଙ୍କ ପିତୃପିତାମହଙ୍କ ପୂର୍ବପୁରୁଷମାନେ କରି କରି ଆସୁଛନ୍ତି; କିନ୍ତୁ ଏପର୍ଯ୍ୟନ୍ତ ଶେଷ ହୋଇନାହିଁ । ଯେ ଯେତେ ଯାହା ଜାଣିପାରୁଛି ତାକୁ ଲେଖି ପକାଉଛି । ସେଗୁଡ଼ାକ ହେଲା ଶାସ୍ତ୍ର ବା ପୁସ୍ତକ । ଆଗେ ତାଳପତ୍ରରେ ଲେଖା ହେଉଥିଲା, ଏବେ କାଗଜ ବ୍ୟବହୃତ ହେଉଛି । ଏଥିରେ ସେ ସବୁକଥା ଲେଖାଅଛି । ତାକୁ ପଢ଼ିବାକୁ ପାଠପଢ଼ା ବା ବିଦ୍ୟା ପଠନ କୁହାଯାଏ । ଏଗୁଡ଼ାକ ପାଠ କଲେ ଅନେକ କଥା ଜାଣି ପାରିବ । ପୁଣି ନିଜେ ଯାହା ବୁଝିବ ତାକୁ ନିଜେ ଲେଖି ପକାଇବ, ପୁଣି ତାକୁ ଭବିଷ୍ୟତ ବଂଶଧରମାନେ ପଢ଼ିବେ । ଏହିପରି କେତେ ପୋଥି ଲେଖା ହେଲଣି, ଲୋକେ କେତେ ପୋଥି ପଢ଼ି ଧୋତି ହେଲେଣି, ତେବେ ବି କିଛି ଜାଣି ପାରୁନାହାନ୍ତି ।

ସ୍ତ୍ରୀ—ବିଦ୍ୟା କେତେ ପ୍ରକାର ଅଛି ? ଜଣେ ଲୋକ ସବୁ ବିଦ୍ୟା ପଢ଼ି ପାରୁଛି ?

ସ୍ୱାମୀ—ଆଜ୍ଞେ,ଏ ଅନନ୍ତ ବ୍ରହ୍ମାଣ୍ଡ ବିଷୟକ ଜ୍ଞାନ ମଧ୍ୟ ଅନନ୍ତ । କାହାର ସାଧ୍ୟ ଅଛି ଯେ ସେ ସବୁ ବିଦ୍ୟା ପଢ଼ି ପାରିବ । ମନୁଷ୍ୟର ଆୟୁଷ କେତେ ? କାହିଁ କେଇଁ କାହିଁ ? ଯାହା ମନ ଯେଉଁ ଦିଗକୁ ଗଲା, ସେ ସେହି ଦିଗରୁ କାଣିଚାଏ ପଢ଼ିଲା । ସବୁ ବିଦ୍ୟା ଆୟତ୍ତ କରିବା କିଏ ପାଖରେ ଅଛି ? ବିଦ୍ୟାର ଅସଂଖ୍ୟ ବିଭାଗ । ମନୁଷ୍ୟ କେତେଟା ବିଭାଗରୁ କିଛି କିଛି ଦେଖିଥିବ । ୧ ଭୂଗୋଳ—ଏ ବିଦ୍ୟା ପଢ଼ିଲେ ପୃଥିବୀର ନାନା ସ୍ଥାନର ବିଷୟରେ କିଞ୍ଚିତ୍ ସଂକ୍ଷେପ ଜ୍ଞାନ ହେବ । ୨ ଇତିହାସ—ପ୍ରାଚୀନ ଚରିତ ସବୁ ଏଥିରୁ ଜଣାଯିବ । ୩ ପଦାର୍ଥ ବା ଜଡ଼ବିଜ୍ଞାନ । ୪ସ୍ୱାସ୍ଥ୍ୟରକ୍ଷା, ୫ଅଙ୍କ ବିଦ୍ୟା,୬ ଜ୍ୟୋତିଷ— ଏଥିରୁ ଗ୍ରହତାରା ଜଗତର କଥା ପ୍ରଭୃତି ଜଣାଯିବ, ୭ଆୟୁର୍ବେଦ— ଏଥିରେ ରୋଗ ନିଦାନ,ରୋଗର ଚିକିତ୍ସା ପ୍ରଭୃତି ଅଛି, ୮ଧନୁର୍ବେଦ— ଏଥିରେ ଧନୁ ପ୍ରଭୃତିର ବ୍ୟବହାର ବିଷୟ ଅଛି । ୯ ରସାୟନ ବିଦ୍ୟା— କେଉଁ ପଦାର୍ଥ ସଙ୍ଗେ କି ପଦାର୍ଥ ମିଶାଇଲେ ବା କି ପଦାର୍ଥରେ କି କି ମୌଳିକ ପଦାର୍ଥ ଅଛି ଏସବୁ ତତ୍ତ୍ୱାଲୋଚନା । ୧୦ ମାପବିଦ୍ୟା—କିପରି ଜମି ମାପଚୂପ କରାଯାଇ ପାରିବ । ୧୧ ଧର୍ମଶାସ୍ତ୍ର—ଏଥିରେ ବେଦ, ବେଦାନ୍ତ, ଉପନିଷଦ, ଶ୍ରୁତି, ସ୍ମୃତି ଇତ୍ୟାଦି ନାନାପ୍ରକାର । ୧୨ ମନ୍ତ୍ରବିଦ୍ୟା, ୧୩ ତନ୍ତ୍ରବିଦ୍ୟା, ୧୪ପୁରାଣ, ୧୫ ନାଟକ,୧୬ସାହିତ୍ୟ, ୧୭ ବ୍ୟାକରଣ, ୧୮ ନ୍ୟାୟଶାସ୍ତ୍ର, ୧୯ ତର୍କଶାସ୍ତ୍ର, ୨୦ ଅର୍ଥଶାସ୍ତ୍ର, ୨୧ ଯୋଗବିଦ୍ୟା, ୨୨ ବ୍ରହ୍ମବିଦ୍ୟା, ୨୩ ଦର୍ଶନଶାସ୍ତ୍ର, ୨୪ ଶିଳ୍ପ ଶାସ୍ତ୍ର, ୨୫ ଜ୍ୟାମିତି, ୨୬ ଡାକିନୀବିଦ୍ୟା, ୨୭ ଭୂତତତ୍ତ୍ୱ ବିଦ୍ୟା, ୨୮ ପାଚକବିଦ୍ୟା, ୨୯ ଚିତ୍ରବିଦ୍ୟା, ୩୦ ଉପନ୍ୟାସ, ୩୧ ଗଳ୍ପ ଇତ୍ୟାଦି ପ୍ରତ୍ୟେକ ବିଷୟ ଜାଣିବା ଅର୍ଥ, ବିଦ୍ୟା । ତାହାର କିଏ ସଂଖ୍ୟା ଅଛି ! ପୃଥିବୀକି ଯେତେ ପର୍ଯ୍ୟବେକ୍ଷଣ କରିବ ତେତେ ବିଦ୍ୟା ଜନ୍ମିବ । ଅନେକ କଥା ଅଛି ଯାହା ବର୍ତ୍ତମାନ ପର୍ଯ୍ୟନ୍ତ ମନୁଷ୍ୟ ବୁଦ୍ଧିର

ଅଗୋଚର । ବିଶ୍ୱସ୍ରଷ୍ଟାଙ୍କ ବିଶ୍ୱସୃଷ୍ଟି କୌଶଳ ବୁଝିବା ସହଜ ନୁହେଁ । ପ୍ରତ୍ୟେକ ଦୃଶ୍ୟ ପଦାର୍ଥର କି ମହିମା ଅଛି, ସେ କାହିଁକି ସୃଷ୍ଟି ହୋଇଛି, କି ଉଦ୍ଦେଶ୍ୟ ସାଧନ କରୁଛି, କି କି ଉପାଦାନରେ ଗଠିତ, ଏସବୁ ତଥ୍ୟ ଉଦ୍‌ଘାଟନ କରିବା, ସେହି ବିଶ୍ୱକର୍ତ୍ତାଙ୍କ ସୃଷ୍ଟ ପଦାର୍ଥମାନଙ୍କ ସଂଯୋଗ ବିଯୋଗରେ କି କି ବ୍ୟବହାର୍ଯ୍ୟ ପଦାର୍ଥ ନିର୍ମାଣ କରି ପାରିବା, ଏସବୁ ତଥ୍ୟ ସଂଗ୍ରହ କରିବା ଜ୍ଞାନବିଜ୍ଞାନର କାର୍ଯ୍ୟ । ଜ୍ଞାନବିଜ୍ଞାନ ବିଷୟ ଅନୁଶୀଳନ କରି ଯେ ଯେତେ ପ୍ରକାର ଚିନ୍ତା କରୁଛି ସେ ତେତେ ପ୍ରକାର ଭାବ ପ୍ରକାଶ କରୁଛି ଏବଂ ଭାଷା ଛଟାରେ ନାନା ଆକାର ପ୍ରକାର ପ୍ରକଟ କରୁଛି ।

ସ୍ତ୍ରୀ—ହଇହେ, ଯାହା ତ ଭଗବାନ ସୃଷ୍ଟି କରିଛନ୍ତି ତାକୁ ତ କେହି ଓଲଟାଇ ପାରିବେ ନାହିଁ । ମଣିଷ କଣ ଆରୁ ଗଛଟାକୁ ବାଇଗଣ ଗଛ କରିଦେଇ ପାରିବ ନା ବାଘଟାକୁ ସାପ କରିଦେଇ ପାରିବ ? ଏତେ ସେ କଥାରେ ମୁଣ୍ଡ ପୂରାଇବ କିଆଁ ? ମୁଠାଏ ଖାଇଲି ପିଇଲି ଶୋଇଲି, କାମ ସରିଲା । ଏତେ ଚିନ୍ତା ମୁଣ୍ଡରେ ପୂରାଇ ବ୍ୟସ୍ତ ହେବ କିଆଁ ; ପାଠ ପଢ଼ିବ କିଆଁ, ପୋଥି ଲେଖିବ କିଆଁ ? ଋଣ କରି ଘିଅ ଖାଅ, ସୁଖରେ କାଳ କଟାଅ । ଏତିକି କଲେ ତ ଚଳନ୍ତା ।

ସ୍ୱାମୀ—ତୁମେ ଯାହା କହିଲ, ପଶୁଧର୍ମ କଥା କହିଲ । ଖାଇବା, ଶୋଇବା, ପ୍ରାଣରକ୍ଷା କରିବା, ମୈଥୁନ କରି ପିଲା ଜନ୍ମ କରିବା ଏ ତ ପଶୁମାନେ କରନ୍ତି । ଏ ଚାରି ବିଷୟରେ ମଣିଷ ପଶୁ ସମାନ । କେବଳ ଖାଇପିଇ ଶୋଇବାକୁ କଣ ମନୁଷ୍ୟକୁ ସୃଷ୍ଟି କରା ହୋଇଥିଲା । ଅନ୍ୟାନ୍ୟ ପଶୁପକ୍ଷୀ ଅପେକ୍ଷା ମନୁଷ୍ୟକୁ ବେଶିକି ବୁଦ୍ଧି, ଜ୍ଞାନ, ବିବେକ ଏଗୁଡ଼ିକ ଦିଆଯାଇଥିଲା କାହିଁକି ? ଭଗବାନ ଏ ମାନବ ଶରୀର ଯନ୍ତ୍ର ନିର୍ମାଣ କଲାବେଳେ ଏ ସବୁ

ମାଲ ମସଲା କାହିଁକି ଦେଇଥିଲେ ? ଏପରି କରିବାରେ କିଛି ମହତ୍ ଉଦ୍ଦେଶ୍ୟ ଥିଲା । ମନୁଷ୍ୟ ସାଧନା ବଳରେ ଭଗବାନଙ୍କର ସାକ୍ଷାତ ଲାଭ କରିପାରେ । ପରକାୟ ପ୍ରବେଶ କରିପାରେ, ଏ ତ ମାନବ ପକ୍ଷରେ ଅସାଧ ସାଧନ । ଏହା ଯେଉଁ ପ୍ରାଣୀ କରିପାରେ ସେ ତ ପ୍ରାଣୀ ଜଗତରେ ଶ୍ରେଷ୍ଠ । ମାନବର ନିରାଶ ହେବାର କିଛି ନାହିଁ । ମାନବ ସାହସ ସହିତ କାର୍ଯ୍ୟ କଲେ ତାର କିଛି ଅଭାବ ହେବ ନାହିଁ । ମାନବକୁ ପରମ ପିତା ପରମେଶ୍ୱର ଯେତେ ସମ୍ବଳ ଦେଇଛନ୍ତି ଏବଂ ତାଙ୍କୁ ଯେଉଁ ସଂସାର ଉପବନରେ ଛାଡ଼ିଛନ୍ତି ମାନବର କିଛି ଅଭାବ ନାହିଁ । ଭିତରେ ବାହାରେ ସବୁ ଖଞ୍ଜି ଦେଇଛନ୍ତି, ମାତ୍ର ଆମ୍ଭେ-ମାନେ ସେ ସବୁ ସୁବିଧା ସୁଯୋଗର ଉପଯୋଗ କରି ବ୍ୟବହାର କରିପାରୁ ନ ଥାଇଁ । ତେଣୁ କିଏ ଦୁଃଖ ଭୋଗ କରୁଛି, କିଏ ସୁଖ କରୁଛି । ବିଦ୍ୟା ବଳରେ ଲୋକ ଏ ସଂସାରର ସମ୍ୟକ୍ ଜ୍ଞାନଲାଭ କରି ଆପଣା ଜୀବନକୁ ସୁଖମୟ କରିପାରେ । କେବଳ ପୋଥି ପଢ଼ିଲେ ବିଦ୍ୟାଶିକ୍ଷା ହୁଏ ନାହିଁ । ପୋଥିରେ ଯାହା ପଢ଼ି ଜାଣିବ ସେ ଜ୍ଞାନକୁ କାର୍ଯ୍ୟରେ ଲଗାଇବା ହିଁ ପ୍ରକୃତ ଶିକ୍ଷା । ପ୍ରକୃତିରୁ ଜ୍ଞାନଲାଭ କରିବା ପ୍ରକୃତ ଶିକ୍ଷା । ପ୍ରକୃତି ପର୍ଯ୍ୟବେକ୍ଷଣ ହେଉଛି ପ୍ରକୃତ ଶିକ୍ଷା । ଏ ସଂସାରର ଯାବତୀୟ ପଦାର୍ଥରୁ ଆମ୍ଭମାନଙ୍କ ଶିକ୍ଷା ପାଇଁ ଯାବତୀୟ ଉପାଦାନ ଅଛି । ମନୋନିବେଶ କରି ସେ ସବୁ ସାଧନା କରିବା ହେଉଛି ପ୍ରକୃତ ଶିକ୍ଷା । ଅତି ସାମାନ୍ୟ ତୁଚ୍ଛ ପ୍ରାଣୀ ପ୍ରଭୃତିଠାରୁ ଆମ୍ଭମାନଙ୍କର ଶିକ୍ଷା ପାଇଁ ବହୁତ କଥା ଅଛି ।

ସ୍ତ୍ରୀ—ସାମାନ୍ୟ ତୁଚ୍ଛ ପ୍ରାଣୀଠାରୁ କଣ ଶିକ୍ଷା କରିବ ମ ?

ସ୍ୱାମୀ—ଆହେ, ସାମାନ୍ୟ ପ୍ରାଣୀଠାରେ ଯେଉଁ ଗୁଣ ଅଛି ଆମଠି ନାହିଁ । ଆମଠି ଯାହା ଅଛି ତାଙ୍କଠାରେ ନାହିଁ । ଈଶ୍ବର

ସୃଷ୍ଟି ବିଚିତ୍ର । ସମସ୍ତଙ୍କଠାରେ ସମାନ ଗୁଣ ନାହିଁ । ଦେଖ, ମହୁମାଛି ଯେପରି ମହୁଫେଣା, ମହୁ ତିଆରି କରି ପାରୁଛି ମଣିଷର ଏତେ ବୁଦ୍ଧି ବିବେକ ଥାଇ କରି ପାରୁନାହିଁ । ବଇ ଯେପରି ହୁଙ୍କା ତିଆରି କରିପାରେ, ସେପରି ହୁଙ୍କାଟିଏ ମନୁଷ୍ୟ ତିଆରି କରି ପାରୁନାହିଁ । ବୁଢ଼ିଆଣି ଯେପରି ଜାଲ କରିପାରେ ମନୁଷ୍ୟ ସେପରି କରିପାରେ ନାହିଁ । ପାଟପୋକ ଯେପରି ପାଟକୋଷା କରି ପାରୁଛି, ମନୁଷ୍ୟ ସେପରି କରି ପାରୁ ନାହିଁ । ଏଣ୍ଡିପୋକ ଯେପରି କୋଷାକରି ପାରୁଛି ମନୁଷ୍ୟ ସେପରି କରି ପାରୁନାହିଁ । କୋଇଲି ଯେପରି ଗାଇ ପାରୁଛି ମଣିଷ ସେପରି କରି ପାରୁନାହିଁ । ଏହିପରି ଦେଖିଯାଅ କେତେ ଦେଖିବ । ସୁତରାଂ ଜଗତର ଯାବତୀୟ ପ୍ରାଣୀଠାରୁ ମାନବର ଶିକ୍ଷା କରିବାର ଅଛି । ଅବଧୂତ ପରି ସେଇଥିପାଇଁ ଚବିଶ ଗୁରୁ କରିଥିଲେ । ଏହିପରି ଯେଉଁ ଜ୍ଞାନ ଲାଭ କରାଯାଏ, ତାହା ଶିକ୍ଷା । ପୋଥିପଢ଼ିବା ପ୍ରକୃତ ଶିକ୍ଷା ନୁହେଁ । ପୋଥିରେ ଲେଖାଥିବା କଥାକୁ କାର୍ଯ୍ୟରେ ଲଗାଇବାହିଁ ପ୍ରକୃତ ଶିକ୍ଷା । ପୋଥି ନ ପଢ଼ି, ଅକ୍ଷର ନ ଶିଖି ଲୋକ ଅନେକ କଥା ଶିକ୍ଷା କରିପାରେ । ଜ୍ଞାନ ବିକାଶର ନାମ ପ୍ରକୃତ ଶିକ୍ଷା । ଯାହାର ଜ୍ଞାନ ଯେତେ ବିକଶିତ ହୋଇଛି ସେ ତେତେ ଶିକ୍ଷିତ । ତେଣୁ କହୁଛି ମନୁଷ୍ୟ ପକ୍ଷରେ ଶିକ୍ଷା ନିତାନ୍ତ ଆବଶ୍ୟକ । କି ସ୍ତ୍ରୀ, କି ପୁରୁଷ, କି ବାଳକ ବାଳିକା ସମସ୍ତଙ୍କର ଶିକ୍ଷା ଆବଶ୍ୟକ । ପ୍ରାଣୀ ଜଗତରେ କାହାକୁ ସାନ ବୋଲି ମନେ କରିବ ନାହିଁ । ପ୍ରତ୍ୟେକ ପ୍ରାଣୀଠାରେ କିଛି ହେଲେ ଶକ୍ତି ଅଛି, ଗୁଣ ଅଛି, ଉପକାରିତା ଅଛି । ସବୁ ପ୍ରାଣୀ, ସବୁ ସ୍ଥାବର ଜଙ୍ଗମକୁ ମନୁଷ୍ୟ ତା କାର୍ଯ୍ୟରେ ବ୍ୟବହାର କରୁଛି । ଯାହାଠାରେ ଗୁଣ ଅଛି ମନୁଷ୍ୟ ତାଠାରେ କୃତଜ୍ଞ, ତାକୁ ପୂଜା କରି ଆସିଛି । ହିନ୍ଦୁର ଯେ ତେତିଶ କୋଟି ଦେବତା :— ତାର ଅର୍ଥ ମନୁଷ୍ୟ ଯାହାଠାରୁ ଉପକାର ପାଏ ତାକୁ ଦେବତା ଜ୍ଞାନରେ ପୂଜା କରେ ।

ସ୍ତ୍ରୀ—କାଠ, ପାଷଣ, ତରୁ, ତୃଣ—ଏ ସବୁ କାହିଁକି ପୂଜିବି ମ ?

ସ୍ୱାମୀ—ଶୁଣିନାହଁ ଭାଗବତ କହୁଛନ୍ତି ପରା, କାଷ୍ଠ ପାଷାଣ ତରୁ ତୃଣ, ବସନ୍ତି ଅନାଦି କାରଣ । ଏଥିର ଅର୍ଥ କଣ ? ଭଗବାନ ସର୍ବତ୍ର ବ୍ୟାପି କରି ଅଛନ୍ତି । ସୁତରାଂ, ହିନ୍ଦୁ ଚକ୍ଷୁରେ ଏ ସମଗ୍ର ବିଶ୍ୱଜଗତ ପରମେଶ୍ୱରଙ୍କର ପ୍ରକଟ ମୂର୍ତ୍ତି । ଭଗବାନ ଏ ବିଶ୍ୱ ଜଗତକୁ ସୃଷ୍ଟିକରି ତା ମଧ୍ୟରେ ବିରାଜିତ ଅଛନ୍ତି । ଭଗବାନଙ୍କ ଇଚ୍ଛାନୁସାରେ ଏ ଜଗତ ସୃଷ୍ଟି ହୋଇଛି ପୁଣି ପ୍ରଳୟ ହେଉଛି । ବୁଢ଼ିଆଣୀକି ଦେଖିଥିବ । ସେ ତା ଗର୍ଭ ଭିତରୁ ଗୋଟାଏ ଜାଲ ବାହାର କରେ, ପୁଣି ତା ଇଚ୍ଛାନୁସାରେ ତାକୁ ଭିତରକୁ ନେଇଯାଏ । ଜାଲ କରି ତା ମଧ୍ୟରେ ବିଚରଣ କରୁଥାଏ । ଏ ବିଶ୍ୱ ଜଗତଟା ସେହିପରି । ମନୁଷ୍ୟ ଏତେ ଦମ୍ଭ ଅହଙ୍କାର କରୁଛି, ଜ୍ଞାନବିଜ୍ଞାନର ଆସ୍ଫାଳନ କରୁଛି, କିନ୍ତୁ କହିଲ ଦେଖି ଗୋଟିଏ ଘାସଗଛ କି ଗୋଟିଏ ଫୁଲ ତିଆରି କରି ପାରୁନାହିଁ । ତେବେ ମନୁଷ୍ୟର ଶକ୍ତି କେତେ ? ଈଶ୍ୱରସୃଷ୍ଟ ପଦାର୍ଥମାନଙ୍କୁ ଆପଣା କାର୍ଯ୍ୟରେ ଲଗାଇବାପାଇଁ ନାନା କାରିଗରି କରିପାରୁଛି ସତ; କିନ୍ତୁ ଗୋଟିଏ ପ୍ରାଣୀ କି ଗୋଟିଏ ଘାସ ଗଛ କରି ପାରିବାର ଶକ୍ତି ନାହିଁ । ସେହିହେତୁ ମାନବର ସମସ୍ତେ ପୂଜ୍ୟ, ସମସ୍ତେ ନମସ୍ୟ । ଏହିସବୁ କଥା ଚିନ୍ତା କଲେ ମନୁଷ୍ୟ ସୃଷ୍ଟିକର୍ତ୍ତାଙ୍କ ନିକଟରେ ସ୍ୱତଃ ନତମସ୍ତକ ହୋଇ ପଡ଼େ ।

ସ୍ତ୍ରୀ—ହଁ, ସେ କଥା ସତ । ଆଚ୍ଛା, ତେମେ ଏ ଜଗନ୍ନାଥବଲ୍ଲଭ ମଠ ବିଷୟ ବୁଝା ସୁଝା କଲାପରେ ସେ ଗୋପାଳ ଜିଉଙ୍କ ନାଁରେ; କଣ ଗୀତ କରିଥିଲ ପରା, ବୋଇଲ ?

ସ୍ୱାମୀ—ଆଚ୍ଛା, ଶୁଣ କହୁଛି—

ଜୟ ହେ ଗୋପାଳ ଜୟ ହେ ଗୋପାଳ
ଜୟ ନନ୍ଦସୁତ ଜୟ ବସୁଦେବ ବାଳ ହେ । ପଦ ।
ବୃନ୍ଦାବନେ ରାସ ହେ ଗୋପାଳ ପୀତବାସ
ଗୋପ ରମଣୀଙ୍କ ଆଶା ଥିଲା କେତେ କାଳ ହେ । ୧ ।
କେ ଗୋପୀ ମନେ ଗରବ ବହ୍ନି କଲା ହୃଦ୍ଭାବ
ଛଳ କାନନେ ଅଦୃଶ୍ୟ ହେଲ ଆଦ୍ୟମୂଳ ହେ । ୨ ।
ଖୋଜ ଖୋଜ ଗୋପୀଗଣ ଥକା ହେଲେ ଋଣଭଣ
ରାଇ ସଙ୍ଗତ ନ ଖୋଜଲେ ବନେ ବହୁବେଳ ହେ । ୩ ।
ଛଳ ଚତୁର୍ଭୁଜ ହେଲ ଗୋପୀମାନଙ୍କୁ ଭେଟିଲ
ରାଇ ବୋଲେ ନୁହ ତୁଲେ ସେ ନନ୍ଦଦୁଲାଳ ହେ । ୪ ।
ଦ୍ୱିଭୁଜ ମୁରଲୀଧାରୀ ତ୍ରିଭଙ୍ଗ ଠାଣି ମାଧୁରୀ
ନଟବର ବେଶେ ପୁଣି ଗୋପୀଙ୍କି ଭେଟିଲ ହେ । ୫ ।
ନିତି ନିତି ନବ ବେଶ ତୁମ୍ଭେ ପ୍ରଭୁ ଜଗଦୀଶ
ଭକତି ଡୋରରେ ବନ୍ଧା ଅଛ ସଦା କାଳ ହେ । ୬ ।
ଜଗନ୍ନାଥ ବଲ୍ଲଭରେ ଆସ୍ଥାନ ପୁରୀ ଧାମରେ
ମାଲୁଣି ପଛରେ ବୁଲି ଗୀତ ଶୁଣୁଥିଲ ହେ । ୭ ।
ଗୀତ ଗୋବିନ୍ଦ ମଧୁର ଗୀତ ଶୁଣି ମନ କଲ
ଉପବନ କଣ୍ଟାରେ ବସନ ଚିରିଥିଲ ହେ । ୮ ।
ପ୍ରେମ ଭକତିରେ ବନ୍ଧା ସରିଜାଛ ଭବ ଧନ୍ଦା
କନ୍ଦାଇ କନ୍ଦାଇ ମାରି ମୋର କେତେ ବଳ ହେ । ୯ ।
ନ ହେଲେ ତବ କରୁଣା ବୁଦ୍ଧି ହୋଇଥାଏ ବଣା
ନ ମିଳିବ ଦରଶନ ଖୋଜ କାଳ କାଳ ହେ । ୧୦ ।

ଜଗତବନ୍ଧୁ ଭାବନା ପୂରାଅ ତାର କାମନା
ଆଉ ଆଖିରେ ଚାହିଁଲେ ଯିବ ଦୁଃଖଜାଳ ହେ । ୧୧ ।

—୫✳୫—

## ୧୯ଶ ପରିଚ୍ଛେଦ

## ନାରୀ ସ୍ୱାଧୀନତା

ସ୍ତ୍ରୀ—ହଇହେ, କି କାଳ ହେଲା ମ ! କଟକରେ ଶୂଦ୍ର ବର ସଙ୍ଗେ ବ୍ରାହ୍ମଣ କନ୍ୟାର ବିବାହ ହୋଇଗଲା କିପରି ମ ? କାଲି କୁଆଡ଼େ ଲଙ୍କାରେ ପଶିଲା ମ ! ଆହୁରି ଶୁଣିଥିଲି ବ୍ରାହ୍ମଣକନ୍ୟା ପଠାଣ ବରକୁ ବାହାହେଲା । ଏସବୁ କଥା କଣ ସତ ?

ସ୍ୱାମୀ—ସତ ନୁହେ କଣ ମିଛ ! ଆହେ ଏ ତ କଳିକାଳ । ଏ କାଳରେ ଯାହା ମନ ଯା ହେଲା ସେ ତା କଲା । ଧର୍ମ୍ମ କର୍ମ୍ମ ତ ଚୁଲିରେ ପଶିଲାଣି । କୁଳାଚାର , ଦେଶାଚାର ଏ ତ ସବୁ ଲୋପ ହେଲାଣି । ସାନ ବଡ଼ ମାନନା, ଗୁରୁଜନ ମାନନା ସବୁ ସରିଲାଣି, ଏ କାଳକୁ ସବୁ ହେଲାଣି । ଏବେ ବାହାଘରରେ ଲୋକେ ତ ବାପ ମାଆଙ୍କ ମତକୁ ଅପେକ୍ଷା କରୁ ନାହାନ୍ତି । ମାଇପି ପିଲା ମରଦ ପିଲା ଏକାଠି ବସି ବିଦ୍ୟାଳୟମାନଙ୍କରେ ପାଠ ପଢ଼ିଲେ । ବାହାଘର ତ ସେଇଠାରୁ ଠିକଣା ହୋଇ ଯାଉଛି । କନ୍ୟା କହୁଛି ଏ ବରକୁ ବାହା ନ ହେଲେ ହେବ ନାହିଁ, ବର କହୁଛି ସେ କନ୍ୟା ନ ହେଲେ ହେବ ନାହିଁ । ଜାତିପତି କିଛି ଖୋଜା ଲୋଡ଼ା ନାହିଁ । ଯାହାର ଯାହାଠି ମନ ମାନିଗଲା ସେ ତାର ବର, ସେ ତାର କନ୍ୟା । ଏଥିରେ ଜାତିପତି କୁଳ ଗୋତ୍ର କିଛି ଲୋଡ଼ା ନାହିଁ ।

ସ୍ତ୍ରୀ—ଆଚ୍ଛା; ଏପରି ତ ହେଉଛି, ଜାତି କୁଳ ମାନ ଧରୁ ନାହାନ୍ତି ?

ସ୍ୱାମୀ—କିଏ କାହାକୁ ଧରୁଛି ହେ । ସେମାନେ ମୋଡ଼ ମାଡ଼ ହୋଇ ରହିଲେ । କେହି ତ କାହା କଥା ମାନୁ ନାହିଁ, କହିଲେ କଣ ହେବ ? ଆମ ଦେଶ ଖାଦ୍ୟ ମିତ ଭୁଲି ଚଳନ ପହରଣ ଆସନ ବସନ ସବୁ ତ ବଦଳି ଗଲାଣି । ଏଇଲାଗେ ସାହେବାଣୀ ସାହେବ ଯାହା କରିବେ ତାହା ସୁନ୍ଦର, ସେଇଆ କରିବାକୁ ହେଉଛି । ସ୍ତ୍ରୀ ସ୍ୱାଧୀନତା ଅର୍ଥ ମାଇପେ ଧଣ୍ଡସାପ ପରି ଦାଣ୍ଡରେ ବୁଲିବେ । ପୁରୁଷ କାନ୍ଧରେ ହାତପକାଇ ହଲ ହଲ ହୋଇ ଗୁଲବୁଲ କରିବେ । ସମିତିରେ ବସିବେ, ବକ୍ତୃତା କରିବେ, ନାଚିବେ, ଗୀତ ଗାଇବେ, ଦାଣ୍ଡ ହାଟ ବଜାରରେ ବୁଲି କଥା କହିବେ, ଓଢ଼ଣା କାଢ଼ି ପକାଇ ଦେବେ, ବଡ଼ି, ସେମିଜ, ସାୟା, ଗାଉନ ପିନ୍ଧିବେ । ଏଇ ତ ହେଲା ସ୍ୱାଧୀନତା । ଆମେ ଆମ ଇଚ୍ଛାରେ ସବୁ କରିବୁଁ, କାହା ଅଧୀନରେ ଚଳିବୁଁ ନାହିଁ । କାହା କଥା ମାନିବୁ ନାହିଁ । ଅର୍ଥାତ୍ ସ୍ୱ ଅର୍ଥ ଆପଣା ଅଧୀନତା, ଆମେ ଆମ ଅଧୀନରେ ରହିବୁଁ, ଅନ୍ୟ କାହା ଅଧୀନରେ ରହିବୁଁ ନାହିଁ । ସ୍ୱାଧୀନତାର ଏହି ଅର୍ଥ ବର୍ତ୍ତମାନ ଲୋକେ ବୁଝୁଛନ୍ତି । ଗୁଣ କିଛି ଥାଉ ନ ଥାଉ, ବାହାର ପରିହଣ, ଘରଚଳଣିଟା ସାହେବାଣୀଙ୍କ ପରି କରି ପାରିଲେ ସ୍ୱର୍ଗ ନିକଟ ହୋଇଗଲା !

ସ୍ତ୍ରୀ—ଆମ ଦେଶରେ କଣ ଆଗେ ସ୍ତ୍ରୀମାନେ ସ୍ୱାଧୀନା ନ ଥିଲେ ?

ସ୍ୱାମୀ—ଆମ ଦେଶରେ ସ୍ତ୍ରୀମାନଙ୍କୁ ଯେଉଁ ସ୍ଥାନ ଦିଆଯାଇଥିଲା ଅନ୍ୟ ଦେଶ ସେ କଥା କଳ୍ପନା କରି ପାରି ନାହିଁ । ଆମ

ଦେଶରେ ସ୍ତ୍ରୀର ସ୍ଥାନ ଅତି ଉଚ୍ଚରେ ଥିଲା । ଆଗ ସେମାନଙ୍କ ସମ୍ମାନ, ବର କନ୍ୟା ଗଲାବେଳେ ଆଗେ କନ୍ୟା ଯିବ । ସେମାନେ ଗୃହଲକ୍ଷ୍ମୀ, ଦେବୀ, ଗୃହିଣୀ, ସହଧର୍ମିଣୀ ଇତ୍ୟାଦି ଥିଲେ । ଆଜକାଲି ଏ ଶବ୍ଦ-ଗୁଡ଼ାକ ଆଉ ବ୍ୟବହାରରେ ଆସୁନାହିଁ । ଆଜକାଲି ଅଦ୍ଭୁତ ନାମ ସବୁ ବ୍ୟବହାର ହେଉଛି (ମିଷ୍ଟର ମହାନ୍ତି, ମିଷ୍ଟ୍ରେସ୍ ମହାନ୍ତି)ଅର୍ଥାତ୍ ମହାନ୍ତି ମହାନ୍ତି ମାଇପ । ହବକ୍, ମହିଳା ହବକ, ରାମ ମହିଳା ରାମ ଇତ୍ୟାଦି । ଏଥିରୁ କଣ ଦେଖାଯାଉଛି ? ସେମାନେ ସ୍ତ୍ରୀର ମହତ୍ତ୍ୱ ଆଉ ଅଧିକ କଳ୍ପନା କରି ନାହାନ୍ତି । କରିବେ ବା କିପରି ? ସେ ଦେଶମାନଙ୍କରେ ସ୍ତ୍ରୀ ମନ ମାନିଥିବା ଯାଏ ମାଇପ ହେବ, ସମ୍ପର୍କ ତୁଟିଲେ ଗଲା । ଯେଉଁ ଦେଶରେ ଖଇତା ମାଇପ ଛାଡ଼ପତ୍ର-ପାଇଁ ଆଇନ ଅଦାଲତ ବସିଛି, ପ୍ରତିଦିନ ହଜାର ହଜାର ଛାଡ଼ପତ୍ର ମକଦ୍ଦମା ହେଉଛି, ସେଠାରେ ଦାମ୍ପତ୍ୟ ପ୍ରଣୟର କଳ୍ପନା ଅଧିକ କଣ ହୋଇପାରେ ! ଆମ ଦେଶ ବର୍ତ୍ତମାନ ସେହି ଅନୁକରଣ କରିବାକୁ ଯାଉଛି । ଅନୁକରଣ ଏଇଲାଗେ ଦେଶରେ ଚାଲୁ ହୋଇଛି । ଯେଉଁ ଆଡ଼କୁ ଚାହିଁ ମୟୂର ପୁଚ୍ଛଧାରୀ କାକ ଭେଳା ଭେଳା ହୋଇ ବୁଲୁଛନ୍ତି । ପୁରୁଷ ଯେ ଏଥିରୁ ବାଦ୍ ପଡ଼ୁଛନ୍ତି ତା ନୁହେ । ସେମାନଙ୍କ ଦଶା ମଧ୍ୟ ସେହିପରି ।

ନାରୀ ସ୍ୱାଧୀନା ହୋଇବ ଏ ଦେଶ ବିଦେଶେ ଅଛି ଯେପରି ।
ସାହାବାଣୀ ଯେଉଁ ବେଶ ପିନ୍ଧୁଛନ୍ତି ବେଶ ହୋଇବ ସେପରି ।୧।
ଘର ଦ୍ୱାର ଆଉ ସୁଖ ଲାଗୁ ନାହିଁ ଯାଉଛନ୍ତି ଦାଣ୍ଡ ବୁଲି ।
ଲାଜ ଶରମ, କୁଳ ଶୀଳ, ଜାତି ମାନ, ସକଳ ଗଲେଣି ଭୁଲି ।୨।
ସଭା ସମିତିରେ ଯାଇ ବସିଲେଣି ମୁଣ୍ଡରୁ ଓଢ଼ଣା କାଢ଼ି ।
ପୁରୁଷ ସହିତ ମିଳାମିଶା ହୋଇ କଥା କହିଲେଣି ବଢ଼ି ।୩।

ପୁରୁଷ ଦେଖିଲେ ଡର ଭୟ ନାହିଁ ପେଲ ବୁଲୁଛନ୍ତି ଦାଣ୍ଡେ ।
ହାଟ ବଜାର ଯାତ୍ରା ମେଳା ଦୋକାନେ, ବନ୍ଧକ ପଣନ୍ତ ବୁଲନ୍ତେ ।୪।
କେଉଁ କାଳେ ସିନା ରବି ଚନ୍ଦ୍ର ତାରା ନାରୀଙ୍କି ଦେଖି ନ ଥିଲେ ।
ଏ କାଳକୁ ତାଙ୍କୁ ଲଜ ମାଡ଼ିଲଣି ବିବସେ ଲୁଚନ୍ତି ବଳେ ।୫।
ଅବଳା ପ୍ରବଳା ହେଲେ କଳିକାଳେ ପୁରୁଷ ରହିଲେ ଡର ।
କଥା କଥାକେ ସେ ଅଡ୍ରିପ୍ସ ଭାଷଣ ଦେଉଛନ୍ତି ବଳେ ଭର ।୬।
ହାତ ଶଙ୍ଖା ଶାଢି ସିନ୍ଦୂର ଲୁଚିଲା ନାକ କାନ ଫୋଡ଼ା ହୀନ ।
ଗୁଣା ବସଣି ଫାସିଆ ଦଣ୍ଡି କାପ ସକଳେ ଭଜିଲେ ଲୀନ ।୭।
ଜୁଡ଼ା ବେଣି ଖୋଷା ସକଳ ଛାଡ଼ିଲେ କେଶ କଲେଣି ମୁକୁଳା ।
ବଡ଼ିସେମିଜ ସାୟା ଆଉ ପିନ୍ଧନ୍ତି ହୋଇଣ ଅର୍ଦ୍ଧ ଦୁକୂଳା । ୮ ।
କଳା ପାହୁଡ଼ ପାଉଞ୍ଜି ବାଙ୍କିଆଦି ସକଳ ଦେଲେଣି କାଢ଼ି ।
ବିଷପିଡା ପରି ଲଗିଲଣି ଏବେ ପାଟ ପୀତାମ୍ବର ଶାଢ଼ି । ୯ ।
ରନ୍ଧାବଢ଼ା କାମ ଅଡ଼ୁଆ ହେଲଣି କାଳେ ଲଗିଯିବ କଳା ।
ହକ ହକ ହୋଇ ଦାଣ୍ଡକୁ ବାହାର କି କାଳ ହେଲା ଅବଳା ।୧୦।
ପିଲା ପାଳିବାକୁ ଅଡ଼ୁଆ ଲଗିଲା ଧାଈ ମୁଦୁସୁଲି ଲୋଡ଼ା ।
ଜନମ କରିବା କାମୁଟା ଅଡ଼ୁଆ ଲଗିଲଣି ଥୋଡ଼ା ଥୋଡ଼ା ।୧୧।
ପୁରୁଷଙ୍କ ସଙ୍ଗେ ସମ ଅଧିକାର ପାଇବାକୁ ସଦା ମନ ।
ଆହୁରି ସୁଖିମା ହୁଅନ୍ତେ ସେମାନେ ପୁରୁଷ କଲେ ଜନମ ।୧୨।
କେବଳ ପହରକେ ଶେଯରୁ ଉଠନ୍ତି ପଢ଼ୁଛନ୍ତି ଉପନ୍ୟାସ ।
ଭାଗବତ ଆଉ ବିଷ ଲଗିଲଣି ଲେଖିଥିଲେ ବେଦବ୍ୟାସ ।୧୩।
ଦାଣ୍ଡହାଟେ ଗଲେ ଆଖି ବୁଲୁଥାଏ କାହାରି ଗହଣା କେତେ ।
କଏ କେଉଁ ପରି ବସନ ପିନ୍ଧିଛି ମୋହରି ତ ନାହିଁ ଏତେ ।୧୪।
ଡଇଁ ହେଉଅଛି ମନ ସଦାବେଳେ ଆୟ ଅଳଙ୍କାର ଦେଖି ।
ଯେଉଁଠି ଯାହା ସବୁ ନୂଆ ନୂଆ ମନ ଚହିଁ ଯାଏ ଲଖି ।୧୫।

ଆପଣା ଅବସ୍ଥା ବିଚାରି ନ କରି ଉତଳ ବିକଳ ମନ ।
ଗହଣା ବସନ କିଣାବିକା ହେବ ବିକିଦେଇ ଧନଧାନ୍ୟ । ୧୬ ।
ସ୍ୱାଧୀନତା ନାମେ ଏତିକି ହୋଇଛି ଆମଦେଶ ନାରୀଙ୍କର ।
କେତେ ଜଣ ଅବା ପଢ଼ାଶୁଣା କରି ହେଉଛନ୍ତି ନଉକର । ୧୭ ।
ବିଧାତା ନିଷ୍ଠୁର ଗଢ଼ିଲା ବେଳରୁ କରିଅଛି ଅସମାନ ।
ବୁଦ୍ଧି ଦିଶୁନାହିଁ କିପରି ପୁରୁଷ ସହିତ ହେବେ ସମାନ । ୧୮ ।
ମାଆ ମାଉସିଏ ଦୋଷ ନ ଧରିବ ମୋହରି ଏ ଲେଖା ପଢ଼ି ।
ଛାଡ଼ି ନିଜ ଧର୍ମ୍ମ କଲେ ଆନ କର୍ମ୍ମ ମରିବଟି ପଛେ ବୁଡ଼ି । ୧୯ ।
ଯେଉଁ ଦେଶେ ଆମ ଜନମ ହୋଇଛି ସେ ଦେଶ ଫଳ ସୁଆଦ ।
ପର ଦେଶ ଫଳ ଖାଇଲେ ପଡ଼ିବ ଅବଶ୍ୟଟି ପରମାଦ । ୨୦ ।
ନିଜ ଦେଶ ଧର୍ମ୍ମ କୁଳାଚାର କର୍ମ୍ମ ନିଜର ଅଟଇ ବଡ଼ ।
ପରପ୍ରୀତି ସଦାକାଳେ ପରମାଦ ଏ କଥା କେବେ ନ ହୁଡ଼ । ୨୧ ।
ନିଜ ଆୟବ୍ୟୟ ଦେଖି ଯେ ନ ଚଳେ ସେ କି ଘରର ଘରଣୀ ।
ତାହା ଲାଗି ଘର ହୁଏ ଛାରଖାର ବୋଲାଏ ସେ ଅଲକ୍ଷଣୀ । ୨୨ ।
ଅପ୍ରିୟଭାଷିଣୀ ଯେତେକ ରମଣୀ ଗୃହସ୍ଥାଶ୍ରମକୁ ସଲ ।
ପଦାଘାତେ ଯାର ମଥା ଚମକଇ କେବେହେଁ ସେ ନୁହେ ଭଲ । ୨ ।

ସ୍ତ୍ରୀ—ତେମେ ଖାଲି ସବୁବେଳେ ମାଇପଙ୍କ ଦୋଷ ଦେଖୁଥାଅ । ମାଇପେଗୁଡ଼ାକ ଖାଲି ଘରକଣରେ ପଡ଼ି ସଡ଼ୁଥିବେ, ସେ ଆଉ କୁଆଡ଼େ ଯିବେ ନାହିଁ, ଆସିବେ ନାହିଁ, କାହାକୁ କଥା କହିବେ ନାହିଁ; ଏଥିରେ କଣ ଦୋଷ ଅଛି ମ ?

ସ୍ୱାମୀ—ଆହେ, ଦୋଷ ଅଛି ବୋଲି ତ କହିଲି ନାହିଁ, କହୁଛି ସବୁ କାର୍ଯ୍ୟର ଗୋଟିଏ ସୀମା ଅଛି । ସୀମାରୁ ବଳି ପଡ଼ିଲେ ସବୁ କାର୍ଯ୍ୟ ଅସୁନ୍ଦର । ଗୃହସ୍ଥାଶ୍ରମରେ ଯେତେ କାର୍ଯ୍ୟ ହେବ

ସେଥିରେ ପୁରୁଷର ଅଂଶ ଅଛି, ସ୍ତ୍ରୀର ମଧ୍ୟ ଅଂଶ ଅଛି । ତେବେ ଯେଉଁ କାର୍ଯ୍ୟ ଯାହା ହାତରେ ସୁରୁଖୁରୁଭାବେ ହେବ ତାକୁ ସେ କାର୍ଯ୍ୟର ଭାର ଦିଆଯାଇଛି । ଗୃହସ୍ଥାଶ୍ରମ ସୁରୁଖୁରୁରୂପେ ଚଳିବାପାଇଁ ଯେତେ ଯେତେ କାର୍ଯ୍ୟ ଆବଶ୍ୟକ ତାହା ଦୁଇଟା ଭାଗରେ ବିଭକ୍ତ । ଯଥା:—ଅନ୍ତଃପୁର ବିଭାଗ, ବହିଃପୁର ବିଭାଗ । ପ୍ରଥମ ବିଭାଗରେ ସ୍ତ୍ରୀର ପୂର୍ଣ୍ଣ ଅଧିକାର, ଅବଶ୍ୟ ପୁରୁଷର ପରାମର୍ଶ ସମୟ ସମୟରେ ଲୋଡ଼ା ପଡ଼ିବ । ସେହିପରି ବହିଃପୁର କାର୍ଯ୍ୟରେ ପୁରୁଷର ପୂର୍ଣ୍ଣ ଅଧିକାର, ତଥାପି ସମୟ ସମୟରେ ସ୍ତ୍ରୀର ମତ ଲୋଡ଼ା ପଡ଼ିବ । ପ୍ରତ୍ୟେକ ପ୍ରତ୍ୟେକ ବିଭାଗର କାର୍ଯ୍ୟ ସୁରୁଖୁରୁଭାବେ ଚଳାଇଲେ ଗୃହସ୍ଥାଶ୍ରମ ସ୍ୱର୍ଗ ରାଜ୍ୟରେ ପରିଣତ ହେବ, ଅନ୍ୟଥା ନରକରେ ପରିଣତ ହେବ । ସ୍ତ୍ରୀ ଯେବେ ଅନ୍ତଃପୁର କାର୍ଯ୍ୟ ସୁରୁଖୁରୁରୂପେ ଚଳାଏ ତେବେ ତାକୁ ଅନ୍ୟ ବାହାର କାର୍ଯ୍ୟ ପାଇଁ ବେଳ କାହିଁ ? ଗୀତ ଗାଇ, ଉପନ୍ୟାସ ପଢ଼ି, ରଙ୍ଗ ରହସ୍ୟ କରି ସମୟ ହେବ କେଉଁଠୁ ? ହିନ୍ଦୁ ଗୃହସ୍ଥର ଆଶ୍ରମ କେବଳ ତାଙ୍କର ପାଇଁ ନୁହେଁ, ଏହା ପରୋପକାରାର୍ଥେ ଅନୁଷ୍ଠିତ । ଅନ୍ୟାନ୍ୟ ବିଦେଶୀଏ ଗୃହସ୍ଥାଶ୍ରମ କେବଳ ନିଜ ପାଇଁ । ସେଥିପାଇଁ କହୁଛି ନିଜ ଦେଶ ଆଚାର ବ୍ୟବହାର ନିଜକୁ ବଡ଼ । ତାକୁ ଛାଡ଼ି ଦେଇ ଅନ୍ୟ ଦେଶ ଆଚାର ବ୍ୟବହାର ଅନୁକରଣ କଲେ ଖାପ ଖାଇବ ନାହିଁ । ଦେଖୁଛ ତ ଇଂରେଜମାନେ କେତେକ ବର୍ଷ ହେଲା ଭାରତକୁ ଆସିଲେଣି ସେମାନେ କଣ ଆମ ଭାରତର ଆଚାର ବ୍ୟବହାର କରୁଛନ୍ତି ? ଆମେ ତାଙ୍କୁ ଦେଖି ତାଙ୍କ ପରି ହେବାକୁ ସିନା ଉହାଳ ବିକଳ ହେଉଥାଇଁ, ସେମାନେ ତ ଆମ ପରି ହେବାକୁ ଉହାଳ ବିକଳ ହେଉ ନାହାନ୍ତି । ସେ ତାଙ୍କ ଦେଶ ଚାଲିଚଳି ବଜାଏ ରଖିଛନ୍ତି, କିନ୍ତୁ ଆମେ ତାଙ୍କ

ହାଲଚାଲ ଅନୁକରଣ କରିବାକୁ ବ୍ୟାକୁଳ, ଏଇଟା ଭଲ ନୁହେ । ଆଜି ଏତିକି ।

---

## ବିଂଶ ପରିଚ୍ଛେଦ

## ରଥଯାତ୍ରା

ସ୍ତ୍ରୀ—ହଇହେ, ଆଜି ଏତେ ଚଞ୍ଚଳ ସଜବାଜ ହୋଇ କୁଆଡ଼େ ବାହାରିଲଣି ? କେଉଁଠିକି ଯିବ କି ?

ସ୍ୱାମୀ—ଆହେ, ଆଜି ଟିକିଏ ଗୁଣ୍ଡିଚାଘରଠାକୁ ଯିବା । ଆଜି ଜଗନ୍ନାଥ ମହାପ୍ରଭୁ ବାହୁଡ଼ା ବିଜୟ କରିବେ ପରା ?

ସ୍ତ୍ରୀ—ଆମକୁ ସାଥିରେ ନେଇ ଯାଉ ନାହଁ ! ତମେ କଣ ଖାଇବା ପାଇଁ ଆସିବ ନାହିଁ ? ରନ୍ଧାବଢ଼ା ତ ସରିନାହିଁ । ଆମେ ଖାଇ ସାରିଲେ ସାଙ୍ଗହୋଇ ଯିବା ନାହିଁ ?

ସ୍ୱାମୀ—ନାହିଁ ନାହିଁ, ତୁମ୍ଭେମାନେ ଖାଇ ପିଇ ଆସ । ମୁଁ ଯାଉଛି ସେଣେ କେଉଁଠି ଟିକିଏ ପ୍ରସାଦ ପାଇ ଦେବି । ତମମାନଙ୍କୁ ସାଥିରେ ନେଲେ ଆଉ ଦିଅଁ ଦର୍ଶନ ହେବ ନାହିଁ ।

ସ୍ତ୍ରୀ—ଆମେ କଣ ତମ ଆଖି ମୁଡ଼ି ଦେବୁ କି ? ଆମ ଗୋଡ଼ରେ ତ ଆମେ ଯିବୁ, ତମ ଗୋଡରେ ତ ତମେ ଯିବ । ଦିଅଁ ଦର୍ଶନ ହେବ ନାହିଁ କିଆଁ ମ ?

ସ୍ୱାମୀ—ଆହେ, ସେ କଥା ନୁହେଁ ଯେ ଗୁଡ଼ିଏ ସାଥିରେ ନେଇ ଗଲେ ଦୃଷ୍ଟିର କେତେକ ଅଂଶ,ମନର କେତେକ ଅଂଶ ତମମାନଙ୍କ ଆଡ଼େ ରହିଯିବ । ତମମାନଙ୍କ ସୁବିଧା, ଅସୁବିଧା, କେଉଁଠି ଠିଆ

ହେବ, କେଉଁଠି ଭଲରେ ଦେଖି ପାରିବ, ଲୋକ ଗହଳରେ ତମମାନଙ୍କ ହାତକୁ ଆଉ ଆସିବ ନାହିଁ, ଏ ସବୁ କଥାଗୁଡ଼ିକ ଦେଖୁ ଦେଖୁ ମନଟା ହିଁଅ ଆଡ଼କୁ ପୂର୍ଣ୍ଣମାତ୍ରାରେ ନ ଯାଇ ବେଳେ ବେଳେ ତମମାନଙ୍କ ଆଡ଼କୁ ଫେରି ଆସୁଥିବ । ମନଟା ତ ସହଜେ ଚଗଲ । ଏକୁଟିଆ ଗଲେ ମଧ୍ୟ କେତେ କଥା କେଉଁ ଆଡ଼ୁ ଆସି ତାକୁ ଟାଣିନଏ, ତହିଁରେ ପୁଣି ତମମାନଙ୍କୁ ପଞ୍ଝାଏ ନେଇକରି ଗଲେ ଆଉ ରକ୍ଷା ନାହିଁ । ଦେବ ଦର୍ଶନ ବେଳେ ମନଟା ଯେବେ ପୂର୍ଣ୍ଣମାତ୍ରାରେ ତାଙ୍କ ଶ୍ରୀଚରଣରେ ରହେ ତେବେ ସେ ଦର୍ଶନରେ ଫଳ ଅଛି, କେବଳ ଯାତ୍ରା ଦେଖିବା ନ୍ୟାୟରେ ଦେଖିଲେ କି ଫଳ ? ଦେବତା ଭାବର ଅଧୀନ, କିନ୍ତୁ ଆମର ସେ ଭାବ କେଉଁଆଡ଼େ ପଛରେ ପଡ଼ିରହେ । ଆମେ ଦେଖୁ, କେତେ ଲୋକ ଆସୁଛନ୍ତି, କେଉଁ କେଉଁ ଦେଶର ଲୋକେ ଆସୁଛନ୍ତି, କିଏ କି କି ଅଳଙ୍କାର ଲଗାଇଛି, କିଏ କି ପ୍ରକାରର କେତେ ଦରର ଲୁଗା ପିନ୍ଧିଛି, ଇତ୍ୟାଦି ଇତ୍ୟାଦି କେତେ ବାଜେ କଥାରେ ମନ ଭୁଲିଯାଏ । ହିଁଅ ଦେଖିଗଲେ ଏକମନ ଏକପ୍ରାଣ ଏକଭାବ ନେଇ ଯିବ । ତାମସା, ଯାତ୍ରା ପ୍ରଭୃତି ଦେଖି ଦେଖି ଆମ ଦୃଷ୍ଟି ତ ବାରଆଡ଼େ ଖେଳେ; ମନ ତ ବାର ଆଡ଼କୁ ଟାଣି ହୋଇଯିବ, ଆଉ ହିଁଅ ଦେଖିବାକୁ ମନ ଧ୍ୟାନ ଦେଇ ପାରିବ ନାହିଁ ।

ସ୍ତ୍ରୀ—ଲକ୍ଷ ଲକ୍ଷ ଲୋକ ତ ପୁଣି ଦୂରରୁ ହିଁଅ ଦେଖିବାକୁ ଆସୁଛନ୍ତି ସେମାନେ କଣ ଦେଖୁ ନାହାନ୍ତି ?

ସ୍ୱାମୀ—ଆସୁଛନ୍ତି, ଦେଖୁଛନ୍ତି, କିନ୍ତୁ ଦେଖିଲାପରି କେତେଜଣ ଦେଖନ୍ତି ? କିଏ କେତେ ପ୍ରକାର ମନ ନେଇ ଆସନ୍ତି, କେତେ ପ୍ରକାର ମନ ନେଇ ଯାନ୍ତି ତାର କଣ ସୀମା ଅଛି ? କିଏ ରଥ ଦେଖି ବୋଧ ହେଉଛି, କିଏ ରଥ ମଣ୍ଡପ ଦେଖି ବୋଧ ହେଉଛି, କିଏ ରଥ ଚଳା, କିଏ ରଥ ଦଉଡ଼ି ଟାଣି, କିଏ ଲୋକ ସମୁଦ୍ର ଦେଖି, କିଏ ଖଣ୍ଡୁ

ମୁଣ୍ଡ କାଟି, ଚିକଣ ସୁନ୍ଦର ପାନଆ, କଏ ଆମ୍ବ ମାଛ ଶୁଖୁଆ କିଣି, କଏ ଦେଉଳର ଚକ ଦେଖି, କଏ ଦେଉଳ ଦେଖି, କଏ ରଥ ବାହୁଡ଼ା ଗୀତ ଶୁଣି, କଏ ସବାକ୍ ଚଳଚ୍ଚିତ୍ର ଦେଖି, କଏ ଜଗନ୍ନାଥଙ୍କ ପହଣ୍ଡି ଦେଖି, କଏ ଜଗନ୍ନାଥଙ୍କ ଚାହାଣି ଦେଖି, କଏ କେତେ ପ୍ରକାର ମନରେ ଯିବା ଆସିବା କରୁଛନ୍ତି ତା ଗଣି ହେବ ନାହିଁ, କଳି ହେବ ନାହିଁ । କେତେ ଜଣ ଅବା ଦେଖିଥିବେ । ଯାହା ଦେଖି ଆସି ପଞ୍ଚାଏ ଏକାଠି ହେଲେ ସେତେବେଳେ ମଧ୍ୟ କଏ ଶାଶୁ ଗୁଣ ଗାଏ, କଏ ବୋହୂ ଗୁଣ ଗାଏ, କଏ ଭାଇଭାଇ ବିବାଦ କଥା କହେ, କଏ ଧନ କଥା, କଏ ଜନ କଥା, କଏ ଅଳଙ୍କାର କଥା, କଏ ଲୁଗାପଟା କଥା ; ଯାବତ କଥା ଦେଉଳରେ ହେଉ ବା ରଥ ଚଳା ବେଳେ ହେଉ, ଗାଇଯାନ୍ତି । ଏସବୁ କଥା ଯାହାଙ୍କ ମନରେ ଖେଳୁଥାଏ ସେମାନେ କ ଦିଅଁ ଦେଖନ୍ତି କହିଲ ଭଲ । ଘରୁ ବାହାରିଲା ବେଳୁ କଏ ଭଲ ଲୁଗା ନ ପିନ୍ଧିଲେ ଯିବ ନାହିଁ, ବେଶି ସୁନା ଅଳଙ୍କାର ନ ଥିଲେ କଏ ଯିବ ନାହିଁ, ଗାଡ଼ି ଘୋଡ଼ା ମଟର ନ ହେଲେ କଏ ଯିବ ନାହିଁ । କଏ ପୁଅ ଗିରସ୍ତଙ୍କ ଉପରେ ରାଗି ମାଗି ନଆଁ । କଏ ଶାଶୂ ଶ୍ୱଶୁର ସଙ୍ଗେ କଳି କରି ନଆଁ—ଏ ସବୁ କଣ ଦେବଦର୍ଶନର ଲକ୍ଷଣ ? ଯାହାର ଦିଅଁ ଦେଖାରେ ମନ ସେ ଏତେ ଆଡ଼କୁ ମନ ଦେବାକୁ ଅବସର ପାଇବ କେଉଁଠୁ ? ସେ ତ ଦେହ ଜ୍ଞାନ ହଜାଇ ଦେବ ! ଗୋବିନ୍ଦ ପ୍ରୀତି ବଡ଼ କଠିନ, ବଡ଼ ବିଷମ । ସେଥିପାଇଁ ବିଦଗ୍ଧ ଚିନ୍ତାମଣିରେ ଅଛି :—

ବଡ଼ କଠିନ ଏ ପ୍ରୀତି ପାଳିବା, ତୀକ୍ଷ୍ଣ ଅସି ଧାରେ ପଥ ଚାଲିବା ।
ଶୂନ୍ୟ ଆରୋହଣଠାରୁ କଠିନ, ପବନ ଫାନ୍ଦେ ଧରିବା ଲକ୍ଷଣ ।

ପ୍ରୀତି ରକ୍ଷାପାଇଁରେ, ଯଥା ପାରଦ ଧରିବା ମୁଠାରେ ।

ସ୍ତ୍ରୀ—ତେବେ ଏତେ ଲୋକ ରଥଯାତ୍ରାରେ ରୁଣ୍ଡ ହୁଅନ୍ତି କାହିଁକି ? ସେଥିରେ କଣ କିଛି ଫଳ ନାହିଁ ?

ସ୍ୱାମୀ—ଜଗନ୍ନାଥଙ୍କଠାରେ କଣ ଆକର୍ଷଣୀ ଶକ୍ତି ଅଛି ସେ ଜାଣି ଆଣନ୍ତି ? ଆବଶ୍ୟ ଗୋଟାଏ କଥା ସମସ୍ତଙ୍କ ମନରେ ହୁଏ ଯେ ଚାଲ ପୁରୀ ଯିବା ରଥଯାତ୍ରା ଦେଖିବା, ଜଗନ୍ନାଥ ଦର୍ଶନ କରିବା । ତେବେ ମୁହୂର୍ତ୍ତିକ ପାଇଁ ସମସ୍ତେ ଜଗନ୍ନାଥଙ୍କୁ ଦେଖନ୍ତି, କିଏ କେତେ ପ୍ରକାର ବର ମାଗି ପକାନ୍ତି, କିଏ ପୁଅ ମାଗେ, କିଏ ଝିଅ ମାଗେ, କିଏ ଧନ ମାଗେ, କିଏ ଜନ ମାଗେ, କିଏ କାଚ କନ୍ୟା ହେଉ ବୋଲି ମାଗେ, କିଏ ଶାଢ଼ି ସଙ୍ଖା ସିନ୍ଦୂର କାଳେ କାଳେ ଥାଉ ବୋଲି ମାଗେ, ଇତ୍ୟାଦି ଇତ୍ୟାଦି ନାନାପ୍ରକାର ମାନସିକ କରି ବସନ୍ତି । ଦେବ ଭଜନ ବଡ଼ କଠିନ । ଭାଗବତ କହୁଛି—

ବିଷମ ପଥ ଏ ଭଜନ । ଭୟେ ଭଜନ୍ତି ଯୋଗୀଜନ ।
ହୋ ତାତ କର୍ମ ପାଦେ ସେବ । କର୍ମରୁ ନାହିଁ ଅନ୍ୟ ଦେବ ।
କର୍ମାନୁସାରେ ଫଳ ଦେଇ । ଅଧିକ ଦେଇ ନ ପାରଇ ।

ଯେ ଯେପରି କର୍ମ କରିବ ସେ ସେପରି ଫଳ ପାଇବ । କଥାରେ ଅଛି ପରା କପାଳେ ନ ଥିଲେ ଗୋପାଳେ ଦିଅନ୍ତି ନାହିଁ । ସମସ୍ତେ ତ ଦିଅ ଦିଅ ବୋଲି ଜଗନ୍ନାଥଙ୍କୁ ଡାକି ପକାଇଛନ୍ତି ସେ ଏବେ କାହାକୁ ଦେବେ,କାହାକୁ ନ ଦେବେ । ଯେ ଡାକିଲା ମାଗିଲା ତାକୁ ଯେତେ ଦେବେ ଏବଂ ଯେ ନ ଡାକିଲା ତାକୁ ଦେବେ ନ ଦେବେ,ତେବେ ତାଙ୍କଠି ପକ୍ଷପାତ ପାପ ଲାଗିବ । ସଂସାରରେ ସମସ୍ତଙ୍କର ସମାନ ଧନ, ଜନ, ସୁଖ, ଦୁଃଖ, ରୋଗ, ବୈରାଗ୍ୟ ନାହିଁ । କାହାକୁ ଦାନା କନା ସମାନ ମିଳୁ ନାହିଁ । ଏଇଥିରୁ ଜଣାଯାଉଛି ଜଣେ କେହି କେଉଁ ଅଜଣା ରାଜ୍ୟରେ ଥାଇ ଦିଆ ନିଆ କରୁନାହିଁ ।

ସେ ଗୋଟାଏ ନିୟମ ବାନ୍ଧି ଦେଇଛନ୍ତି, ସେ ନିୟମ ହେଉଛି କର୍ମ । ଯେ ଯେପରି କର୍ମ କରୁଛି ସେପରି ଫଳ ପାଉଛି । ଭଲ କର୍ମ କଲେ ଭଲ ଫଳ ପାଇବ, ମନ୍ଦ କର୍ମ କଲେ ମନ୍ଦ ଫଳ ପାଇବ । ତେବେ ଭଗବାନଙ୍କଠାରେ ମନ ଧ୍ୟାନ ଦେଲେ ଲୋକର ମନ ମନ୍ଦ ଆଡ଼କୁ ଯିବ ନାହିଁ । ସେ ସୃଷ୍ଟିର କର୍ତ୍ତା ପରମ ପିତା ପରମେଶ୍ୱର । ସେ ସମସ୍ତଙ୍କର ପୂଜ୍ୟ, ନମସ୍ୟ । ତାଙ୍କୁ ପୂଜା କରିବା ମାନବର ପ୍ରଧାନ ଧର୍ମ ଓ କର୍ତ୍ତବ୍ୟ । ଏହି ପୂଜାର ନାନା ପ୍ରକାର ବିଧିବିଧାନ ହିନ୍ଦୁମାନେ କରିଛନ୍ତି । ହିନ୍ଦୁଧର୍ମ ବଡ଼ ଉଦାର, ବଡ଼ ବିଶାଳ । ଯେ ଯେଉଁ ପ୍ରକାରେ ଭଜି ପାରିଲା ଯାହାର ଯେପରି ବିଶ୍ୱାସ ହେଲା ସେ ସେପରି କଲେ କିଛି ବାଧାବିଘ୍ନ ନାହିଁ । ଏହିହେତୁ ନାନା ମୁନିଙ୍କର ନାନା ମତ ଦେଖାଯାଏ । ଋଷି ଗୋଟିକେ ମତ ଗୋଟିଏ । ଯାହାର ଯେଉଁ ପଥରେ ବିଶ୍ୱାସ ହେଲା ସେ ସେ ପଥରେ ଗଲା ।

ସ୍ତ୍ରୀ—ଜଗନ୍ନାଥଙ୍କୁ କଣ ସବୁ ଶ୍ରେଣୀର ଭକ୍ତ ପୂଜା କରନ୍ତି ?

ସ୍ୱାମୀ—ହଁ, ସେଇଟା ଜଗନ୍ନାଥଙ୍କର ମହିମା । ଯେ ଯେତେ ମତବାଦ ନେଇ ଆସୁ ଜଗନ୍ନାଥଙ୍କ ନିକଟରେ ନତମସ୍ତକ । ଶୈବ, ଶାକ୍ତ, ଗାଣପତ୍ୟ, ବୈଷ୍ଣବ, ସୌର ; ସମସ୍ତେ ଏଠାରେ ନତମସ୍ତକ । ଜଗତର ନାଥ ବା କର୍ତ୍ତା ଯେଉଁ ଠାକୁର ସେ ତ ସମସ୍ତଙ୍କର ପୂଜ୍ୟ, ନମସ୍ୟ ।

ସ୍ତ୍ରୀ—ହଇହେ; ଜଗନ୍ନାଥେ ଗୁଣ୍ଡିଚା ଘରକୁ ଯାନ୍ତି କାହିଁକି ?

ସ୍ୱାମୀ—ରଥଯାତ୍ରାକୁ ପତିତପାବନ ଯାତ୍ରା କହନ୍ତି । ଜଗନ୍ନାଥ ଦାଣ୍ଡକୁ ବାହାରନ୍ତି, ରଥରେ ବସି ଗୁଣ୍ଡିଚା ଘରେ ୯ ଦିନ ରହନ୍ତି । ସକଳ ଶ୍ରେଣୀର ଲୋକେ ଦର୍ଶନ ପାନ୍ତି । ସମସ୍ତେ ଜାତି ବର୍ଣ୍ଣ ନିର୍ବି-ଶେଷରେ ରଥ ଦଉଡ଼ି ଧରି ଟାଣନ୍ତି । ସାଧାରଣ ଲୋକଙ୍କ ମନରେ

ହୋଇଥାଏ ଆନନ୍ଦ ଉତ୍ସବ ଭଳି ଖେଳିଯାଏ । ଯେଉଁମାନେ ବେଶରେ ଭିତରକୁ ଯିବାକୁ ସୁବିଧା ନ ପାନ୍ତି ସେମାନେ ଦର୍ଶନ ପାଇ ନିଜକୁ ଧନ୍ୟ ମନେ କରନ୍ତି । ଖରା ବର୍ଷା ନ ମାନି ଲୋକେ ଦର୍ଶନ ପାଇଁ ଉତ୍କଣ୍ଠିତ ହୁଅନ୍ତି । ଆଚଣ୍ଡାଳ ବ୍ରାହ୍ମଣ ଏ ଯାତ୍ରାରେ ଯୋଗ ଦିଅନ୍ତି । କାହାରିକୁ କିଛି ବାରଣ ନ ଥାଏ । ସିଂହଦ୍ୱାରଠାରୁ ଗୁଣ୍ଡିଚା ଘର ପର୍ଯ୍ୟନ୍ତ ଲୋକାରଣ୍ୟ ହୋଇଥାଏ । ଭକ୍ତ ଅଭକ୍ତ ସମସ୍ତେ ଉତ୍ସାହରେ ଯାତ୍ରାରେ ଯୋଗ ଦିଅନ୍ତି, ରଥ ଟଣାବେଳେ କେତେ ଲୋକ ଜଗନ୍ନାଥଙ୍କୁ ଦେଖି କେତେ ପ୍ରକାର ମନରେ ଭାବି-ଯାନ୍ତି । ଏଣେ ଦେଖିଲେ ବହୁଲୋକର ସମାଗମ ହେତୁ ସହରରେ ବ୍ୟବସାୟ ବାଣିଜ୍ୟ କରୁଥିବା ଲୋକଙ୍କର ନାନା ପ୍ରକାର ଅର୍ଥ ଲାଭ ହୁଏ । ଲୋକ ସମୁଦ୍ରରେ ଯେତେବେଳେ ବଡ଼ଦାଣ୍ଡ ପୂର୍ଣ୍ଣ ହୋଇଥାଏ ତାକୁ ଦେଖିବା ମଧ୍ୟ ଏକ ଦୃଶ୍ୟ । ଏଡ଼େ ବୃହତ୍ ନର ନାରାୟଣ ମଣ୍ଡଳ ମଧ୍ୟରେ ଯେତେବେଳେ ତିନି ରଥ ଚାଲୁଥାଏ ସେ ଗୋଟିଏ ବଡ଼ ଦୃଶ୍ୟ । ଏ ଦୃଶ୍ୟରେ ଭଗବାନଙ୍କର ସୃଷ୍ଟି ବୈଚିତ୍ର୍ୟରେ ଯଥେଷ୍ଟ ପ୍ରମାଣ ମିଳେ । ଲୋକଙ୍କର ବିଶ୍ୱାସ ଜଗନ୍ନାଥ ସାକ୍ଷାତ ଭଗବାନଙ୍କ ଅବତାର । ଜଗନ୍ନାଥଙ୍କ ଦର୍ଶନ, ସ୍ପର୍ଶନ, ଗୁଣକୀର୍ତ୍ତନ ଭଜନ, ପୂଜନ, ମନନ ଆଦିକୁ ଲୋକେ ମହାଧର୍ମ ବୋଲି ବିଶ୍ୱାସ କରନ୍ତି । କିଏ ଶ୍ରୀକାପଡ଼ା ଖଣ୍ଡେ ବେକାରେ ପକାଇ ଦେଲେ ଜୀବନକୁ ସାର୍ଥକ ମନେ କରେ, କିଏ ଲାଗିଫୁଲ, ତୁଳସୀ, ଚନ୍ଦନପନା ଦୁବ ଟିକିଏ ପାଇଲେ ଜୀବନକୁ ସାର୍ଥକ ମନେ କରେ, କିଏ ବଜାର ପଥରୁ ଧୂଳି ସାଉଁଟି ମୁଣ୍ଡରେ ଦେହରେ ବୋଳି ଦେଇ ଜୀବନକୁ ସାର୍ଥକ ମନେ କରେ, କିଏ ଅବକାଶ ଜଳ, କିଏ ଆଳତି ପିଠଉ ପାଇ ଜୀବନକୁ ସାର୍ଥକ ମନେ କରେ, କିଏ ରଥ ଦଉଡ଼ିରୁ ଖଣ୍ଡେ ଛିଣ୍ଡାଇ ନେଇ ଜୀବନକୁ ସାର୍ଥକ ମନେ କରେ ।

ପ୍ରସାଦ ପାଇବା କଥା ଆଉ ଅଧିକା କଣ କହିବା । ହିନ୍ଦୁମାନେ ତ ଏପରି ନାନାପ୍ରକାର ବିଶ୍ୱାସ କରନ୍ତି । ସେମାନେ ପିତ୍ତଳାପୂଜକ ବୋଲି ବିଦେଶୀମାନେ ଘୃଣା କରନ୍ତି ; ମାତ୍ର ବର୍ତ୍ତମାନ କଣ ହେଉଛି ? ଏହି ଯେ ମହାଯୁଦ୍ଧ ଲାଗିଛି ସେଥିରେ ଜୟଲାଭ କରିବା ପାଇଁ ଇଂରେଜ ସରକାର ମଧ୍ୟ ଦେଉଳରେ ଉପାସନା, ପ୍ରାର୍ଥନା କରିବା ପାଇଁ ଅନୁମୋଦନ କରୁଛନ୍ତି । ଯେତେ ବଡ଼ ନାସ୍ତିକ ହେଉ ବିପଦ ବେଳେ ଭଗବାନଙ୍କୁ ଡାକି ପକାଏ । ଯେତେବେଳେ କିଛି ଅନୁକୂଳ ନ ମିଳେ ସେତେବେଳେ ଭଗବାନଙ୍କୁ ଡାକେ ।

ନମଇଁ ହେ ମହାପ୍ରଭୁ ତବ ଶ୍ରୀଚରଣ ।
ସକଳ ଲୋକ ଆଶ୍ରୟ ସତ୍ୟ ସନାତନ ॥
ବିଶ୍ୱରୂପ ଆତ୍ମା ପ୍ରଭୁ ଚଇତନ୍ୟ ବ୍ରହ୍ମ ।
ଅଦ୍ୱୈତ ତତ୍ତ୍ୱ ଆପଣ କର ମୁକ୍ତି ଦାନ ॥
ସର୍ବବ୍ୟାପୀ ନିର୍ବିକଳ୍ପ ନିର୍ଗୁଣ ନିକର ।
ନମଇ ତବ ଚରଣେ ପ୍ରଭୁ ବାରବାର ॥
ସକଳ ପ୍ରାଣୀର ତୁମ୍ଭେ ଏକଇ ଶରଣ୍ୟ ।
ତୁମ୍ଭେ ମହାପ୍ରଭୁ ଅଟ ଏକଇ ବରେଣ୍ୟ ॥
ତୁମ୍ଭେ ବିଶ୍ୱରୂପ ତୁମ୍ଭେ ଜଗତ କାରଣ ।
ଅନାଦି ଅନନ୍ତ ମହାପ୍ରଳୟ କାରଣ ॥
ଜଗତକରତା ପ୍ରଭୁ ହରତା ବିଧାତା ।
ନିଶ୍ଚଳ ସକଳ ଶ୍ରେଷ୍ଠ ତୁମ୍ଭେ ପିତାମାତା ॥
ଭୀଷଣମାନଙ୍କ ମଧ୍ୟେ ଅତିବ ଭୀଷଣ ।
ଭୟ ମଧ୍ୟରେ ଅତିବ ଭୟକୃତି ଆପଣ ॥
ପତିତପାବନ ପ୍ରାଣୀମାନଙ୍କର ଗତି ।
ଜଗତ ନିୟନ୍ତା ପ୍ରଭୁ ହର ଭବ ଭୀତି ॥

ବହୁରୂପା ଅବିନାଶୀ ପରେଶ ଆପଣ ।
ସବୁରି ରକ୍ଷକ ପ୍ରଭୁ ସତ୍ୟ ନିରଞ୍ଜନ ॥
କେଉଁଠି ବିରାଜଅଛ ଜଣାଯାଏ ନାହିଁ ।
ସକଳ ଇନ୍ଦ୍ରିୟ ମଧ୍ୟେ ଆଗମ ହୁଅଇ ॥
ଅଚିନ୍ତ୍ୟ ଅକ୍ଷର ପୁଣି ଅବ୍ୟକ୍ତ ଆପଣ ।
ଜଗତ ପ୍ରକାଶକାରୀ ହେ ବିଶ୍ୱକାରଣ ॥
ଏକା ତବ ଭଜନ ସରଣ ଅଟେ ସାର ।
ହେ ଜଗତ ସାକ୍ଷୀ ତବ ପଦେ ନମସ୍କାର ॥
ଆହେ ନିରାଲମ୍ବ ଈଶ ସବେକ ନିଧାନ ।
ହେ ଭବ ସାଗର ପୋତ ଶ୍ରୀପଦେ ଶରଣ ॥

ସ୍ତ୍ରୀ—ତେବେ କଣ କେବଳ ଈଶ୍ୱର ଭଜନ କରିବ, ଆଉ କିଛି କରିବ ନାହିଁ ?

ସ୍ୱାମୀ—ନା, ନା, ଭଗବାନ ସେକଥା କେଉଁଠାରେ କହି ନାହାନ୍ତି । ସେ ଗୀତାରେ କହିଛନ୍ତି ତାଙ୍କ ସୃଷ୍ଟିରକ୍ଷା ସକାଶେ ତାଙ୍କ ନାମ ସ୍ମରଣ କରି ନିଷ୍କାମ ଭାବରେ ସବୁ କାମ କର । "କାର୍ଯ୍ୟ କଲେ ଆର୍ଯ୍ୟ ହେବ, ଜଗତେ ପୂଜା ପାଇବ ।" ଯାହାର ଯେପରି ଗୁଣ ଅଛି ଯାହା ହାତରେ ଯେଉଁ କାର୍ଯ୍ୟ ହୋଇ ପାରିବ ସେ ସେପରି କାର୍ଯ୍ୟ କରିବ । ଆପଣା ବାହୁବଳେ ଆପଣା ଖାଦ୍ୟ ଅର୍ଜନ କରି ଖାଇବ, ଅନ୍ୟ କାହା ଦ୍ୱାରେ ଭିକ୍ଷା ମାଗିବ ନାହିଁ କିମ୍ବା ଅଳସୁଆ ହୋଇ ବସି ଅନ୍ୟ ଉପରେ ନିର୍ଭର କରିବ ନାହିଁ । ଏ ହେଲା ସାଂସାରିକ ଜୀବନର ମହାମନ୍ତ୍ର ।

ଭଜ ହରି ନାମ ନିତ୍ୟ କରୁଥାଅ କରମ ।
ତୁଟିଯିବ ଭବ ବନ୍ଧନ ଅଟେ ସାର ଧରମ ॥

ଧର ସେହି ନାମ ଅଙ୍କୁଶ ରିପୁ କଣ୍ଟକ ମାର ।
ଆବଶ୍ୟ ଆସୁଛନ୍ତି ହରିବେ ଶଙ୍କା ଦୂରା ନ କର ॥
ବୁଡି ଥାଇ ଧନ ଗରବେ ହୁଡ଼ଯାଉ ହରିଙ୍କି ।
ଉପର ମନରେ ଡାକଲେ ଶୁଣିବେ ସେ କାହିଁକି ॥
ବଡ଼ ଗର୍ବ ତୋର ମନରେ ପିନ୍ଧ ରାଜମୁକୁଟ ।
କାହିଁ କେଉଁଠାରେ ପଡ଼ିବ ଯେବେ ଛୁଟିବ ଘଟ ॥
ସାହାହୀନ ହୋଇ ଡାକଲେ ଆହା ବୋଲିବେ ସେହି ।
ଆନ ଆଶ୍ରା ଧରି ଡାକଲେ ହରି ଶୁଣନ୍ତି ନାହିଁ ॥
ବିଳାସ ବାସନା ତୁଟାଇ କରୁଥାଅ କରମ ।
ମନରୁ କଳୁଷ ଛଡାଇ ଜପ କର ସେ ନାମ ॥
ଅଢ଼େଇ ଦିନଆ ଜୀବନ ପାଣି ଫୋଟକା ପରି ।
ଗୃହୁଁ ଗୃହୁଁ କାହୁଁ ଆସିବ ନେବ ଯମ ଓଟାରି ॥
ଲୋକମାନଙ୍କର ସେବାରେ ସଦା ଲଗାଅ ମନ ।
ଏହା କଲେ ପ୍ରଭୁ ତୋଠାରେ ହେବେ ସଦା ପ୍ରସନ୍ନ ॥
କର ପ୍ରଭୁ ଦ୍ୱାରେ କରୁଣା ଭାବେ ରଜନୀ ଦିନ ।
ଜଗବନ୍ଧୁ ଚରି ଶ୍ରୀପଦେ ଥାଉ ସଦା ଜୀବନ ॥

---

## ଏକବିଂଶ ପରିଚ୍ଛେଦ

## ଗୃହସ୍ଥାଶ୍ରମ

ସ୍ତ୍ରୀ—ହଇହେ, ଆଉ ମଣିଷ ପାରିବ ନାହିଁ । ଯେ ଆସିଲା ସେ ଏଇଠି ପଦ ପକାଇଲା । ବନ୍ଧୁ ବାନ୍ଧବ ତ ସବୁବେଳେ ଆସିଲେ । ଆଉ ଯେ ଯେଉଁଠୁ ଆସିଲା ଏଇଠି ଆସି ଜୁଟିଲା । ଏଣିକି ଦେଖୁଛି ଏମାନଙ୍କୁ ମୁହଁ ଖୋଲି ଗାଳି ନ ଦେଲେ ଚଳିବ ନାହିଁ ।

ସ୍ୱାମୀ—ଛି, ଛି, ସେ କଥା ଭୁଣ୍ଡରେ ଧରିବ ନାହିଁ । ଯେ ଅତିଥି ହୋଇ ଆସି ମୁଠିଏ ଖାଇବାଆଶାରେ ପହଞ୍ଚିଲା ସେ ନାରାୟଣ ସ୍ୱରୂପ । ଥିଲେ ଦେବ, ନ ଥିଲେ ସେମାନଙ୍କୁ ମଧୁର ବଚନ କହି ବିଦାୟ ଦେବ । ଗାଳିମନ୍ଦ କଠୋର ବଚନ କହିବା ମହାପାପ । ଗୃହ ଗୋଟିଏ ଆଶ୍ରମ । ଭଗବାନ ଗୋଟିଏ ଗୋଟିଏ ଆଶ୍ରମର ଭାର ଜଣେ ଜଣେ ଗୃହସ୍ଥ ଉପରେ ନ୍ୟସ୍ତ କରିଅଛନ୍ତି । ଏ ଆଶ୍ରମରେ ଯେତେବେଳେ ଯେ ଆଶ୍ରୟ ନେବ ତା ପ୍ରତି ମଧୁର ବାକ୍ୟ ବ୍ୟବହାର କରିବା ଗୃହକର୍ତ୍ତା ଓ କର୍ତ୍ତ୍ରୀର ପରମ ଧର୍ମ । ଗୃହସ୍ଥାଶ୍ରମ ସବୁ ଆଶ୍ରମଠାରୁ ଶ୍ରେଷ୍ଠ ଆଶ୍ରମ ବୋଲି ଭଗବାନ ନିଜେ ଗୀତାରେ କହିଛନ୍ତି । "ଗୃହସ୍ଥାଶ୍ରମରେ ରହି ଯେ ଧର୍ମ ଆଚରି, ସେ ଧର୍ମ ଗୋଟିକୁ ପାର୍ଥ କେହି ନୁହେ ସରି ।"

ସ୍ତ୍ରୀ—ଆଶ୍ରମ ବୋଲି କାହିଁକି କହୁଛ ? ଏ ତ ଘର, ଆଶ୍ରମ କଣ ମ ?

ସ୍ୱାମୀ—ଆହେ, ଆମ ଦେଶରେ ପ୍ରାଚୀନ କାଳରୁ ୪ ଆଶ୍ରମ ଥିଲା । ୧ବ୍ରହ୍ମଚର୍ଯ୍ୟ, ୨ ଗୃହସ୍ଥାଶ୍ରମ, ୩ ବାନପ୍ରସ୍ଥ, ୪ ସନ୍ନ୍ୟାସ । ମଣିଷ ଜୀବନକୁ ସାଧାରଣତଃ ୧୦୦ ବର୍ଷ ଧରି ନେଇ ତାକୁ ଚାରି ଭାଗରେ ବିଭକ୍ତ କରି ଦେଇଥିଲେ । ବ୍ରହ୍ମଚର୍ଯ୍ୟ ୨୪, ଗୃହସ୍ଥାଶ୍ରମ ୨୪, ବାନପ୍ରସ୍ଥ ୨୪, ସନ୍ନ୍ୟାସ ଅବଶିଷ୍ଟ । ବ୍ରହ୍ମଚର୍ଯ୍ୟାଶ୍ରମରେ ଗୁରୁ-ଗୃହରେ ରହି ପାଠ ପଢ଼ିବ । ଗୃହସ୍ଥାଶ୍ରମରେ ଗୃହସ୍ଥର ଧର୍ମ କର୍ମ କରିବ । ବାନପ୍ରସ୍ଥରେ ଦେଶ ଭ୍ରମଣ, ସନ୍ନ୍ୟାସ ବେଳେ ସଂସାର ତ୍ୟାଗ । ଏହା ବର୍ଣ୍ଣାଶ୍ରମ ବିଭାଗ ବିଧି । ଏହି ଚାରି ଆଶ୍ରମର ମଧ୍ୟରେ ଗୃହସ୍ଥାଶ୍ରମ ସର୍ବଶ୍ରେଷ୍ଠ । ଏହି ଆଶ୍ରମରେ ମନୁଷ୍ୟ ସକଳ ପ୍ରକାର ଶିକ୍ଷା ଲାଭ କରେ । ଗୃହସ୍ଥ ଅନ୍ୟ ତିନି ଆଶ୍ରମର ପ୍ରାଣ

ସ୍ୱରୂପ । ଗୃହସ୍ଥ ଅନ୍ୟ ସକଳ ଆଶ୍ରମବାସୀଙ୍କି ଖାଦ୍ୟ ଯୋଗାଏ । ସମସ୍ତେ ଆସି ଗୃହସ୍ଥଦ୍ୱାରେ ଉପସ୍ଥିତ ହୋଇ ହାତପତାନ୍ତି । ଯୋଗୀ ଭିକାରି, ଅତିଥି, ଅଭ୍ୟାଗତ, ଅଭାବଗ୍ରସ୍ତ, ସବୁପ୍ରକାର ଲୋକ ଗୃହସ୍ଥର ଦ୍ୱାରେ ଉପସ୍ଥିତ । ଗୃହସ୍ଥର ଅନେକ ପରିବାରର ପୋଷ୍ୟ ବର୍ଗ ଅଛନ୍ତି, ବନ୍ଧୁବାନ୍ଧବ, ପ୍ରତିବେଶୀ, ଗ୍ରାମବାସୀ, ଦେଶବାସୀ ଅନେକ ଅଛନ୍ତି । ସମସ୍ତଙ୍କୁ ସମାନ ଚକ୍ଷୁରେ ଦେଖିବ, ସମଦର୍ଶୀ ବ୍ୟବହାର କରିବ, କାହାର ପ୍ରତି ପକ୍ଷପାତ ବିଗୁର କରିବ ନାହିଁ, ଏଥିପାଇଁ ଆତ୍ମ ସଂଯମ ଆବଶ୍ୟକ । କ୍ରୋଧ, ଲୋଭ, ମୋହ ମଦ ମାତ୍ସର୍ଯ୍ୟ ତ୍ୟାଗ କରିବା ଆବଶ୍ୟକ । ଆମ୍ଭର ଦେଶରେ ଗୋଟିଏ କଥା ଅଛି ଗୃହସ୍ଥ ଭୁଠ ପଥର ହେବ, ଗୋରୁପରି ସବୁ ସହିବ, ନିଜକୁ ତୃଣଠାରୁ ନୀଚ ଜ୍ଞାନ କରିବ, ଆପଣା ପେଟରେ ଓଦାକନା ଦେଇ ଆଗ ଅନ୍ୟମାନଙ୍କ କଥା ବୁଝିବ; ତେବେ ସେ ଗୃହସ୍ଥ ପ୍ରକୃତ ଗୃହସ୍ଥ ହେବ । ଗୃହସ୍ଥର ଧନ ତା ନିଜ ଭୋଗ ବିଳାସ ପାଇଁ ନୁହେ, ଏହା ଗୃହସ୍ଥାଶ୍ରମର । ଏ ଆଶ୍ରମରେ ଯେତେ ଲୋକ ଯେ କୌଣସି ପ୍ରକାରେ ଆଶ୍ରୟ ଲୋଡ଼ନ୍ତି, ଉଣା ଅଧିକେ ସମସ୍ତଙ୍କର ଅଂଶ ଅଛି । ଭଗବାନ ଗୃହସ୍ଥକୁ ଆଶ୍ରୟ ଦେଇଛନ୍ତି । ଗୃହସ୍ଥ ଆଶ୍ରମର ପାଳକ । ସୁତରାଂ ଏ ଆଶ୍ରମରେ ସକଳ ପ୍ରକାର ଧର୍ମ ଓ କର୍ମ ଶିକ୍ଷା କରିବା ନିତାନ୍ତ ଆବଶ୍ୟକ । ଏହିହେତୁ ଗୃହସ୍ଥର ଦାୟିତ୍ୱ ବଡ଼ ବେଶି । ଗୃହିଣୀର କର୍ତ୍ତବ୍ୟ ମଧ୍ୟ ତତୋଽଧିକ ।

ସ୍ତ୍ରୀ—ଗୃହିଣୀ କଣ କରିବ ମ ? ଗୃହସ୍ଥ ଯାହା କହିବ ଗୃହିଣୀ ତାହା କରିବ ।

ସ୍ୱାମୀ—ଯା କାହିଁକି କହିଲ ମ । ପିଲାଙ୍କ ଶିକ୍ଷା ସ୍ୱାସ୍ଥ୍ୟ ଚରିତ୍ର ଗଠନ ଗୃହିଣୀର ହାତରେ । ଗୃହିଣୀ ଭଲ ଦୃଷ୍ଟି ନ ଦେଲେ ପିଲାଗୁଡ଼ାକ ଖରାପ ହୋଇଯିବେ । ରୋଷେଇଘରର ଗୃହ ତାଙ୍କ

ହାତରେ । ସେ ତ ମୋଟ ଉପରେ ଗୃହିଣୀ । ସେ ଅବଶ୍ୟ ପୁରୁଷର ପରାମର୍ଶ ଆବଶ୍ୟକ ସ୍ଥଳେ ନେବ, ମାତ୍ର ସେ ଏପରି କାର୍ଯ୍ୟ କରିବ ଯେ ସମସ୍ତେ ତା କାର୍ଯ୍ୟରେ ସନ୍ତୁଷ୍ଟ ହେବେ ଏବଂ ଗୃହସ୍ଥାଶ୍ରମରେ ଶାନ୍ତି ବିରାଜୁଥିବ । ଯେଉଁ ଆଶ୍ରମରେ ଶାନ୍ତି ଥିବ ସେ ଆଶ୍ରମରେ ସବୁ ଦେବତାମାନେ ବିରାଜମାନ କରନ୍ତି । ଗୃହିଣୀ ଗୃହର ଲକ୍ଷ୍ମୀ, ମାତ୍ର ସେ ଯେବେ କଳହକୁଣ୍ଡଳା, ଅପ୍ରିୟଭାଷିଣୀ ହୁଏ ସେ ସକଳ ପ୍ରକାର ଅନର୍ଥ ଜନ୍ମାଏ । ଗୃହସ୍ଥ ଗୃହିଣୀ ଏ ଦୁଇ ଜଣଙ୍କୁ ସନ୍ନ୍ୟାସ ବ୍ରତ ପାଳିବାକୁ ହେବ । ଏମାନେ ପ୍ରଥମେ ପରିବାର ବର୍ଗର ସୁଖ-ସ୍ୱାଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟିଦେବେ,ପରେ ଆପଣାସୁଖ ସ୍ୱାଚ୍ଛନ୍ଦ୍ୟ ଦେଖିବେ । ଏମାନଙ୍କୁ ଆଦର୍ଶ ଜୀବନ ଧାରଣ କରିବାକୁ ପଡ଼ିବ । କାରଣ ଏମାନଙ୍କ ଆଚରଣଦ୍ୱାରା ଚାଲିଚଳନକୁ ଅନ୍ୟମାନେ ଅନୁକରଣ କରିବେ, ତେଣୁ ଏମାନଙ୍କୁ ହାତେ ମାପି ଚୁଖଣ୍ଡିକେ ଚାଲିବାକୁ ହେବ । ଗୃହସ୍ଥର ଓ ଗୃହିଣୀର କର୍ତ୍ତବ୍ୟ କଣ ଏ ବିଷୟରେ ଋଷିମାନ ଅନେକ ଶାସ୍ତ୍ର ଲେଖିଯାଇଛନ୍ତି । ସେ ସମସ୍ତ ପାଠକଲେ ବିଶେଷ ଭାବରେ ବୁଝିପାରିବ ।

ସ୍ତ୍ରୀ—ଗୃହିଣୀର ହାଣ୍ଡିଶାଳେ ପଶୁ ପଶୁ ଦିନ ଯିବ, ତାର ଆଉ ଧର୍ମ କର୍ମ କଣ ମ ?

ସ୍ୱା—ହାଣ୍ଡି ଶାଳଟା କଣ ଖରାପ ସ୍ଥାନ କି ? ଜାଣ ସବୁ ଧର୍ମ କର୍ମର ମୂଳ ହାଣ୍ଡିଶାଳରେ ଅଛି । ହାଣ୍ଡିଶାଳରେ ସମସ୍ତଙ୍କର ଜୀବନ ନାଟିକା ଅଛି । ହାଣ୍ଡିଶାଳ ଗୃହିଣୀର କର୍ମକ୍ଷେତ୍ର । ତାର ଅନ୍ୟ ନାମ ଅନ୍ନପୂର୍ଣ୍ଣା । ସବୁ ଦାନଠାରୁ ଅନ୍ନଦାନ ଶ୍ରେଷ୍ଠ, ଅନ୍ୟ ଯେତେ ପ୍ରକାର ଦାନ ଦିଅ ଗ୍ରହୀତାର ସନ୍ତୋଷ ହେବ ନାହିଁ, କିନ୍ତୁ ଅନ୍ନ ମୁଠାକ ଖାଇସାରି ପେଟପୂରିଗଲେ ଆଉ ଯେତେ ଦେଲେ

ସେ ନାହିଁ କରିବ । ବ୍ରହ୍ମ କେବଳ ଅନ୍ନରେ ସନ୍ତୋଷ ହୁଏ, ଆଉ କୌଣସି ଦ୍ରବ୍ୟ, ଟଙ୍କା ପ୍ରଭୃତି ଦେଲେ ଯେତେ ଦେଉଥିବ ସେତେ ନେଉଥିବ, ତାର ବାସନା ପୂର୍ଣ୍ଣ ହେବ ନାହିଁ, ସନ୍ତୋଷ ଲାଭ କରିପାରିବ ନାହିଁ । ହାଣ୍ଡିଶାଳ ଉପରେ ସମସ୍ତଙ୍କର ଦୃଷ୍ଟି, ଅନ୍ନ ଉପରେ ସମସ୍ତଙ୍କର ଆଶା, ହା ଅନ୍ନ, ହା ଅନ୍ନ ହୋଇ କେତେ ଲୋକ ଆସି ତୋଗ୍ରଣି ଟୋପାକ ପାଇଁ ଲାଳାୟିତ ହେଉଛନ୍ତି । ଇଚ୍ଛା କଲେ ଗୃହିଣୀ ହାଣ୍ଡିଶାଳରୁ ସ୍ୱର୍ଗଶାଳ ପର୍ଯ୍ୟନ୍ତ ଯାଇପାରିବ । ହାଣ୍ଡିଶାଳ ମହାପୁଣ୍ୟପୀଠ, ପବିତ୍ର ଭୂମି ! ମାନବର ଅନ୍ନମୟ ପିଣ୍ଡ । ଅନ୍ନ ବିହୁନେ ହଂସା ଉଡ଼ିଯିବ । ଲୋକେ ସାଧାରଣ କଥାରେ କହନ୍ତି—"ଓଃ ହଂସା ଉଡ଼ିଗଲା, ଅନ୍ନ ମୁଠାଏ ମିଳିଲା ନାହିଁ ।" ଯେଉଁ ଗୃହିଣୀ ହାତରେ ଅନ୍ନଭଣ୍ଡାର ଅଛି ତାର ସ୍ଥାନ ଅତି ଉଚ୍ଚରେ । ସେ ନିଃସ୍ୱାର୍ଥ ଭାବରେ କାହାକୁ ମୁଠିଏ ଅନ୍ନଦାନ କଲେ ମହାପୁଣ୍ୟ ଅର୍ଜ୍ଜନ କରିବ । ହାଣ୍ଡିଶାଳ ଅତି ପବିତ୍ର ସ୍ଥାନ । ଅନ୍ନରନ୍ଧା ହୁଏ ଭଗବାନଙ୍କ ଭୋଗ ଲାଗି । ଗୃହସ୍ଥ ରନ୍ଧାବଢ଼ା ସରିଲେ ବୈଶ୍ୱଦେବ କଲେ ଅର୍ଥାତ୍ ଭଗବାନଙ୍କୁ ନିବେଦନ କରି ସାରିଲେ ଅନ୍ୟ ସମସ୍ତେ ସେ ପ୍ରସାଦ ପାଇବେ । ଭଗବାନଙ୍କ ଭୋଗ ପାଇଁ ସେ ସବୁ ଅନ୍ନାଦି ରନ୍ଧନ ହେବ । ଦେବଯୋଗ୍ୟ ଭୋଗ ହେବ । ମଣିଷ ଖାଇବେ ବୋଲି ମନକୁ ଆଣିବ ନାହିଁ । ଦେବତାଙ୍କ ନୈବେଦ୍ୟ ହେଲେ ସେ ଅନ୍ନକୁ ସମସ୍ତେ ପାଇବେ । ଏ କାର୍ଯ୍ୟ ଗୃହିଣୀ ଉପରେ । ଏ ଯେ କେଡ଼େ ବଡ଼ ଦାୟିତ୍ୱ ଏହା ବୁଝିପାରିବ । ଏଥିରେ ଭଗବାନ ସୁପ୍ରସନ୍ନ ହେବେ, ଅନ୍ନଚିନ୍ତା ଦୂର କରିବେ ।

ସ୍ତ୍ରୀ—ଭଗବାନ ଅନ୍ନଚିନ୍ତା ଦୂର କରିବେ କିପରି ମ ?

ସ୍ୱାମୀ—ଦ୍ରୌପଦୀଙ୍କ ଉପାଖ୍ୟାନ କହିବା ଶୁଣ । ଦ୍ରୌପଦୀଙ୍କି ତ ଜାଣ । ଆଜକାଲି ମାଇପଙ୍କୁ ହାଣ୍ଡିଶାଳକୁ ଯିବାକୁ ଲାଜ ମାଡ଼ିଲାଣି । ହାତରେ କଳା ଲାଗିଯିବ ବୋଲି ସବୁବେଳେ ନାକ ଟେକୁଛନ୍ତି । ପୂଝାରି ନ ହେଲେ ଅନେକଙ୍କ ଘରେ ରନ୍ଧାବଢ଼ା ହେଉ ନାହିଁ । କେତେ ଲୋକ ଭୋଜନାଳୟରେ କିଣିକରି ଖାଇ ଦେଉଛନ୍ତି । ଭୋଜନାଳୟମାନ ଖାଲି ଟଙ୍କା ବ୍ୟବସାୟ କରିଛନ୍ତି । ପଇସା ଲାଭ କରିବା ସେମାନଙ୍କର ଉଦ୍ଦେଶ୍ୟ । ପରିଷ୍କାର ପରିଚ୍ଛନ୍ନତା ଆଚାର ଶୁଦ୍ଧି ପ୍ରଭୃତି ପ୍ରତି ଦୃଷ୍ଟି ଦେବା ସେମାନଙ୍କର କାମ ନୁହେ । ଜଣେ ଖାଇ ଉଠିଗଲା ତା ପଛରେ ଯେଉଁ ଅଇଁଠା ବଳିଲା ତାକୁ ନେଇ ପୁଣି ହାଣ୍ଡିରେ ପକାଇ ଦେବା ବିଚିତ୍ର ନୁହେ । ବରଂ ଏପରି ହେବାର ଦେଖାଯାଏ । ଆଜକାଲି ଏହି ଯେ ଖାଦ୍ୟ ବିଭ୍ରାଟ ହେଉଛି ଏଥିର କୁଫଳ ନିଜେ ଭୋଗ କରିବ । ସ୍ୱାସ୍ଥ୍ୟହାନି ଓ ରୋଗ ପ୍ରଭୃତି ଜନ୍ମୁଛି । ଆଜକାଲି ଏ ଦିଗକୁ ଆଦୌ ଦୃଷ୍ଟି ନାହିଁ । ବିନା ପରିଶ୍ରମରେ ଯାହା ତାହା ଗଣ୍ଡାଏ ଖାଇ ଦେଲେ କାମ ଚଳିଲେ ହେଲା । ଅତି ସଭ୍ୟ ବାବୁମାନଙ୍କ ଖାଦ୍ୟ ବିଲାତ ଆମଦାନିରୁ ନଚେତ୍ ମୁସଲମାନ ଭୋଜନାଳୟରୁ ଆମଦାନି । ଆଜକାଲି ହାଟବଜାର ଦେଖ ସବୁଠି ଖାଇବା ଜିନିସ ବିକି ହେଉଛି । ଆଜକାଲି ଦେବାଳୟ ପ୍ରସାଦ ଭଲ ଲାଗୁ ନାହିଁ । ଭୋଜନାଳୟ ଖାଦ୍ୟକୁ ଲୋକେ ବେଶି ରସୁଚନ୍ତି । ନିଜ ରନ୍ଧନଶାଳାରେ ଯାହା ରନ୍ଧା ଯାଏ ତାହା ଉତ୍କୃଷ୍ଟ । ଅନ୍ୟତ୍ର ବ୍ୟବସାୟୀ ରନ୍ଧନଶାଳାରେ ଯାହା ରନ୍ଧାଯାଏ ତାହା ନିକୃଷ୍ଟ । ଆଜକାଲି ନିକୃଷ୍ଟ ଜିନିସ ଉତ୍କୃଷ୍ଟ ବିବେଚିତ ହେଉଛି ।

ବିଦେଶୀ ଅଶନ ବିଦେଶୀ ବସନ ବିଦେଶୀଙ୍କ ପଦହରଣ ।
ଏ ସବୁ ନ ହେଲେ ଏ ନବ ଛୁଟକ ରସୁ ନାହିଁ କେବେ ମନ ।

ଏ କାଳକୁ ସ୍ତିରୀମାନେ ଲଣ୍ଡି ହେଲେ ଡାଣ୍ଡକୁ ଗଲେଣି ବୁଲି ।
ଭୋଜନାଳୟରୁ ରନ୍ଧା ଅନ୍ନ କିଣା ଘରେ ନ ଲାଗଇ ଚୁଲି ॥
ବେଳ ପହରକେ ନିଦ ନ ଭାଙ୍ଗଇ ଗୃହଲକ୍ଷ୍ମୀମାନଙ୍କର ।
ସକଳ କଥାକୁ ଦେଇ ଦେଇଛନ୍ତି ଆନେ ଷମତା ପଚର ॥
ଲକ୍ଷ୍ମୀ ସାଆନ୍ତାଣି ନଗର ଫେରଣ ଦେଖି ଲାଜେ ଯାନ୍ତି ସରି ।
ବୋଲନ୍ତି ଏମାନେ ମୋର ବଂଶଧର ବୋଲି ଦେଲେଣି ପାସୋରି ॥
ମୋ ନାମେ କଳଙ୍କ ଲଗାଇ ଅନେକ ଅଲକ୍ଷ୍ମୀ କଲେ ବରଣ ।
ଗୃହସ୍ଥାଶ୍ରମର ଧର୍ମ କର୍ମ ତେଜ ବରଣ କଲେ ମରଣ ।
ପବିତ୍ର ଭାବରେ ଶୁଚିବନ୍ତ ହୋଇ ଚଳଇ ଯେହୁ ରମଣୀ ।
ମୁଁ ଯାଇ ସେଥାନେ ପରବେଶ ହୁଏ ହେଲେ ହେଉ ଚଣ୍ଡାଳୁଣୀ ॥
ଯେତେ ବଡ଼ ଲୋକ ଧନୀଘର ସ୍ତ୍ରୀ ହୋଇଲେ ଆଚାର ଭ୍ରଷ୍ଟ ।
ଅଘଷା ପାଟିରେ ଶେଯ ପରେ ଶୋଇ ଗୁହା ପିଇ ହେଲେ ନଷ୍ଟ ॥
ଅନାଚାର ଯହିଁ ଦେଖିଲେ ମୁଁ ତହିଁ ନ ରହଇ କିସି କ୍ଷଣେ ।
ଝଟତି ଚଳଇ ଅନ୍ୟ ସ୍ଥାନେ ଯାଇ ରହଇ ମୁଁ ସୁଖ ମନେ ॥
ଶାଶୁବୁଢ଼ୀ କେଉଁ ଘରେ ଗୁରୁବାରେ ମୁରୁଜ ଲେଖେ ସକାଳେ ।
ପହରକବେଳେ ବୋହୂ ଛେଛେବେଳେ ଶେଯେ ଶୁଏ ଅବହେଳେ
କେବେ ନୂଆକଥା ଦେଖି ମଥାବ୍ୟଥା ହେଉଛି ମୋର ସନ୍ତତ ॥
ଆଚାର ବେଭାର ସକଳ ପାସୋର ବିଳାସରେ ଜନମତ ।
ଅବିଧି ବେଭାର ଅଶାସ୍ତ୍ର ବେପାର କଲେ ସବୁ ନରନାରୀ ।
ଆଳସ୍ୟ ଭାବରେ ଦିନ କଟାଇଲେ ମୋ ପୂଜା ଦେଲେ ପାସୋରି ॥
କୁଳବଧୂମାନେ ପହରକ ଦିନେ ଶେଯରୁ ଉଠନ୍ତି ନାହିଁ ।
ପିଲାଙ୍କୁ ଉଠାଇ ପାଠ ପଢ଼ାଇବେ ବେଳ ତାଙ୍କୁ ନ ମିଳଇ ॥
ମାଆମାନେ ଯେବେ ଅଳସୋଇ ହେଲେ ପିଲାମାନେ ହେବେ କିସ
ଏହିପରି ନାନା ଅନାଚାର ପଶି ସମାଜକୁ କଲା ବିଷ ॥

# ଦ୍ୱାବିଂଶ ପରିଚ୍ଛେଦ

## ଘରକରଣା

ସ୍ତ୍ରୀ—ହଇହେ ;ମତେ ଆଜ ପାଞ୍ଚଶ ଟଙ୍କା ଦିଅ । ମୁଁ ସୁନା କାଚ ଗଢ଼ାଇବି, ଯାହା ଘରକୁ ଗଲି ଦେଖିଲି ସେ ସୁନା କାଚ ଲଗାଇଛି, ମୁଁ ସେପରି ଦ୍ୱିନମାନିଆ ହୋଇ କାହା ସାଥିରେ ସାଥୀ ହେବି ମ ?

ସ୍ୱାମୀ—ମୋ ପାଖେ ତ ଟଙ୍କା ନାହିଁ କେଉଁଠୁ ଆଣି ଦେବି ! ମୁ ତ ଯଖ ମାରୁନାହିଁ କି ଟଙ୍କା ତିଆରି କରିବା କଳ ବସାଇ ନାହିଁ । ତମେ ହୁକୁମ ଦେଲ ମାତ୍ରକେ କେଉଁଠୁ ଟଙ୍କା ଆଣିଦେବି ମ । ଆପଣା ଆୟକୁ ଗୃହିଁ ସିନା ଖର୍ଚ୍ଚକରିବା ଆଉ ଦେଉଳକୁ ମୁକୁଟିଆଳି କଲେ କଣ କରିବା ! ପିଲାଗୁଡ଼ାକ କପରି ପାଠପଢ଼ି ମଣିଷ ହେବେ, ଝିଅଟି ବିଭା ହେବ କପରି, ସବୁ କଥାକୁ ନଜର ଦେଲେ ସିନା ହେବ । ସୁନାକାଚ ତମେ ଲଗାଇ ବୁଲିଲେ ଚଳିବ କପରି ?

ସ୍ତ୍ରୀ—ଧାନ ଯାହା ଅଛି ବିକିଦିଅ ମତେ ଟଙ୍କା ଦିଅ । ମୁଁ ତ ଧାନ ବିକ ଧାନ ବିକ, ନିତି କହୁଛି , ତେମେ ତ ଶୁଣୁନାହଁ ।

ସ୍ୱାମୀ—ଆହେ, ସବୁବେଳେ ଧାନ ବିକ ଧାନ ବିକ କହିବାଟା ଭଲ କଥା ନୁହେ । ଧାନ କଣ ବିକା ହେଉ ନାହିଁକି ? ଯେତେବେଳେ ସେହିପରି କଣ ଆବଶ୍ୟକ ପଡ଼ିବ ତେତେବେଳେ ବିକା ହେବ ! କଥା ଅଛି—ସବୁ ବିକ କର ଧାନ, ଧାନ ବିକ ନ କର ଆନ । ଧାନ ପରା ମହାଲକ୍ଷ୍ମୀ । ଧାନକୁ ମାଣ ବସାଇ ଗୃହଲକ୍ଷ୍ମୀମାନେ ପୂଜା କରୁଛନ୍ତି । ଧାନ ବିକିବା କଥା ଗୃହଲକ୍ଷ୍ମୀମାନଙ୍କ ତୁଣ୍ଡରେ ଶୋଭା-ପାଏ ନାହିଁ । ସକାଳୁ ଉଠି ଧାନ ବିକା ମନ୍ତ୍ର ଜପ କର ନାହିଁ । ଧାନ ଥିଲେ କେତେ ଲୋକଙ୍କ ଉପକାରରେ ଆସିବ । ତମେ ସୁନାକାଚ ଲଗାଇଲେ କେତେ ଜଣଙ୍କ ଉପକାରରେ ଆସିବ ଭଲା କହିଲ ?

ସ୍ତ୍ରୀ—ଉପକାର କାହାର ହେବ ନାହିଁ ସତ, ମୋ ମନରେ ଆନନ୍ଦ ହେବ ।

ସ୍ୱାମୀ—ହଁ, ସେ କଥା ଠିକଏ ହେବ । ଆପଣା ବଡ଼ଲୋକି ଦେଖାଇ ହେବ । ପାଞ୍ଚ ମାଇପଙ୍କ ଭିତରେ ବସିଲାବେଳେ ଗର୍ବ କରିବ; ହାତକୁ ହଲାଇ ଦେଉଥିବ, କାତକୁ ଦଶଥର ଚୁହୁଁଥିବ; ଏଇଥିରୁ ଗୁଡ଼ାଏ କରିବ ଆଉ ଅଧିକ କଣ ? ଆଚ୍ଛା, ସୁନାକାଚ ଯେ ଲଗାନ୍ତି ସେ କଣ ଅମର ହୁଅନ୍ତି ? ସେ କଣ ସ୍ୱର୍ଗକୁ ଯିବେ ? ତାଙ୍କ ଦେହରେ କଣ ରୋଗ ହେବ ନାହିଁ ?

ସ୍ତ୍ରୀ—ତେମେ ସବୁ ଅପୂର୍ବ କଥା କହ । ଯେଉଁମାନେ ଲଗାଉଛନ୍ତି ସେମାନେ କଣ ଏଇସବୁ କଥା ଭାବି ଲଗାଇଥାନ୍ତି ? କାହା ଘର ମରଦମାନେ ତ ଏପରି କହନ୍ତି ପୁଣି ଆପଣା ମନକୁ ଅଳଙ୍କାରପତ୍ର ଗଡ଼ାଇ ଦିଅନ୍ତି; ଯାହାଙ୍କ ଶରଠାରୁ ସାତକାଣ୍ଡ ରାମାୟଣ ବାହାରେ ।

ସ୍ୱାମୀ—ସେ କଥା ଯାହା କହିଲ ସତ, ଯାହାର ପାଞ୍ଚହଜାରେ ଜମା ଅଛି ସେ ଦି ହଜାରର ଅଳଙ୍କାର ଗଢ଼ି ଦେଇଦେଲା । ଯାହା ଘରେ ନାହିଁ ସେ କଣ କରଜ କରି କରିବ ? ମୁଁ ତ ଯାହା ରୋଜଗାର କରେ ସେ ବି ଜାଣିଛ ମୁଁ କଣ କରିବି ? ତେମେ ତ ସେଗୁଡ଼ାକ ବୁଝ ନାହିଁ । ତମକୁ କହିବା ଯାହା ଅରଣ୍ୟରେ ରୋଦନ କରିବା ତାହା । ବୁଝିବା ଲୋକର ଝକଡ଼ କଲେ ଭଲ, ଅବୁଝା ଲୋକର ରଜା ହେବା ଭଲ ନୁହେ । ତେମେ ଯିନା ଆପୁସ ମାରି ପାଞ୍ଚ କଥା କହୁଛ ଆଉ ଜଣେ ଜଣେ ମାଇପେ ଅଛନ୍ତି ସଫା ଭୁଣ୍ଡିକୁ ଭୁଣ୍ଡି ଲଗାଇ କଳି କରିବେ, ବେଜବାନ କଥା କହିବେ, ଘୋର ଅଶାନ୍ତି ଉପଦ୍ରବ ଜନ୍ମାଇବେ, ତାଙ୍କ କଥା ଶୁଣିଲେ ଋଷି ହେଲେ ବାଳ ଛିଣ୍ଡାଇବ,

ଅକାରଣ କ୍ରୋଧ ଜନ୍ମିବ, ତେଣୁ ସେଭଳି ଲୋକଙ୍କ ସଙ୍ଗେ କଥା ନ କରି ତୁନିହେବା ସବୁଠୁ ଭଲ ଉପାୟ । କହୋ ବୁଝୁ ନାହିଁ ତୁମେ ଖାଲି ପାଞ୍ଚଶ ଟଙ୍କାର ସୁନାକାଚ ଲଗାଇ ବସିଲେ ତ ଚଳିବ ନାହିଁ ! ତେମେ ହେଲ ଘରର ମୁରବୀ, ଆଉ ସମସ୍ତଙ୍କୁ ସେତିକ ସେତିକ ଟଙ୍କାର କାଚ ବା ଅଳଙ୍କାର ନ ଦେଲେ ତୁମୂଳ କାଣ୍ଡ ଆରମ୍ଭ ହେବ । ଶେଷକୁ ଏଥିପାଇଁ ହୁଏତ ସୁନାଘର ଚୂନାହେବ । ମଣିଷ ଆପଣା ଅବସ୍ଥା ପ୍ରତି ସବୁବେଳେ ନଜର ଦେବା ଆବଶ୍ୟକ ପର-କଥା ଦେଖି ଉଇଁହେଲେ ଚଳିବ ନାହିଁ । ମନରେ ସୁଖ ଅଛି ପୁଣି ଦୁଃଖ ଅଛି । ମନଟା ଉହାଳ ବକଳ କଲେ କେବଳ ଗଳ୍ପିହୋଇ ମରିବ । ମନଟାକୁ ସଂଯତ କରିଦେଲେ ବହୁ ଆନନ୍ଦ ମିଳିବ ।

ସ୍ତ୍ରୀ—ମନଟାକୁ କପରି ସଂଯତ କରିବ ଭଲ କହିଲ ?

ସ୍ୱାମୀ—ଆହେ, ଅହିଯ୍ସ ସ୍ତ୍ରୀମାନେ ଆମ ଦେଶରେ କାଚପିନ୍ଧିବାର ଚଳନ ଅଛି । ଆଚ୍ଛା, ସାହେବାଣୀମାନେତ ହାତରେ କାଚ ପିନ୍ଧନ୍ତି ନାହିଁ ସେମାନଙ୍କ ହାତ ଲଙ୍ଗଳା । ଅମ ଦେଶ ବିଧବାଙ୍କ ହାତ ଯେପରି ସେ ଦେଶର ସଧବାଙ୍କ ହାତ ସେହିପରି । ତେବେ ସେମାନେତ ପୁଣି ଘରର ଘରଣୀ ହୋଇ ଚଳୁଛନ୍ତି । ସେମାନେ ପୁଣି ଖୁବ୍ ବଡ଼ ବଡ଼ ଲୋକଙ୍କ ସ୍ତ୍ରୀ, ତାଙ୍କ ସ୍ୱାମୀମାନେ ହଜାର ହଜାର ଟଙ୍କା ଦରମା ପାଉଛନ୍ତି । ତାଙ୍କ ମନରେ ତ କଛି କଷ୍ଟ ନାହିଁ ବରଂ ସେମାନେ କାଚ ଚୁଡ଼ି ତାଡ଼ ପିନ୍ଧିବାକୁ ଘୃଣା ବୋଧ କରନ୍ତି ଏବଂ ଆମ ଦେଶ ସ୍ତ୍ରୀଲୋକ କାଚ ଶଙ୍ଖା ବାନ୍ଧି ପ୍ରଭୃତି ଦେଖିଲେ ନାକ ଟେକନ୍ତି । ଏଥିରୁ ବୁଝ ସୁଖଟା ମନରେ ଅଛି ନା କାଚରେ ଅଛି । ଆମଦେଶରେ ଏ ଗୋଟାଏ କେବଳ ଆଧି ବ୍ୟାଧି । ଯେ ସୁନା କାଚ ଲଗାଏ ସେ ମନେ କରେ ତାଠାରୁ ବଳି କେହି ବଡ଼ ନାହିଁ, ସେ ଭଲ

ଅନ୍ୟମାନେ ତାଠାରୁ ସାନ । ଆମ ଦେଶରେ ଯେ ବଡ଼ ଲୋକର ସ୍ତ୍ରୀ ହେଲା ସେ ପାଞ୍ଚିଲା ତା ବଡ଼ ପଣିଆ କେବଳ ସୁନା କାଚରେ ଅଛି ତାର ଅନ୍ୟ ଗୁଣ ଥାଉ ବା ନ ଥାଉ ଯେବେ ବାହାଏ ସୁନାକାଚ ତା ହାତରେ ଅଛି ସେ ଅଗ ଗୋଡ଼ରେ ବାଟ ଚାଲିବ ; ହାତକୁ ସବୁ ବେଳେ ଅନାଉ ଥିବ, ମନେ ମନେ ପାଞ୍ଚୁଥିବ ମୋଠାରୁ କିଏ ବଡ଼ ଅଛି ମ ?

ଥିଲେ ଥାଉ ଅଳଙ୍କାର ହଜାର । ଚରିତ୍ର ନ ଥିଲେ ସବୁ ଅସାର ॥
ଗୁଣ ଯାର ଅଛି ସେ ସିନା ବଡ଼ । ଅଳଙ୍କାର ଯୋଗ ନାଶଏ ଗୁଡ଼ ॥
ଅଳଙ୍କାର ଯୋଗେ ନ ହୁଅ ଧାର । ଚରିତ୍ରନାବେ ହୁଅ ଭବ ପାର ॥
ବାହାର ଭୂଷଣ ଏ ଅଳଙ୍କାର । ନୁହଇ ଗୁଣ କଷଟି ପଥର ॥
ଭିତର ଭୂଷଣ ଚରିତ୍ର ଜାଣ । ସେହିଟି ଏକା କଷଟି ପାଷାଣ ॥
ସେହି କଷଟିରେ ନିଜକୁ କଷ । ଅଳଙ୍କାର ବଶେ କେବେ ନ ରସ ॥
ପାଞ୍ଚ ଦଶ ମାଳ ହାର ପକାଇ । ଗୁଡ଼ିକ ହାତେ ନ ଦିଅ ଫୁଲାଇ ॥
ଘରର ଘରଣୀ ହୋଇବ ଯେବେ । ଅଳଙ୍କାରେ ମନ ନ ରସୁ କେବେ ॥
ଲୁହା କାଚ ଥିଲେ ଥାଉ ହାତରେ । ବଡ଼ ହୁଅ ଗୋ ଚରିତ୍ର ବଳରେ ॥
ନ ଭୁଲ ଦେଖି ସୁନା ରୂପା କାଚ । କାଚ କାଚ ବୋଲି କେବେ ନ ନାଚ
କାଚ କାଞ୍ଚନକୁ ମଣ ସମାନ । ଗୃହଲକ୍ଷ୍ମୀମାନେ ମୋ କଥା ମାନ ॥
ସୀତା ସାବିତ୍ରୀ ଖନା ଲୀଳାବତୀ । ସୁନା କାଚ ପିନ୍ଧି ବଡ଼ ନୁହନ୍ତି ॥
ଗୁଣବଳେ ବଡ଼ ସେମାନେ ଥିଲେ । ଦେବୀ ହୋଇ ସଦା ପୂଜା ପାଇଲେ
ସେପରି ଗୁଣ ଅରଜିବ ଯେବେ । ଗୃହଲକ୍ଷ୍ମୀ ସିନା ହୋଇବ ତେବେ
ବୋଝେ ଅଳଙ୍କାର ଲଦି ହୋଇବ । କଣ୍ଡାକର ଗୁଣ ଯେବେ ନ ଥିବ ॥
ଅଲକ୍ଷ୍ମୀ ବୋଲି ବୋଲିବେ ସକଳ । ଏ ସୁନା ଲଦାରୁ କି ଅଛି ଫଳ ॥

ସ୍ତ୍ରୀ—ମୋ ମାଲୋ, ସ୍ୱାମୀଙ୍କୁ ଯେବେ ଗୋଟାଏ କଥା କହିବ ତେବେ ଏ ଅଠର ଖଣ୍ଡ ମହାଭାରତ ବାଢ଼ି ବସିବେ ।

ସ୍ୱାମୀ—ଆହେ ସେପରି କଥା କହିଲେ ସିନା ମହାଭାରତ ଫିଟିବ, ନୋହିଲେ କାହିଁକି ଫିଟିବ । ମହାଭାରତଟା ଅକାମି ଶାସ୍ତ୍ର ନୁହେ । ମହାଭାରତରେ ଅନେକ ଶିଖିବାର ବିଷୟ ଅଛି । ଭାରତରେ ଏପରି କଥା ନାହିଁ ଯାହା ମହାଭାରତରେ ନାହିଁ । ମହାଭାରତକୁ ଯେ ମନଧ୍ୟାନ ଦେଇ ପଢ଼ିବ ସେ ଅଗାଧ ପାଣ୍ଡିତ୍ୟ ଲାଭ କରିବ ।

ସ୍ତ୍ରୀ—ଆହେ ମୁଁ କ'ଣ ସେ ମହାଭାରତ କଥା କହିଲି ? ମୁଁ କହିଲି ଘର ମହାଭାରତ କଥା ।

ସ୍ୱାମୀ—ଆହେ, ମୋର କଣ ଗୋଟାଏ ଅଲଗା ମହାଭାରତ ଅଛି । ମୁଁ ଯାହା କହିଲି ସେ କଥା ମଧ୍ୟ ମହାଭାରତରେ ମିଳି ପାରେ । ନୀତିକଥା ମହାଭାରତରେ ବହୁତ ଅଛି । ମୁଁ ତ ଆଉ କିଛି କହୁନାହିଁ । ହିସାବ କଥା କହୁଛି । ଯେତିକି ଚୂନା ସେତିକି ପିଠା କଲେ ସିନା ହେବ ।

ଆୟ ଦେଖି ବ୍ୟୟ କର । ଯେବେ ଜାଣିବ ସଂସାର ॥
ଆୟଠୁଁ ବ୍ୟୟ ବଳିଲେ । ଦାଣ୍ଡରେ ଭିଖାରୀ ହେଲେ ॥
ହିସାବ ରଖିବ କଷି । ସଦାକାଳେ ହେବ ଖୁସି ॥
ଆୟକୁ ଦୃଷ୍ଟି ନ ଦେଲେ । ଚଳି ନ ପାରିବ ତିଳେ ॥
ହାତରେ ନ ଥିଲେ ଧନ । କେଣିକି ନ କର ମନ ॥
ପର ଘର ଆଧି ଦେଖି । ଡରିଁ ହୋଇ ନୁହ ଦୁଃଖୀ ॥
ଋଣ କରି ଘୃତ ପାନ । କେବେ ନ କରିବ ମନ ॥
ଆୟ ବୁଝି ବ୍ୟୟ କଲେ । ନ ପଡ଼ିବ ଋଣ ଜାଲେ ॥
ଋଣ କରି ବଡ଼ଲୋକ । ଦେଖାଇଲେ ଯିବ ଠକ ॥

ନିଜ କଥା ନିଜେ ବୁଝ । ଆନ କଥାକୁ ନ ହେଜ ॥
ଗୃହିଣୀ ଚେତା ନ ହେଲେ । ଘର ଭାଙ୍ଗିଯିବ ବଳେ ॥

ସ୍ତ୍ରୀ—ଏତେ କଥା ଯାକ କିଏ କେଉଁଠି ଚଳୁଛି ମ ?

ସ୍ୱାମୀ—ଚଳିବା ତ ଉଚିତ । ନ ଚଳିଲେ ତହିଁର ଫଳ ପାଇବ । ଗୃହସ୍ଥାଶ୍ରମ ପ୍ରଧାନ ଶିକ୍ଷା ମନ୍ଦିର । ଯାବତ ପ୍ରକାର ଶିକ୍ଷା ଏହି ଆଶ୍ରମରେ କରିବାକୁ ହୁଏ । ସେଇଥିପାଇଁ ଭଗବାନ ନିଜେ କହିଲେ, "ଗୃହସ୍ଥାଶ୍ରମରେ ରହି ଯେ ଧର୍ମ ଆଚରି । ସେ କଥା ଗୋଟିକୁ ପାର୍ଥ କେହି ନୁହେ ସରି ।" ସକଳ ପ୍ରକାର ଧର୍ମ୍ମ କର୍ମ୍ମ ଏଠାରେ ଶିକ୍ଷା କରାଯାଏ । ସୁତରାଂ ଯେତେ ଭଲ କଥା ଅଛି ତାକୁ କାମରେ ଲଗାଅ ସୁଫଳ ଫଳିବ, କେବଳ ତୁଣ୍ଡରେ ଗାଇଲେ ହେବ ନାହିଁ । ଆଚ୍ଛା ଆଜି ଏତିକି ଥାଉ ।

---

## ୨୩ଶ ପରିଚ୍ଛେଦ

### ଚଷା

ସ୍ତ୍ରୀ—ହଇହେ, ତମପାଖେ କିଏ ଗୁଡ଼ାଏ ବସିଥିଲେ କି ? ସେ ଗୁଡ଼ାଏ କି ମଇଳା ମ୍ଳେଚ୍ଛ ଦିଶୁଛନ୍ତି ଲୋ ମା ? ସେଗୁଡ଼ାଙ୍କୁ କିମନ୍ତି ପାଖରେ ବସାଇଲ ମ ?

ସ୍ୱାମୀ—ସେମାନେ ଆମ ପ୍ରଜା, ଭାଗ ଜମି ଚଷନ୍ତି । ଯେଉଁମାନେ ହଳବାଡ଼ିରେ କାଦୁଅ ପଙ୍କରେ କାମ କରନ୍ତି ସେମାନେ ତମ ଆମ ପରି ପରିଷ୍କାର ପରିଚ୍ଛନ୍ନ ହେବେ କିପରି ? ସେମାନେ ପଙ୍କ କାଦୁଅରେ

ଘାଣ୍ଟି ହେଉଛନ୍ତି ବୋଲି ତ ଆମେ ଆଜି ସାଆନ୍ତ ହୋଇ ଉଚ୍ଚ ପିଣ୍ଡାରେ ବସିଥାଉଁ । ସେମାନେ ଘୃଣାର ପାତ୍ର ନୁହନ୍ତି । ବରଂ ସେମାନଙ୍କ ପ୍ରତି ଆମ୍ଭମାନଙ୍କର ସହାନୁଭୂତି ରହିବା ଉଚିତ । ଆମ୍ଭେମାନେ ସର୍ବଦା ତାଙ୍କମାନଙ୍କଠାରେ ଋଣୀ । ସେମାନଙ୍କ ଋଣ ଆମ୍ଭେ ଜନ୍ମ ଜନ୍ମକେ ଶୁଝି ପାରିବା ନାହିଁ । ଚଷା ଚାଷ କରୁଛି ବୋଲି ଆମେ ଖାଇ ପିଇ ଏଡ଼େ ମାରୁଥାଉଁ । ଚଷା ଆମର ପୋଷଣାହାରୀ ।

ସ୍ତ୍ରୀ—ହେଲା, ସେ ଏବେ ପୋଷଣାହାରୀ ହେଲେ ସେମାନେ ପରିଷ୍କାର ପରିଚ୍ଛନ୍ନ ହୋଇ ବାସି ଧୋବଲୁଗା ଖଣ୍ଡେ ଖଣ୍ଡେ ପିନ୍ଧନ୍ତେ ନାହିଁ । ଘରେ ଚଢୁଛନ୍ତି ଆଠପଣ ତ ନେଉଛନ୍ତି ।

ସ୍ୱାମୀ—ହଁ, ପରିଷ୍କାର ପରିଚ୍ଛନ୍ନ ହେବା ଉଚିତ, ମାତ୍ର ଅନେକ କାରଣରୁ ସେମାନେ ହୋଇପାରନ୍ତି ନାହିଁ । ଅଭାବଟି ତହିଁର କାରଣ । ସେମାନେ ତ ସବୁବେଳେ ଦରିଦ୍ର ପଞ୍ଚାକ୍ଷରୀ ମନ୍ତ୍ର ଜପ କଲେ ଆଉ କ'ଣ କରିବେ ? ସେମାନଙ୍କ ଅବସ୍ଥା ବିବେଚନା କର ।

ଆରେ ଚଷା ଭାଇ ଧନ୍ୟ ତୋ ଜୀବନ,
ମଥା ଘର୍ମ ଢାଳେ କାଟୁ ରାତ୍ରି ଦିନ ।
ବିଶ୍ୱ ବ୍ରହ୍ମାଣ୍ଡକୁ ପୋଷୁ ଦେଇ ଅନ୍ନ,
ତୁହି ଏକା ବିଶ୍ୱମ୍ଭର ବୋଲି ଜାଣ ।
ଧନୀ ରାଜା ସାହୁ ଜମିଦାର ଯେତେ,
ତୋର ଅଇଜନେ ବଞ୍ଚନ୍ତି ସମସ୍ତେ ।
ପରହିତେ ସଦା କାଟୁଛୁ ଜୀବନ ।
ପର ପାଇଁ ଦେଉ ତୋ ମହାପରାଣ ।

ତୋପରି କେ ଜଣେ ନାହିଁ ହତଭାଗା,
ପରପାଇଁ ସଦା ମରୁ ତୁହି ଝୁରି ।
ଶୀତ ଖରା ବର୍ଷା କାକର କୁହୁଡ଼ି,
ସହୁ କେତେ ଦୁଃଖ ସଦା ବିଲେ ପଡ଼ି ।
ବରଷକେ ଯାହା ସବୁ କରୁ ଆୟ,
ଦେଖି ନୟନରେ ନ ରଖି ନିଶ୍ଚୟ ।
କେ କେତେ ବଣିଆ ଯୋଗି ଫୁଙ୍କାନଳ,
ବାଉ ବାଟେ ହର ନଅନ୍ତ ସକଳ ।
ଟୋ ଘରେ ସନ୍ତତ କୁଳଦେଇ ଓଷା,
କେବେ କହମହ କା ଗୁଡ଼େ ବେଉଷା ।
ମୁଣ୍ଡଝାଳ ତୁଣ୍ଡେ ମାରି ନିଶିଦିନ,
ମାଟି ତାଡ଼ି ଯାହା କରୁ ଅରଜନ ।
ଜଗି ବସିଥାଏ ଉପରେ ଛଅଣ,
ତଲ୍ ମାରିନଏ ନ ପୂରୁ ହି’ ଦିନ ।
କେ ନେଇ ସେ ଧନ ତୋଳେ କୋଠାବାଡ଼ି,
କେ ଚଢ଼େ ମଟର ରେଲ ଘୋଡ଼ାଗାଡ଼ି ।
କେ ନେଇ ସେ ଧନ ଖାଏ ଘିଅ ଅନ୍ନ,
ପିନ୍ଧେ ପାଟ ପୀତାମ୍ବର ପରିଧାନ ।
ସେ ଧନେ କେ ରଖେ ବହୁତ ଚାକର,
ଶହ ଶହ ଦେଇ ପୋଷେ ନିରନ୍ତର ।
ସେ ଧନେ କେ ଦାନୀ ଦୟାଳୁ ବୋଲାଏ,
ସଂସାରେ ବହୁତ ଯଶ ରଖିଯାଏ ।
କେ ତୋଳେ ଦେଉଳ ଅଟ୍ଟାଳି ମନ୍ଦିର,
କେହୁ ଘୋଡ଼ା ଚଢ଼ି ହକର ହକର ।

କେ ଖଞ୍ଜେ ବକୁଳ ଆଲୁଅ ସେ ଧନେ,
କେ ବସେ ମହାର୍ଘ୍ୟ ତୁଳ ତଲ୍ପାସନେ ।
ଦୋଳ ପଲଙ୍କରେ କାହାର ଶୟନ,
ଦଶ ଆଙ୍ଗୁଠିରେ ମୁଦ୍ରିକା ରତନ ।
କା ଘର ମଣ୍ଡଳେ ନାନା ସୁଗନ୍ଧରେ,
ବାଜୁଅଛି ବାଜା ନିତି ନିସନ୍ଧ୍ୟାରେ ।
ସେ ଧନରେ କେହୁ କରଇ ମଉଜ,
ନିତି ପ୍ରତି ହୁଏ କେତେ କେତେ ସଜ ।
ଖାଦ୍ୟପେୟ ପରିଧାନ ପରକାର,
ନିତି ନୂଆ ନୂଆ କରେ କାରବାର ।
ସେ ଧନେ କେ ପୁଣି ଉଡ଼ଇ ଆକାଶେ,
ଦେଖି ତଳେ ଥାଇ ମହାଭୟ ଶ୍ୱାସେ ।
କେ ମହାର୍ଣ୍ଣବରେ ବୋଇତ ଚଳାଏ,
କେହୁ ମାସକର ବାଟ ଦିନେ ଯାଏ ।
ବିଦେଶୀ ଦରବ କିଣି ତୋ ଧନରେ,
ସଜାଇଛି ଘର ନାନା ପରକାରେ ।
ତୋର ଧନ ନେଇ ସର୍ବେ ମହାଭୋଗୀ,
ତୋ ସମାନ ଜଣେ ନାହିଁ କେହି ତ୍ୟାଗୀ ।
ତୋ କୁଟୀର ଭଙ୍ଗା ଖିଏ ନାହିଁ ନଡ଼ା,
ବ୍ୟଞ୍ଜନ ପାଇଁକି ନ ମିଳଇ ଖଡ଼ା ।
ମିଳେ ଯେବେ ଖଡ଼ା ନ ମିଳଇ ଲୁଣ,
ପଖାଳ ତୋରାଣି ଅଲଣା ତିଅଣ ।
ନ ଦେଖଇ ତୋର କେଶ ଦିନେ ତେଲ,
ନ ଜାଣୁ ତୁ ଦିନେ କି ଗେଲ ଖିଆଲ ।

ଦୁଇଓଳି ତୋର ନ ପୂରଇ ପେଟ,
ପୁଷ ମାସ ବେଳେ ଭୋକେ ଛଟପଟ ।
ପାଳ୍ ଶୋଇବାକୁ ନ ମିଳଇ କୁଟା,
କୁଟୁମ୍ବ ଜଞ୍ଜାଳେ ମହା ହଟହଟା ।
ଖଣ୍ଡିକରୁ ନାହିଁ ଦି ଖଣ୍ଡ ବସନ,
ଚିରା ଫଟା ଭୁଟା ଅତି ହିଁ ମଳିନ ।

ଦାନା କନା ଚିନ୍ତା-ଚିତା ଦିଏ ପୋଡ଼ି,
ଦିଶୁଅଛି ଦେହ କି ଶିର ଦଉଡ଼ି ।
ପାଣି କାନ୍ଦୁଅରେ ଦିନ ରାତି ପଡ଼ି,
ହାଁ ଶୋଷ ହାଁ ଭୋକେ ଆସିଲେ ଦଉଡ଼ି ।

ଲଗାଇବା ପାଇଁ ନ ମିଳଇ ତେଲ,
ଗାଧୋଇବା ପାଇଁ ନାହିଁ ଭଲ ଜଳ ।

ନୁଖୁର ଗାଡୁଆ ଗୋଳିଆ ପାଣିରେ,
ପରିଷ୍କାର ପରିଚ୍ଛନ୍ନ ଯାଏ ଦୂରେ ।
ଅଧିକୁଁ ଅଧିକ ବସୁଥାଏ ମଳି,
ପଙ୍କ ଗଡ଼ିଆରୁ ଆସୁ ବେଗେ ଚଳି ।
ବାଜିଆ ମାଆକୁ ଡାକୁ ତୁ ଧିକଲେ,
ଆଣିଲେ ତୋଡ଼ାଣି ଭୋକେ ପେଟ ଜଳେ ।

ଘରଣୀର ଦାଣ୍ଡ ସବୁଠାରୁ ଟାଣ,
ଆସଇ ତହିଁକି ହୋଇ ତମ ତମ ।

ଆଣି ଥୋଇ ଦିଏ କଂସାଏ ତୋଡ଼ାଣି,
ଭାଗେ ଭାତ ତିନିଭାଗ ଧଳା ପାଣି ।

ଅନା ବନା ଶାଗ ଖରଡ଼ା ମେଞ୍ଚାଏ,
ବାକ୍ୟ ବାଣେ ପୁଣି ଦଞ୍ଚଇ କେଞ୍ଚାଏ ।
ଶାଗ ଖରଡ଼ାରେ ନାହିଁ ଲୁଣ ତେଲ;
ତହିଁ ପରେ ପୁଣି ଘରଣୀର ଗେଲ ।
ଲୁଣ ଆଣେ ବୋଲି ଡାକିଲେ କୃଷକ,
ବୋଲେ ଲାଜ ନାହିଁ ଆରେ ଅଲାଜୁକ ।
ଅଣ୍ଟାରେ ଯାହାର ନ ଥିବ ଧନ,
ଲୁଣ ପାଇଁ କମ୍ପା କରିବ ସେ ମନ ।
ଏ ଉତ୍ତର ଶୁଣି କୃଷକ ମଣ୍ଡନ,
ଅଲଣା ତୋରାଣି ପିଅଇ ବହନ ।
ହେଁସ ଖଣ୍ଡେ ଧରି ପକାଏ ଦୁଆରେ,
ଲମ୍ବହୋଇ ପଡ଼ିଯାଏ ଆରାମରେ ।
ଗ୍ଲୁଇ ନିଦ ମାତ୍ର ଆସୁ ଆସୁ ମାଡ଼,
ଦୁଆରେ ପିଆଦା ଆସି ଦେଲା ରଡ ।
ଆରେ ଶଳା ତୋ ମିଆଦ ଗଲା ଗଡ଼,
ନ ଦେଲୁ ତୁ କିଛି କଡ଼ାଏ କଉଡ଼ି ।
ଏଥର ସୁନଆଁ ଭେଟି ଦେଲୁ ନାହିଁ,
ଦଶହରାଦିନ ତୋର ଦେଖାନାହିଁ ।
ଡକାଇଛନ୍ତି ସାହୁ ଖଣ୍ଡଦମ ଆସ,
ନ ଗଲେ ତୋ ନାମେ କରିବ ନାଲିଶ ।
ଖରଚ ଖୋରାକ ମୋର ବେଗେ ଆଣ,
ନଦେଲେ ବେଇଜତ କରିବଟି ଜାଣ ।
ହୁହୁଁ ହୁହୁଁ ଜଣେ ପିଆଦା ପଠାଣ,
ଖୋଲିଛି ଚଢ଼ାଇ ମିଳିଲା ତକ୍ଷଣ ।

ଲାଟବନ୍ଧ ଆଉ ଦୁଇଶନ ଅଛୁ,
ଖଜଣା ହାତରୁ ନ ପାରୁ ମୁରୁଛୁ ।
ଧରିଦେ ମୋହର ଖରଚ ଖୋରାକ,
ନଦେଲେ ଧକ୍‌କାକେ ଭାଙ୍ଗିବି ତୋ ବେକ ।
ଏକଥା ନସରୁ ଆସେ ଚଉକିଆ,
ଟିକସ ପଇସା ଦେଲୁ ନାହିଁ କିଆଁ ।
ଟିକସ ପଇସା ଦେଲୁ ନାହିଁ ଗୁଣେ,
ଅସୁଲ କରିବି ତୋ ଠାରୁ ଦଗୁଣେ ।
ପଲ୍ଲିଗ୍ରାମେ ଚଷା ଭୋଗେ ଏତେ ଦୁଃଖ,
ବର୍ଷରେ ଜୀବନେ ନାହିଁ କିଛି ସୁଖ ।

ସ୍ତ୍ରୀ—ଏତେ କଥାତ ମୁଁ ଜାଣି ନଥିଲି । ଆମେତ ସବୁବେଳେ ଘର କଣରେ ପଶିଲୁ ଗ୍ରାମ ଗତି କଥା ଜାଣିବୁ କିପରି ।

ସ୍ୱାମୀ—ଜାଣିବାକୁ ଇଚ୍ଛାକଲେ ଜାଣିପାର । ଗ୍ରାମରେ କିଏ କିପରି ଚଳୁଛି କିଏ କି ଅବସ୍ଥାରେ ଅଛି ଏକଥା ଖବର ନେଲେ ଜାଣି ପାରନ୍ତି । ଖବର ନ ନେଲେ କିପରି ଜାଣି ପାରିବ । ଗରିବ ଦୁଃଖୀ ରଙ୍କୀଙ୍କ ପ୍ରତି ନଜର ଫେରାଇଲେ ସହଜରେ ଜାଣି ପାରିବ । ଯେଉଁମାନଙ୍କୁ ବିଧି ସୁଖରେ ରଖିଛନ୍ତି । ସେମାନେ କେବଳ ଆପଣା ସୁଖ ଚିନ୍ତାରେ ମଗ୍ନ ହେଲେ ପରର ଦୁଃଖ ଜାଣି ପାରିବ ନାହିଁ । ପର ଦୁଃଖରେ ଦୁଃଖୀ ପର ସୁଖରେ ସୁଖୀ ଯେ ହେବ ସେ ସହଜରେ ଜାଣିପାରିବ ।

ସ୍ତ୍ରୀ—ଚଷାର ଅବସ୍ଥା କାହିଁକି ଏପରି ହୁଏ ମ ? ସେ ସମସ୍ତଙ୍କୁ ଅନ୍ନ ଯୋଗାଏ, ନିଜେ ମୁଠିଏ ମନ ବୋଧକରି ଖାଇବାକୁ ପାଏ-ନାହିଁ କାହିଁକି ?

ସ୍ୱାମୀ—ସେ କଥା କହିଲେ ଗୋଟାଏ ପୋଥି ହେବ । ସାତଦିନ ସାତ ରାତି କହିଲେ ସେ କଥା ସରିବ ନାହିଁ । ଅନେକ ଗୁଡ଼ାଏ କାରଣ ମିଶି ଏ ଦଶା ଘଟାଇଛି । ତା ଭିତର କେତେ ଗୁଡ଼ାଏ ଦୋଷ ଅଛି ଅନେକ ବାହାର କାରଣ ମଧ୍ୟ ଅଛି । ସେମାନଙ୍କ ବାପ ଅଜା ତ ପୁଣି ସୁଖରେ ଚଳୁଥିଲେ, ଏମାନଙ୍କ ଦଶା କାହିଁକି ଏପରି ହେଲା ? ଆଜି ଏତିକି ଥାଉ ।

---

## ୨୪ଶ ପରିଚ୍ଛେଦ

## କଳିକାଳ ଶାଶୁ ବୋହୂ

ସ୍ତ୍ରୀ—ଏ କାଳକୁ ମଣିଷ ପାରିବ ନାହିଁ । ଏ କାଳକୁ ବୋହୂ ଗୁଡ଼ାକ ତୁଣ୍ଡକୁ ତୁଣ୍ଡ ଲଗାଇ ଯାହା କହି ଦେଉଛନ୍ତି । ପଦେ କହିଲେ ଦଶପଦ ଉତ୍ତର ଦେଉଛନ୍ତି । ଆମେ ତ ପୁଣି ବୋହୂ ହୋଇଥିଲୁଁ । କାନ କାଟି ନେଲେ ଆମ ତୁଣ୍ଡରୁ କଥା ବାହାରୁ ନ ଥିଲା ।

ସ୍ୱାମୀ—ଆହେ ତମ କାଳ କଥା କାହିଁକି କହୁଛ ? ଆହେ ସେ କାଳ ଝିଅ ବୋହୂ ପରାଧୀନ ଥିଲେ ଏବେ ପରା ସ୍ୱାଧୀନ । ଏବକାଳ ଝିଅ ବୋହୂ ପାଠୋଇ, ସେ କାଳର ଝିଅ ବୋହୂ ଅଶିକ୍ଷିତା । ଝିଅ ବୋହୂମାନେ ଅଶିକ୍ଷିତା ଥିବାରୁ ମା ଶାଶୁମାନେ ଅତ୍ୟଧିକ ଅତ୍ୟାଚାର କରି ମୁରବିଗିରି କରି, କରୁଥିଲେ, ଏବେ ତ ବୋହୂମାନେ ପାଠୋଇ, ଇସ୍କୁଲରେ ପାଠ ପଢ଼ିଛନ୍ତି । ପାସ କରିଛନ୍ତି । ପୂର୍ବେ ସିନା ଓଢ଼ଣା ଥିଲା ଏବେ ଓଢ଼ଣା କାଢ଼ିଛନ୍ତି । ଏବକାଳ ବୋହୂ କହୁଛନ୍ତି ଶାଶୁ ଜଣକୁ ତ ଆମେ ଜଣେ, ଶାଶୁ

ତାଙ୍କୁ କହିବ କିଆଁ ସେ ସହିବେ କିଆଁ । ଏହି ମନୋଭାବ ହେତୁ ସେ ତୁଣ୍ଡକୁ ତୁଣ୍ଡ ଲଗାଇ କଥା କହୁଛନ୍ତି । ଏଣିକି ଶାଶୁମାନେ "ଆପଣା ସଖି ଆପଣା ମହତ ଆପେ ରଖି" ମତ ନ ଧରିଲେ ବେ ମହତ୍ତ୍ୱ ହେବେ, ଶାଶୁ ବୋହୂ ଦୁହିଁ ଧସ୍ତାଧସ୍ତି ହୋଇ ଚଢ଼ାଚଢ଼ି ହେବେ ।

ସ୍ତ୍ରୀ—ଆହେ, ଏମାନଙ୍କର ଚାଲିଚଳନ ଦେଖି ବାଦ ସହୁ ନାହିଁ ।

ସ୍ୱାମୀ—ହଁ, ସେ କଥା ସତ, ମାତ୍ର କଣ କରିବ ! ଅବସ୍ଥା ଦେଖି ତ ବ୍ୟବସ୍ଥା କରିବ ! ଏକା କଣ ଜଣକ ଘରେ ଏକଥା, ସବୁରି ଘରେ ଝିଅବୋହୂଙ୍କ ଅବସ୍ଥା ସେହିପରି । ଆଜକାଲି ତ ସେଇ ପବନ ବୋହୁଛି କଏ କଣ କରିବ । ଅଚ୍ୟୁତାନନ୍ଦ ଦାସେ ତାଙ୍କ ମାଳିକାରେ କଳିକାଳରେ ଯାହା ଯାହା ଘଟିବ ବୋଲି ଲେଖି ଯାଇଛନ୍ତି ସେ କଥାମାନ ଅକ୍ଷରେ ଅକ୍ଷରେ ଘଟୁଛି । ସେ କହିଥିଲେ ଶାଶୁକୁ ବୋହୂ ମାନିବେ ନାହିଁ । ସେ କଥା ଅକ୍ଷରେ ଅକ୍ଷରେ ଘଟୁଛି । ରାଗ ରୋଷ ହୋଇ ଖିଙ୍ଗାଏ ବଚସା କରି ଲାଭ କଣ ? ଆପଣା ମୁଣ୍ଡ ବଥାଇବ, ପେଟ ଗରମ ହୋଇ ନାନା ବିକୃତ ଜନ୍ମାଇବ । ଏ କାଳରେ ପତିକି ପତ୍ନୀ ମାନିବେ ନାହିଁ, ଶାଶୁକୁ ବୋହୂ ମାନିବ ନାହିଁ, ମାଆକୁ ଝିଅ ମାନିବ ନାହିଁ, ଦେଢ଼ଶୁରକୁ ଭାଇବୋହୂ ମାନିବ ନାହିଁ, ପତିକି ଘର ଜଗାଇ ପତ୍ନୀ ସଭା ସମିତିକି ଯିବେ, ବକର ବାକର କରିବେ, ପୁରୁଷଙ୍କ ସଙ୍ଗେ କାନ୍ଧକୁ କାନ୍ଧ ଲଗାଇ ବସି ଜବାବ ସବାଲ କରିବେ । ଆହୁରି କେତେ କଥା ବାକି ଅଛି ଏତିକିରେ ତମ ବାଦ ସହୁ ନାହିଁ କିଆଁ !

ସ୍ତ୍ରୀ—କେମିତି କଥା କହୁଛ, ଏପରି କଲେ ଶାଶୁମାନେ ଚାଟି ଗିଳିକରି ରହିବେ କିଛି କହିବେ ନାହିଁ ।

ସ୍ୱାମୀ—ତେମେ କହିଲେ ସେ କହିବେ ଏ ତ କଳିକାଳ । ଶାଶୁଙ୍କୁ ବୋହୂମାନେ ମାନିବେ ନାହିଁ ବୋଲି ତା ପାଠ କହୁଛି । ଏ କାଳକୁ ଝିଅ ବୋହୂ ପାଠ ପଢ଼ିଲେ ସ୍କୁଲ ବା ପାଠଶାଳା ବିଶ୍ୱବିଦ୍ୟାଳୟକୁ ଯାଇ ଯୁବକମାନଙ୍କ ସଙ୍ଗେ ଏକାଠି ବସି ପାଠ ପଢ଼ିଲେ, ସଭା ସମିତିକି ଗଲେ, ଗୃହକର୍ମ ବାହାରିକଲେ, ତାଙ୍କ ମୁହଁ ଖୋଲି ଚଳନ ସବୁ ଖୋଲି ହୋଇଗଲା । ସେ ତ ପୂର୍ବପରି ଓଢ଼ଣା ନାକ ସରିକି ପକାଇ କବାଟ କଣରେ ଚୁ ମାରୁ ନାହାନ୍ତି । ଡରିବେ କାହିଁକି ?

ସ୍ତ୍ରୀ—ପାଠ ତ ପୁଣି କହୁଛି, ଗୁରୁଜନମାନଙ୍କୁ ମାନ୍ୟ କରିବ । ପୂଜ୍ୟ ପୂଜାରେ ବ୍ୟତିକ୍ରମ ହେଲେ ନିଜର ଅମଙ୍ଗଳ ହେବ । ଶାଶୁ ହେଲେ ଘରର ମୁରବୀ,ତାଙ୍କୁ ନ ମାନିଲେ ସେଘର ଚଳାଇବ କିପରି ?

ସ୍ୱାମୀ—ମାନିବା ତ ତାର ଧର୍ମ । ତାଙ୍କୁ ମନାଇବାର ବାଟଅଛି । ଆଗେ ଡରି ମରି ମାନୁ ଥିଲେ, ଶାଶୁମାନେ ଗାଳି ମନ୍ଦଦେଇ ମନାଉ ଥିଲେ । ଏବେ ତ ଡରାଇ ଧମକାଇ ମନାଇ ପାରିବନାହିଁ,ଏବେ ମାଲେ ଧନଲେ କହି ମନାଇ ପାରିଲେ ଚଳିବ । ସବୁକାଳେ ତ ସବୁ କଥା ଚଳେନାହିଁ । ଯେଉଁ କାଳକୁ ଯେଉଁ ବ୍ୟବସ୍ଥା କଲେ ସିନା ଚଳିବ । ସବୁ କାଳେ ଏକା ଠେଙ୍ଗା ପିଠାବାଟ ଧରିଲେ ଚଳିବ କିପରି ? ଆଗେ ବୋହୂମାନେ କଣରେ ଥିଲେ, ଚୁ ଚ୍ୟୁଁ କରି କଥା କହୁଥିଲେ ତାଙ୍କ ରୂପ ଚନ୍ଦ୍ର ସୂର୍ଯ୍ୟ ଦେଖୁ ନଥିଲେ, ହାଣ୍ଡିଶାଳ ସେମାନଙ୍କର ଏକମାତ୍ର କର୍ମକ୍ଷେତ୍ର ଥିଲା ; ନାକ ସରିକି ଓଢ଼ଣା ପକାଉଥିଲେ, ଦାଣ୍ଡ ମୁଣ୍ଡକୁ ପାଟି ଶୁଭୁ ନ ଥିଲା ; ଏବେ କଣ ଆଉ ସେ କଥା ଅଛି ?

ଏବେ ପାଠ ପଢ଼ିଲେ, ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ, ଓଢ଼ଣା ଗଲା, ହାଣ୍ଡିଶାଳ ଗଲା, ଦାଣ୍ଡ ହାଟରେ ବୁଲିଲେ, ସଭା ସମିତିରେ ପୁରୁଷଙ୍କ ସଙ୍ଗେ ବସିଲେ, ବକ୍ତୃତା ଦେଲେ, ସରକାର ଘରେ ଚାକିରି କଲେ, ଓକିଲ ବାରିଷ୍ଟର ହେଲେ, ହୋଟେଲ ବା ସାଧାରଣ ଭୋଜନାଳୟରେ ଖାଇଲେ; ଝିଅ ପୁଅ ଏକାଠି ବସି ପାଠ ପଢ଼ିଲେ, ନାନାପ୍ରକାର ପୋଷାକ ପିନ୍ଧିଲେ, ଏପରି ଅବସ୍ଥାରେ ଶାଶୁଭୟ ଏତେ ହେଲେ ଚଳିବ କିପରି ?

ସ୍ତ୍ରୀ—ହଁ, ହେ, ସେହି କଥା ତ ଦେଖୁଛୁ । ଶାମ ମହାପାତ୍ରଙ୍କ ଘରକୁ ଗୋଟିଏ ବୋହୂ ଆସିଛି ସେ କୁଆଡ଼େ ଏମ୍. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛି ବୋଲି କହୁଛନ୍ତି । ସେ ବୋହୂକୁ ଶାଶୁଙ୍କ ଗୋଡ଼ ମୋଡ଼ିଦେବା ପାଇଁ କହିବାରୁ ସେ କୁଆଡ଼େ ଇଂରେଜିରେ ବକିଲା, କହିଲା ତା ହାତ ମଇଳା ହୋଇଯିବ, ସେ ଘଷିଦେଇ ପାରିବ ନାହିଁ । ଶାଶୁ ତଳେ ବସିଥିବ ସେ ଝୁଲା ଚଉକିରେ ବସି ଝୁଲୁଥିବ ; ଶ୍ୱଶୁରେ ଘରକୁ ଗଲେ ଚଉକିରେ ବସିବ । ଆପଣା ଅଇଁଠା ବାସନ ଧୋଇବ ନାହିଁ । ଶାଶୁ ଖୁଣିବାରୁ ସବୁବେଳେ କଳି କଜିଆ ଲାଗୁଛି ।

ସ୍ୱାମୀ—କଜିଆ ନ ଲାଗି ଆଉ କଣ ହୁଅନ୍ତା ? ପାଠୋଇ ବୋହୂ ଯେ ଘରକୁ ଆସିବ ସେ ତା ପାଇଁ ସେହିପରି ବନ୍ଦୋବସ୍ତ କରିବ, ତା ମାନମର୍ଯ୍ୟାଦାକୁ ଚାହିଁ ତା ପାଇଁ ବନ୍ଦୋବସ୍ତ କରିବ । ତା ସଙ୍ଗେ ସେହିପରି ଚଳିବ । ଆମେ ସଖି ଆପଣା ମହତ ଆପେ ରଖି । ବୋହୂ ମାନିଲେ କି ନାହିଁ ଏ କଥା ପାଇଁ ସବୁବେଳେ ବ୍ୟସ୍ତ ନ ହୋଇ ନିଜ ମହତ୍ତ୍ୱ ଯିବ କି ରହିବ ଏ କଥାକୁ ନଜର ଦେବା ଆବଶ୍ୟକ । ଯେତିକି କହିଲେ କଥା ରହିବ ବୋହୂ ଆଗ୍ରହରେ ଶୁଣିବ ମାନିବ ସେତିକି ମାପି ଚୁପି କହିବ । ଏତ

କଳିକାଳ । ମହାପୁରୁଷମାନେ କହିଛନ୍ତି ଏ କାଳରେ ବାପକୁ ପୁଅ ମାନିବ ନାହିଁ, ଶାଶୂକୁ ବୋହୂ ମାନିବ ନାହିଁ । ନୀଚ ଲୋକେ ଉଚ୍ଚ ହେବେ ; ଉଚ୍ଚ ଲୋକେ ନୀଚ ହେବେ । ଏହିପରି ନାନା ଅମାନ୍ତି କଥା ହେବ । ଏ କାଳକୁ ସବୁ ଦେଖାଯାଉଛି । ଆହୁରି କେତେ ଦେଖାଯିବ । ଦେଶ କାଳ ପାତ୍ର ବିବେଚନା କରି କଥା କହିବ । ଖା, ଭୁଞ୍ଜ, ଗିଳ ଏ ତିନି କଥାର ଅର୍ଥ ଏକ ; ମାତ୍ର ବ୍ୟବହାରରେ ପ୍ରଭେଦ ଅଛି । କଥା କହି ଜାଣିଲେ ସୁନ୍ଦର ; ବାଳ ବାନ୍ଧି ଜାଣିଲେ ସୁନ୍ଦର । କଥାରେ ମଣିଷ ମଣିଷକୁ କିଣିପାରେ ; ଏହି କଥାରେ ପୁଣି ମଣିଷର ମଣିଷ ଶତ୍ରୁ ହୁଏ । ବିନମ୍ର ମଧୁର ବଚନ ଲୋକକୁ କିଣି ନିଏ । କ୍ରୋଧ ଅହଂକାର ପରବଶ ହୋଇ କଡ଼ା କଥା କହିଲେ ମଣିଷର ଶତ୍ରୁ ହୁଏ । ବାବା ଆସ ଅନ୍ନ ଭୁଞ୍ଜିବ ; ହଇରେ ଖାଇବୁ ଆସୁ ନାହୁଁ ; ଆରେ ଗିଳିବୁ ଯେବେ ଆସୁ ନାହୁଁ । କେଉଁ କଥାଟା କାନକୁ କିପରି ଶୁଭୁଛି କହିଲ ?

ସ୍ତ୍ରୀ—ପ୍ରଥମ କଥାଟି ଭଲ ଲାଗୁଛି । ଅନ୍ୟ ଦୁଇପ୍ରକାର କଥା କଡ଼ା ଶୁଭୁଛି । ପ୍ରଥମ କଥା ଶୁଣିଲେ ଖୁସି ଲାଗିବ ; ଅନ୍ୟ ଦୁଇଟି କଥାରେ ବିରକ୍ତି ଆସିବ ।

ସ୍ୱାମୀ—ତିନିକଥା କହିବାରେ କିଛି ପଇସା ଖର୍ଚ୍ଚ ହୁଏ କି ?

ସ୍ତ୍ରୀ—ନା ।

ସ୍ୱାମୀ—ତେବେ ମଣିଷ ମଧୁର ବଚନ ନ କହି କଡ଼ା କଥା କହିବ କାହିଁ ? ଜଣେ ଜଣକ ମନରେ କଷ୍ଟ ଦେବ କାହିଁ ? ଏହି କଡ଼ା କଥା କହି ଲୋକ ସମୟରେ ମିତ୍ରକୁ ଶତ୍ରୁ କରେ । ଶତ ଶତ ଅକାରଣ

ବିଶେଷ ହୁଅନ୍ତି । ଜଣେ ଜଣେ ଅଛନ୍ତି ତାଙ୍କ ପ୍ରକୃତି ଚକୁଳିର ଵନ୍ଧ ଗଣିବା । ଚକୁଳି ପିଠା କରି ପାରିବେ ନାହିଁ, କିନ୍ତୁ ଆଉ ଜଣେ ଚକୁଳି କଲେ ତାର ମନ୍ଦ ଗୁଣ ବାଛି ବସିବେ । ଏଇଟା ହେଲି ନାହିଁ, ସେଇଟା ହେଲି ନାହିଁ, ଏଇଟା ଏପରି ହୋଇଥାନ୍ତା,ସେଇଟା ସେପରି ହୋଇଥାନ୍ତା ଏହିପରି ଛିଦ୍ର ଖୋଜି ବୁଲନ୍ତି । ଏ ଶ୍ରେଣୀର ଲୋକଙ୍କର ପ୍ରକୃତି ମାଛି ସଙ୍ଗେ ସମାନ; ସେମାନେ ଖାଲି ବ୍ରଣ ଖୋଜି ବୁଲନ୍ତି । କାର୍ଯ୍ୟ ଶେଷରେ ଖୁଣିବା ହେଉଛି ତାଙ୍କ କାମ । କାମ କରିବେ ନାହିଁ କରାଇବେ ନାହିଁ, ଅନ୍ୟ କେହି କଲେ ବା କରାଇଲେ ତାର ଦୋଷ ବାଛିବା ହେଉଛି ତାଙ୍କ ପ୍ରକୃତି । ସବୁବେଳେ ଖିଟି ଖିଟିଆ ସ୍ୱଭାବ; ପରନିନ୍ଦୁକ; ଆପଣାକୁ ଅତି ଦକ୍ଷ ବୋଲି କେବଳ ମନେ କରନ୍ତି, ହିଂସ୍ରିକିଆ ସ୍ୱଭାବ, କାହା କାମ କଥା ତାଙ୍କ ମନକୁ ଆସେ ନାହିଁ; ସବୁବେଳେ ମନେ କରନ୍ତି ତାଙ୍କୁ କେହି ଖାତିର କରୁ ନାହାନ୍ତି, ସବୁବେଳେ କହି ବୁଲନ୍ତି ଆମେ କଅଣ କହିବା; ଆମ କଥା କିଏ ଶୁଣିବ; ଏହିପରି ଉହୁଳ ବିକଳ ହୋଇ ଦିନ ନେଉଥାନ୍ତି, କିନ୍ତୁ କଡ଼ାକର କାମ ତାଙ୍କ ହାତରେ ହୁଏ ନାହିଁ । ସଂସାରରେ କେତେ ପ୍ରକୃତିର ଲୋକ ଅଛନ୍ତି । ସବୁରି ପ୍ରକୃତି ସମାନ ନୁହେଁ । ଗୋଟିଏ ପରିବାର ମଧ୍ୟରେ ସମସ୍ତଙ୍କ ପ୍ରକୃତି ସମାନ ନୁହେ । ଯେ ମୁରବି ହେବ ସେ ସମଭାବରେ ସମସ୍ତଙ୍କୁ ଦେଖିଲେ କିଛି ଗଣ୍ଡଗୋଳ ହେବ ନାହିଁ । ନଚେତ ଟିକିଏ ଏ ପାଖ ସେ ପାଖ ହେଲେ ଘୋର ସମର ଆରମ୍ଭ ହେବ ।

ସ୍ତ୍ରୀ—ସଂସାରଟା ବଡ଼ ଜଟିଳ, କିଏ ଏତେ ତୁଣ୍ଡ ମୁଣ୍ଡମାରି ରହିବ, ଦାନ୍ତ ଚିପି କଥା କହି, ରାଗ ରୋଷ ହେଲେ ତୁଣ୍ଡ କଣ ସମ୍ଭାଳି ହୁଏ ?

ସ୍ୱାମୀ—ଆଜ୍ଞେ, ତୁଣ୍ଡ ମୁଣ୍ଡ ନ ସମ୍ଭାଳିଲେ ଚଳିବ କିପରି ? ଆପଣା ସ୍ୱଭାବକୁ ଆପେ ସମ୍ଭାଳି ନ ପାରିଲେ ନାନା ପ୍ରକାର ଅଶାନ୍ତି ଭୋଗିବାକୁ ପଡ଼ିବ । ଲୋକେ ଅଛନ୍ତି କଣ୍ଟା ବାଡ଼ରେ ଲୁଗା ପକାଇ କଳି କରିବେ । ଗୁଳକୁ ବାଡ଼କୁ ଅନାଇ କଳି କରିବେ । କଳି କରିବାକୁ ସାଥି ନ ମିଳିଲେ ଗୁଳ ବାଡ଼ ବିଲେଇ କୁକୁରଙ୍କ ସଙ୍ଗେ କଳି କରିବେ । ଦେଖିଛୁ ଜଣେ ଜଣେ ଫୁଲ ଚୋକ୍ରୁ ଚୋକ୍ରୁ ଫୁଲ ସଙ୍ଗେ କଳି କରନ୍ତି । କିଏ କଣ ମୋ ନାଁରେ କହୁଛି ବୋଲି ସନ୍ଦେହ କରି ତା କାରି ପଦାରେ ଓଳି ତଳେ ଯାଇ କାନ ପାରି ଶୁଣନ୍ତି, ପୁଣି କଳି ଆରମ୍ଭ କରନ୍ତି ।

ସ୍ତ୍ରୀ—ହଁ ସେପରି ଲୋକେ ଅଛନ୍ତି । ସେ କାହିଁକି ସେପରି କରନ୍ତି ?

ସ୍ୱାମୀ—ତାଙ୍କର ସେପରି ସ୍ୱଭାବ । ଆଉ ଗୋଟିଏ କଥା ଅଛି ଖାଲି ମୁଣ୍ଡରେ ଭୂତ ବସା କରେ । ମଣିଷ ଯେବେ କାମ କାର୍ଯ୍ୟରେ ଲାଗିଥିବ ତେବେ ଅନ୍ୟ କଥା ପାଇଁ ତାକୁ ବେଳ ମିଳେ ନାହିଁ । ଯେବେ କିଛି କାମ ନ ଥିବ, ଖାଇ ପିଇ ଖାଲି ବସି କାଳ କଟାଏ ତେବେ ତାର ବାର ପରଚିନ୍ତା, ପରକଥା ମୁଣ୍ଡରେ ପଶେ । ଏ ପ୍ରବୃତ୍ତିକୁ ଭୂତ କହନ୍ତି । ମାଇପଙ୍କର ତ ଆମ ଦେଶରେ ବେଶି କାମ ନ ଥାଏ, ତେଣୁ ପୋଖରୀପାଣି ଗଲାବେଳେ, ଗାଧୋଇଲା ବେଳେ, ବସିଲା ବେଳେ ଭୂତ ମାଡ଼ ବସେ । ତେଣୁ କହନ୍ତି କାମ କଲେ, ରାମ ନାମ ଜପ କଲେ ଖରାପ କଥା ମୁଣ୍ଡରେ ପଶେ ନାହିଁ; ମନ ଭଲ ଦିଗକୁ ଗୁଳିଯାଏ । ସେଥିପାଇଁ କହନ୍ତି ସାଧୁସଙ୍ଗ, ସତ୍‌ଶାସ୍ତ୍ର ପଠନ କଲେ ଲୋକର ସ୍ୱଭାବ ବଦଳି ଯାଏ । ମନୁଷ୍ୟ ସଂସାରରେ କେତେଦିନ ବା ବଞ୍ଚିବ । ଏଥିପାଇଁ କାହା

ସଙ୍ଗେ ଅପ୍ରୀତିଭାଜନ ହୋଇ ରହିବା ଉଚିତ ନୁହେଁ । ସଂସାରରେ ଭଲ ମନ୍ଦ ବୋଲି ଦୁଇଟା କଥା ଅଛି । "ପ୍ରାଣୀର ଭଲ ମନ୍ଦ ବାଣୀ, ମରଣ କାଳେ ତାହା ଜାଣି ।" ଆଜି ଅରେ ସେ କଥା କହିଥିଲି ।

ସ୍ତ୍ରୀ—ଲୋକ ତ ମରିଯିବ ଭଲ ମନ୍ଦ କଥା କିପରି ଜଣା ପଡ଼ିବ ମ ?

ସ୍ୱାମୀ—ଜଣେ ଗ୍ରାମ ଭିତରେ ମରିଯିବା ଖବର ହେବାରୁ ଆଜି ଜଣେ ତା ପୁଅକୁ କହିଲା ଯିବୁଟି ଦେଖି ଆସିବୁ ସେ ଲୋକ ସ୍ୱର୍ଗକୁ ଗଲା କି ନର୍କକୁ ଗଲା ?

ସ୍ତ୍ରୀ—ପୁଅ କିପରି ଦେଖିବ ମ ?

ସ୍ୱାମୀ—ପୁଅ ଗଲା ଦାଣ୍ଡରେ ବୁଲିଆସି ବାପାକୁ କହିଲା--ବାପା, ମୁଁ କିଛି ଦେଖି ପାରିଲି ନାହିଁ, ତାକୁ ତ କୋକେଇରେ ମଶାଣିକି ନେଲେ । ବାପା କହିଲେ—ଆରେ ସେ କଥା ତ ସତ; ମାତ୍ର ଲୋକେ ତା ମରିଯିବା ଖବର ଶୁଣି କଥାବାର୍ତ୍ତା ହେଉଛନ୍ତି । ପୁଅ କହିଲା—ବାପା ଲୋକେ କହୁଛନ୍ତି ମଲା ; ଗାଁରୁ ଗୋଟିଏ କଣ୍ଟା ଗଲା । ବାପା କହିଲେ ତେବେ ତ ସେ ନର୍କକୁ ଗଲା । ଲୋକେ ଯେବେ କହୁଥାନ୍ତେ ଆହା ସେ ମରିଗଲା ଆଛା ଭଲ ମଣିଷ ଥିଲା । ତେବେ ଜାଣନ୍ତୁ ସେ ସ୍ୱର୍ଗକୁ ଗଲା । ସବୁବେଳେ ଚେଷ୍ଟା କରିବ ଯେପରି ଲୋକେ ତମକୁ ଖରାପ ମାଇପିଟାଏ ବା ମରଦୁଟାଏ ବୋଲି ନ କହନ୍ତୁ । ଏତିକି ଯାହାର ଲକ୍ଷ୍ୟ ଥିବ ସେ ଅବଶ୍ୟ ଭଲ ମନୁଷ୍ୟ ହେବ । ସଂସାରରୁ ତ କେହି କିଛି ମୁଣ୍ଡାଇ ନିଏ ନାହିଁ । ଆସି ଥାଏ ଲଙ୍ଗଳା ଯାଏ ଲଙ୍ଗଳା । ଏଥିପାଇଁ ପାଞ୍ଚ ଜଣଙ୍କ ସଙ୍ଗେ ଅପଡ଼ ହେବ, ପାଞ୍ଚଜଣଙ୍କର ଅନିଷ୍ଟ କରିବ,

ଶେଷରେ ମନ୍ଦ କଣ୍ଠ ଗଲା ବୋଲି ଶୁଣିବ କିଏଁ ? ତେଣୁ କହୁଛି, ଅମୃତ ମଧୁର ବଚନ, କହି ତୋଷିବ ପ୍ରାଣୀ ମନ । ଏ କଥା ସର୍ବଦା ମନେ ରଖିଥିବ । ଆଜି ଏତିକି ।

—(ଃ୦ଃ)—

## ୨୫ଶ ପରିଚ୍ଛେଦ

## ଯୁଦ୍ଧ

ସ୍ତ୍ରୀ—ହଇହେ; ଏବେ ଏ କେତେବର୍ଷ ହେଲା ଖବର କାଗଜରେ ଯୁଦ୍ଧ ଖବର ବାହାରୁଛି । ପୁରାଣରେ ରାମାୟଣ ମହାଭାରତ କଥା ପଢ଼ିଥିଲି, ଏବେ ପୁଣି କାହିଁକି ଯୁଦ୍ଧ ଲାଗିଛି ମ ?

ସ୍ୱାମୀ—ଆହେ, ଯୁଦ୍ଧ କଣ କେତେବେଳେ ବନ୍ଦ ଅଛି ? ଯୁଦ୍ଧ ତ ଅହରହ ଲାଗି ରହିଛି । ଆପଣା ଶରୀର ମଧ୍ୟରେ ଘ୨୪ଣ୍ଟା ଯୁଦ୍ଧ ଲାଗିଛି । ଏ ଯୁଦ୍ଧ ନାମ ପ୍ରବୃତ୍ତି ନିବୃତ୍ତି ସମର । ମଣିଷଠାରେ ଭଲ ଗୁଣ ଅଛି, ମନ୍ଦଗୁଣ ଅଛି । କେତେବେଳେ ଭଲ ଗୁଣ ପ୍ରବଳ ହୋଇ ମନ୍ଦ ଗୁଣକୁ ଦବାଇ ଦେଉଛି । କେତେବେଳେ ମନ୍ଦ ଗୁଣ ପ୍ରବଳ ହୋଇ ଭଲ ଗୁଣକୁ ଦବାଇ ଦେଉଛି । ଯୁଦ୍ଧଟା ପ୍ରବଳ ଦୁର୍ବଳ ମଧ୍ୟରେ ଯେ ଯାହାକୁ ଦୁର୍ବଳ ବୋଲି ମନେ କଲା ସେ ତାକୁ ମାଡ଼ି ବସିଲା । ଖାଦ୍ୟ ନେଇ ତ ସବୁବେଳେ ଯୁଦ୍ଧ ଲାଗିଛି । ଯେ ଯାହାକୁ ଦୁର୍ବଳ ବୋଲି ମନେ କରୁଛି ସେ ତାକୁ ଗୋଡ଼ାଇ ଧରି ମାରି ଖାଇ ଦେଉଛି । ଏ ଯୁଦ୍ଧର ବିରାମ ନାହିଁ । ସବୁ ପ୍ରାଣୀଙ୍କ ମଧ୍ୟରେ ଏ ଯୁଦ୍ଧ ଲାଗିଛି । ଲୋକ ସମାଜ ମଧ୍ୟରେ ତ ସବୁବେଳେ ଯୁଦ୍ଧ ଲାଗିଛି । କିଏ କାହା ଜମି ଖଣ୍ଡେ ନେଇଗଲା, କିଏ କାହା ହାଡ଼ ହାଣି ଦେଲା, କିଏ କାହା ଚାଳ ଉପାଡ଼ି ନେଲା

ଇତ୍ୟାଦି ହରେକ ପ୍ରକାର ଗଣ୍ଡଗୋଳ, କଳି ଝଗଡ଼ା, ମାରପିଟ ଦିନାମଦି ଲାଗି ରହିଛି । ଏଗୁଡ଼ା ଗୋଟିଏ ଗୋଟିଏ କ୍ଷୁଦ୍ର ସମର । ପ୍ରଜାଜଗତରେ ବ୍ୟକ୍ତିଭାବରେ ଏ ଲଢ଼େଇ ଚାଲିଛି । ସେହିପରି ରଜା ମଧ୍ୟରେ ଦେଶ ଦେଶ ମଧ୍ୟରେ ଲଢେଇ ହେଉଛି । ଯେଉଁ ରଜା ମନେ କଲା ସେ ବଳୁଆ ସେ ଅନ୍ୟ ରଜାକୁ ମାରି ତା ରାଜ୍ୟ ଖଣ୍ଡିକ ନେବା ପାଇଁ କମର କଷି ସମର କରୁଛନ୍ତି । ଯୁଦ୍ଧ ଅର୍ଥ ସଂଘର୍ଷ । ଏକ ଶକ୍ତି ସଙ୍ଗେ ଅନ୍ୟ ଶକ୍ତିର ଘଷାଘଷି ହେଲେ ତାକୁ ସମର କୁହାଯାଏ । ଯୁଦ୍ଧ ମୂଳରେ ସ୍ୱାର୍ଥ । ରାମାୟଣ ଯୁଦ୍ଧ ମୂଳରେ କଣ ଥିଲା ? ରାବଣର ସୀତାହରଣ ରାମ ରାବଣଯୁଦ୍ଧର ମୂଳହେତୁ । ଭାଇ ଭାଗ ନ ଦେବା କୁରୁପାଣ୍ଡବ ଯୁଦ୍ଧର ମୂଳ ହେତୁ । ସାମାନ୍ୟ ସାମାନ୍ୟ କାରଣରୁ ଘୋର ବିଷମୟ ଫଳ ଫଳେ, ଲୋକକ୍ଷୟ ହୁଏ, ରାଜ୍ୟ ଭ୍ରଷ୍ଟ ହୁଏ ।

ସ୍ତ୍ରୀ—ଯୁଦ୍ଧ ନ କଲେ କଣ ଚଳି ନ ଆନ୍ତା ? ରାବଣ ସୀତାଙ୍କୁ ଫେରାଇ ନ ଦେଲେ କାହିଁକି ? ଦୁର୍ଯ୍ୟୋଧନ ଭାଇ ଭାଗ ନ ଦେଲା କିଆଁ ? କେହି କଣ ଏ କଥା ବୁଝାଇ ଦେଇ ପାରିଲେ ନାହିଁ ?

ସ୍ୱାମୀ—ତୁମେ ଥିଲେ ଅବା ବୁଝାଇ ଦେଇପାରିଥାନ୍ତ ! ନିଜେ ଭଗବାନ ତ ପାରିଲେ ନାହିଁ, ତୁମ ମୋ କଥା କଣ ? ଭଗବାନ ଶ୍ରୀକୃଷ୍ଣ ଭଲ ଲୋକ ହୋଇଗଲେ, ଶେଷକୁ କୁରୁସଭାରେ ମାଡ଼ ଖାଇଲେ । ରାବଣକୁ ଯେତେ ବୁଝାଇଲେ ସେ ବୁଝିଲା ନାହିଁ । ଯାହାର ଯେମନ୍ତ ସ୍ୱଭାବ, ଗୁରୁ ବଚନେ କିସ ହେବ । ସମସ୍ତଙ୍କ ଗୁଣ ତ ସମାନ ନୁହେଁ । ଏହା ପୃଥିବୀର ବୈଚିତ୍ର୍ୟ । ସୁତରାଂ ଯୁଦ୍ଧ ଅନିବାର୍ଯ୍ୟ । କେବଳ ସଂଯମ ଦ୍ୱାରା ପୃଥିବୀରେ ଶାନ୍ତି ସ୍ଥାପିତ ହୋଇ ପାରେ । ତ୍ରିଗୁଣ ଥିବାଯାକେ ସମରର ବିରାମ ନାହିଁ । ମନୁଷ୍ୟ

ସବୁବେଳେ ସମର ପାଇଁ ପ୍ରସ୍ତୁତ ଥିବ ; ମାତ୍ର ସଂଯମ ବଳରେ ତହିଁର ନ୍ୟୂନାଧିକ ହୋଇପାରେ । ଯେତେବେଳେ ମନୁଷ୍ୟ ମନରେ ଧର୍ମଭାବ ବଢ଼ିବ, ସମଦର୍ଶୀଭାବ ବଢ଼ିବ, ପ୍ରତ୍ୟେକ ଲୋକ ପ୍ରତ୍ୟେକ ଲୋକଙ୍କୁ ଆପଣାର କୁଟୁମ୍ବ ବୋଲି ମନେ କରିବ; ଯେତେବେଳେ ମାନବ ସମାଜ ସଂଯତ ହେବ; ଲୋଭର ମାତ୍ରା କମିବ; କ୍ରୋଧ, ହିଂସା, ଈର୍ଷା, ଅହଙ୍କାର କମିବ, ତେତେବେଳେ ସାମରିକ ଶକ୍ତି ସଂଯତ ହେବ ସିନା ! କେବଳ ବକ୍ତୃତାରେ ଏକଥା ହୋଇପାରିବ ନାହିଁ । ଦୁର୍ଯୋଧନକୁ ଭଗବାନ ଶ୍ରୀକୃଷ୍ଣ ତ ବୁଝାଇ ପାରିଲେ ନାହିଁ, ଆଉ କିଏ ବୁଝାଇ ପାରିବ । ରାବଣକୁ କେତେ ଲୋକ ବୁଝାଇଥିଲେ ; ନିଜେ ତା ଭାଇ ବିଭୀଷଣ କହିଲା, ସ୍ତ୍ରୀ ମନ୍ଦୋଦରୀ କହିଲା, ତେବେ ତ ସେ ମାନିଲା ନାହିଁ ।

ସ୍ତ୍ରୀ—ଆଚ୍ଛା, ଗାନ୍ଧୀ ତ ଏବେ କେହି ଯୁଦ୍ଧ କରନାହିଁ ବୋଲି କହୁଛନ୍ତି, କେହି କଣ ଶୁଣୁନାହାନ୍ତି ?

ସ୍ୱାମୀ—ଗାନ୍ଧୀ କହୁଛନ୍ତି, ଯୁଦ୍ଧ ଚାଲିଛି ; ତାଙ୍କ କଥାକୁ କେହି କାନ ଦେଉନାହାନ୍ତି । ଯେଉଁମାନେ ଐଶ୍ୱର୍ଯ୍ୟ ମଦରେ ମତ୍ତ ହୋଇ ଧରାକୁ ସରା ମନେ କରୁଛନ୍ତି ସେମାନେ ଗାନ୍ଧିଙ୍କ କଥା ଶୁଣିବେ କାହିଁକି ? ଯେଉଁମାନେ ପଶୁବଳରେ ବଳୀୟାନ ହୋଇ ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତ୍ରିପୁରକୁ ପାଦରେ ମର୍ଦ୍ଦନ କରିବାକୁ ବାହାରିଛନ୍ତି ତାଙ୍କୁ ଗାନ୍ଧୀଙ୍କ କଥା ସୁଖଲାଗିବ କିଆଁ ? ଯେଉଁମାନେ କୋଟି କୋଟି ଲୋକଙ୍କୁ ମାରଣାସ୍ତ୍ର ଦ୍ୱାରା ପୋକ ମାଛି ପରି ମାରି ପକାଉଛନ୍ତି; ତଳେ ହେଲେ ମନରେ କୁଣ୍ଠା ବୋଧ କରୁନାହାନ୍ତି ମଣିଷକୁ ମାରିବା ମରାଇବାପାଇଁ ଯେଉଁମାନେ ପୌରୁଷ ବୋଲି ମନେ କରୁଛନ୍ତି ; ନୂତନ ନୂତନ ମାରଣାସ୍ତ୍ର ପ୍ରସ୍ତୁତ କରି ମଣିଷ

ମାରିବା ପାଇଁ ଯେଉଁମାନେ ଦିବାନିଶି ଚିନ୍ତା କରୁଛନ୍ତି ସେମାନେ ଗାନ୍ଧୀଙ୍କ ଅହିଂସା କଥାକୁ ପସନ୍ଦ କରିବେ କାହିଁ ? ଏମାନଙ୍କର କଣ ଆୟୁଧ ଅଛି ? ଏମାନେ ବର୍ତ୍ତମାନ ମୋହାନ୍ଧ । ମାନବ ସମାଜରେ କୋକୁଆ ଭୟ ଘୋଟିଛି । ଯେ ଷଣ୍ଢ ହୋଇଯିବାର ଗିବେ ; ଯେ ରହିବାର ରହିବେ—'ଯାହା କରିବେ ସାଇଁ ; ତା କାହାର ହାତରେ ନାହିଁ ।'

ସ୍ତ୍ରୀ—ଆଚ୍ଛା ! ହଇହେ ଗାନ୍ଧୀ କହୁଛନ୍ତି ସମସ୍ତେ ଅହିଂସା ବ୍ରତ ଅବଲମ୍ବନ କରନ୍ତୁ । ଏ କଥା କଣ ହୋଇପାରିବ ?

ସ୍ୱାମୀ—ଆହେ ; ଗାନ୍ଧୀ ଏ ଯୁଗର ଜଣେ ମହାପୁରୁଷ । ସେ ଯେତେବେଳେ କହୁଛନ୍ତି ତାଙ୍କ କଥାକୁ କିଏ ଅପସନ୍ଦ କରିବ ? ଆମେ କହିଲେ ଲୋକେ ଆମ କଥାକୁ ହସି ଉଡ଼ାଇ ଦେବେ । ଆଚ୍ଛା, ତେମେ କହିଲ ସବୁ ମନୁଷ୍ୟର ଗୁଣ କଣ ସମାନ ଅଛି ? କେବେ ସମାନ ହୋଇପାରିବ ?

ସ୍ତ୍ରୀ—ଆହେ, ମଣିଷ ଗୋଟିକେ ପ୍ରକୃତି ଗୋଟିଏ, ସମସ୍ତେ ସମାନ ହେବେ କପରି ମ ? ବାପ ଗୁଣ ପୁଅଠାରେ ଦେଖାଯାଉ ନାହିଁ । ମା ଗୁଣ ଝିଅଠାରେ ଦେଖାଯାଉ ନାହିଁ । ପାଞ୍ଚ ଆଙ୍ଗୁଠି ସମାନ ନୁହେଁ । ସବୁ ମଣିଷର ଗୁଣ ସମାନ ହେବ କପରି ? କିଏ ରାଗୀ ; କିଏ ଦୁଷ୍ଟ ; କିଏ ଶାନ୍ତ ; କିଏ ପାଜି ; କିଏ ସଇତାନ ; କିଏ ଦାନୀ ; କିଏ କୃପଣ । ସମସ୍ତେ ସମାନ ହେବା ଅସମ୍ଭବ ବୋଧ ହେଉଛି । କେଉଁ ଯୁଗରେ ସବୁ ମଣିଷଙ୍କର ଗୁଣ ସମାନ ଥିବାର ତ କାହିଁ ଶାସ୍ତ୍ର ପୁରାଣରେ ଶୁଣା ନାହିଁ ?

ସ୍ୱାମୀ—ଆଚ୍ଛା, ଅହିଂସା କଥା କେତେ କାଳରୁ କୁହାଯାଉଛି, କେତେ ଜଣ ମନରୁ ହିଂସାଭାବ ପୂର୍ଣ୍ଣରୂପେ ଦୂର କଲେଣି ଦେଖି ଆପଣା ଗୁଣ୍ଡରେ ହାତ ଦେଇ କହନ୍ତୁ ଦେଖିବା ଦେଖି !

ସ୍ତ୍ରୀ—ନାହିଁ ତ ମୁଁ ଦେଖି ପାରୁନାହିଁ । କାୟମନ ବାକ୍ୟରେ ଅହିଂସା ଯେ ହେବ ସେ ତ ଦେବତା ହୋଇଯିବ । ଗାନ୍ଧୀ ତ ନିଜେ କହୁଛନ୍ତି ସେ ପୂର୍ଣ୍ଣରୂପେ ସାଧନା କରି ପାରି ନାହାନ୍ତି । ଆଉ କାହା କଥା କଣ କହିବା ।

ସ୍ୱାମୀ—ଖାଦ୍ୟରୁ ହିଂସାର ଉତ୍ପତ୍ତି । ଖାଦ୍ୟ ନ ଖାଇଲେ କୌଣସି ପ୍ରାଣୀ ଜୀବନ ଧାରଣ କରି ପାରିବ ନାହିଁ । ଏକ ଜୀବ ଅନ୍ୟ ଜୀବକୁ ଖାଇ ପ୍ରାଣ ଧାରଣ କରୁଛି , ଏକ ଜୀବକୁ ଅନ୍ୟ ଜୀବ ଖାଇଲେ ହିଂସା କଲା । ମନୁଷ୍ୟ ଯେତେବେଳେ କିଛି ନ ଖାଇବ ସେତେବେଳେ ତା ମନରୁ ହିଂସା ପ୍ରବୃତ୍ତି ଲୋପ ପାଇବ । ଖାଦ୍ୟ ଖାଉଥିବା ଯାକେ ହିଂସା ଥିବ । ତେବେ ସଂଯମ ସାଧନା କଲେ ପରିମାଣ ଊଣା ହୋଇପାରେ । ଛେଳିଟାଏ ନ ମାରି ଶାଗ ମୁଠାଏ ତୋଳି ଆଣି ଖାଇଦେଲେ ଚଳିଯିବ । ଯଦି ବୋଲ କଣ ଶାଗର ଜୀବନ ନାହିଁ ? ଅଛି, ଶାଗ ତ ଜନ୍ମୁଛି ବଢ଼ୁଛି ମରୁଛି । ଏ ତିନଟା ତ ପ୍ରାଣ ଥିବାର ଲକ୍ଷଣ । ଯେଉଁଠି ଏ ତିନଟା ଲକ୍ଷଣ ଦେଖିବ ଜାଣିବ ତାର ପ୍ରାଣ ଅଛି । ସେହିପରି ସାଧନା କଲେ ହିଂସାର ପରିମାଣ ଅନେକାଂଶରେ ଊଣା ହୋଇଯିବ । ଗାନ୍ଧୀ ପ୍ରକାରାନ୍ତରେ ତାହାହିଁ କହୁଛନ୍ତି । ଚରମ ଆଦର୍ଶ ଲୋକଙ୍କ ଆଗରେ ଥୋଇ ଦେଇଛନ୍ତି, ଲୋକ ଚେଷ୍ଟା କରି ଯେତେଦୂର ଉଠିପାରେ ଉଠିବ । ଏହି ଆଶାରେ ସେ ଶିକ୍ଷା ଦେଉଛନ୍ତି । ଆଚ୍ଛା ଏତିକି ଥାଉ ।

———

## ୨୭ଶ ପରିଚ୍ଛେଦ

## ଜିନଷର ଅତ୍ୟଧିକ ମୂଲ୍ୟବୃଦ୍ଧି

ସ୍ତ୍ରୀ—ହଇହେ, ମୁଁ ଆଜ ଘର ଚଳାଇ ପାରିବ ନାହିଁ । ଏ କାଳକୁ ଗୁଆ ସେର ହେଲା ତିନ ଟଙ୍କା, ଚିନି ସେରକୁ ବାର ଅଣା । କିରସିନ ସେର ସାତ ଅଣା, ପାନ କୋଡ଼ାକୁ ତିନ ଚାରି ଅଣା । ଲୁଗା ଯେ ଥିଲା ଗୋଟାକୁ ଆଠଅଣା ଦଶଅଣା ସେ ହେଲା ଅଢ଼େଇ ଟଙ୍କା । ଏବେ କରିବା କଣ ? ଚଳିବା କିପରି ? ତମେ ବେଶୀ ଟଙ୍କା ନ ଦେଲେ ଆଉ ଚଳିବ ନାହିଁ ।

ସ୍ୱାମୀ—ତୁମ୍ଭେମାନେ କଣ ସେ ହିସାବ କିତାବ କିଛି ବୁଝ ? ତମମାନଙ୍କ ହିସାବ ତେଲ ନା ଯା ପେଲ । ଦୁନିଆ ହାଲଚାଲ ସିନା ବୁଝିଲେ ହୁଅନ୍ତା ? ଆହେ, ଜିନିସ ଦର ହୁ ହୁ ବଢ଼ିଯାଉଛି । ଆୟ ତ ଆଉ ବଢ଼ୁନାହିଁ, କମି ଯାଉଛି ।

ସ୍ତ୍ରୀ—ଧାନ ଦର ତ ବହୁତ ବଢ଼ିଗଲାଣି । ଭରଣ ଦଶ ଟଙ୍କା ଥିଲା ; ଏବେ ତ ଭରଣ କୋଡ଼ିଏ ଟଙ୍କା ହେଲାଣି । ଧାନ ବିକିଦେଲେ ଟଙ୍କା ବେଶୀ ମିଳିବ ।

ସ୍ୱାମୀ—ଧାନ ଦର ସିନା ବଢ଼ିଗଲା ଧାନ ଅମଦାନି ତ କମିଗଲା । ଏ ବର୍ଷ ଧାନ ଯାହା ଅମଳ ହେଲା ଗତ ବର୍ଷଠାରୁ ଅଧେ ବା ଅଧିକରୁ ଊଣା । କୋଳଥ ଫସଲ ଗଲା, ନଡ଼ିଆ ଆମଦାନି ଗଲା । ମୁଗ ଗୋଟାଏ ଫସଲ ସେ ତ ଲୋକସାନ ହେଲା । ଆମ୍ବ ଫସଲ ତ ଗଲା । ଏତେ ପ୍ରକାର ଆୟ କମିଗଲା । ସବୁ ମିଶି ସିନା ଚଳି ଯାଉଥିଲା । ନଡ଼ିଆ ଗୋଟାକ ଛ ପଇସା ଢଅଣା ସତ ; କିନ୍ତୁ ଗଛରେ ଫଳ ନାହିଁ ; ଗଛ ତ କାଢ଼ିବାକୁ ନାହିଁ । ଗଲା ବତାସରେ

ସବୁ ବାଢ଼ିଯାଇ ଦିଗୁଣ ହୋଇଅଛି । ଧାନ, ଚାଉଳ, କୋଳଥ, ମୁଗ, ବିରି, ହରଡ଼, ପାନ ପ୍ରଭୃତିର ମୂଲ୍ୟ ଚତୁର୍ଗୁଣ ବଢ଼ିଛି ! ମାତ୍ର ଆମଦାନି ଏତେ ଅଳ୍ପ ଯେ ନିଜ ଘର ଖର୍ଚ୍ଚକୁ ନିଅଣ୍ଟ ; ବଳିଲେ ହିଁନା ବିକିଲେ ବେଶୀ ପଇସା ମିଳନ୍ତା ! ଯାହାର ନିଜ ଘର ଖର୍ଚ୍ଚରୁ ବଳି ଧାନ ଜମାଅଛି ସେ କିଛି ବିକିବ, ପଇସା ବେଶୀ ପାଇବ; ମାତ୍ର ଅନ୍ୟ ଜିନିଷ କିଣିଲେ ଏକା ଫଳ । ଏହି ଆର୍ଥିକ ଦୁର୍ଗତି ସଙ୍କଟରେ ପଡ଼ି ଲୋକେ ଛଟପଟ ହେଉଛନ୍ତି । ବେଳେ ବେଳେ ଭଗବାନଙ୍କୁ ଡାକ ପକାଉଛନ୍ତି । ଏ ତ ଗୋଟାଏ ବିଷମ ସନ୍ଧି ସମୟ ପଡ଼ିଛି । ଏଥିରୁ ଉଦ୍ଧାର ପାଇଲେ ଯାହା ହେବ । ମାଇପେମାନେ ତ ଏକଥା ବୁଝୁନାହାନ୍ତି । କହେ, ଆୟ ଊଣା ହେଲା ବ୍ୟୟ ବଢ଼ିଲା । ଏଥିକି ବୁଝି ଚଳିଲେ ହିଁନା ହେବ । ଆମେ ଯେଉଁ ସାଆନ୍ତିଆ ଢଙ୍ଗରେ ଚଳୁଥିଲେଇଁ ସେହିପରି ଚଳୁଥିବା, ସେଥିରୁ ହାଡ଼େ ଊଣା ହେବ ନାହିଁ ଏ ମତ ଧରିଲେ ତ ଚଳିବ ନାହିଁ । ଯେଉଁ ଆଡ଼କୁ ମେଘ ବର୍ଷିବ ସେ ଆଡ଼କୁ ଛତା ଦେଖାଇବା ଉଚିତ । ଖାଲି ଶାଗ ଭାତ ସମୟରେ ମିଳିବା କଠିନ ହେବ ।

ସ୍ତ୍ରୀ— ମାଇପଙ୍କୁ ଦୋଷ ଦେଉଛ ଯେ ସେମାନେ କଣ କରିବେ ତାଙ୍କୁ ଯେତିକି ଦବ ସେ ଖର୍ଚ୍ଚ କରିବେ । ଯେତିକି ଚୂନାକୁ ସେତିକି ପିଠା କରିଦେବେ ହିଁନା ?

ସ୍ୱାମୀ—ଆହେ, ପିଠା କରିବାରେ ମଧ୍ୟ କାରିଗରି ଅଛି, ସେଥିରେ ମଧ୍ୟ ହିସାବକିତାପ ଅଛି । ସଂସାରରେ ଚଳିବାକୁ ହେଲେ ହିସାବ କିତାପ ନିତାନ୍ତ ଆବଶ୍ୟକ । କି ପୁରୁଷ, କି ସ୍ତ୍ରୀ ଉଭୟ ହିସାବ କିତାପରେ ନ ଚଳିଲେ ଚଳିବ ନାହିଁ । ପିଲାମାନଙ୍କୁ ମୂଳରୁ ହିସାବ କିତାପ ବିଷୟ ଶିକ୍ଷା ଦେବା ଆବଶ୍ୟକ । ସଂସାରର ଯେ

କୌଣସି ବିଷୟ ହେଉ ହିସାବରେ ନ ଚଳିଲେ ସବୁ ବିଭ୍ରାଟ ହେବ । ଏ ସଂସାର ଗୋଟିଏ ହିସାବରେ ଚାଲିଛି । ହିସାବରୁ ବେହିସାବ ହେଲେ ବିଭ୍ରାଟ ହେବ ।

ସ୍ତ୍ରୀ—ଆପେ ଆଣିବ ଆପେ ଖର୍ଚ୍ଚ କରିବ, ରାନ୍ଧିବ ଖାଇବ ଏଥିରେ ଏତେ ହିସାବ କଣ କରିବ ମ ?

ସ୍ୱାମୀ—ଏକଥା ଠିକ୍, କିନ୍ତୁ ଆର୍ଥିକ ବିଭାଗରେ ହିସାବ କିତାପର ଯଥେଷ୍ଟ ଆବଶ୍ୟକତା ଅଛି । ଦର୍ପଣ ନ ଥିଲେ ଯେପରି ଲୋକ ନିଜ ମୁହଁ ନିଜେ ଦେଖିପାରେ ନାହିଁ ସେହିପରି ହିସାବ ନ ଥିଲେ ମଣିଷ ନିଜ ଆର୍ଥିକ ଅବସ୍ଥା ନିଜେ ବୁଝିପାରେ ନାହିଁ । ସଂସାରରେ ଆର୍ଥିକ ପରିସ୍ଥିତି ଅନେକ ଲୋକଙ୍କ ସଙ୍ଗେ ସମ୍ବନ୍ଧ କରାଏ । ଦେବା ନେବା, ନେଣା ଦେଣା, ଏତେ ଲୋକଙ୍କ ସଙ୍ଗେ ହୋଇଥାଏ ଯେ ଲୋକ ସବୁ ମନେ ରଖିପାରେ ନାହିଁ । ହିସାବ ଥିଲେ କୌଣସି ଭ୍ରମ ପ୍ରମାଦର କାରଣ ନ ଥାଏ । ହିସାବ ନ ଥିଲେ ନାନା ଗଣ୍ଡଗୋଳ ହୁଏ । ଦେଖ ଆମ ବ୍ରିଟିଶ ରାଜା ସାତ ସମୁଦ୍ର ତେର ନଈ ଆର ପାରରେ କେଉଁଠି ବସିଛନ୍ତି, କେବଳ ଚାକର ଓ ହିସାବ ଦ୍ୱାରା ଏତେ ବଡ଼ ସାମ୍ରାଜ୍ୟ ଚଳୁଛି । କଡ଼ା ବରକଡ଼ା ହିସାବ ରହୁଛି । ସେ ହିସାବ ଠିକ୍ ଅଛି ନା ଭୁଲ ଅଛି ତାହା ପରୀକ୍ଷା କରିବା ପାଇଁ ହଜାର ହଜାର ଟଙ୍କା ଦରମା ନେଇ ଚାକର ଅଛନ୍ତି । ସେ କଣ ଏପରି ଓଲୁ ଯେ ଏତେ ଖର୍ଚ୍ଚ କରି ଏ ସବୁ କାମ କରୁଛନ୍ତି ?

ସ୍ତ୍ରୀ—ହଁ, ସେ କଥା ସତ ସିନା ଏତେ ବଡ଼ ରାଜ୍ୟର ହିସାବ ରଖୁଛନ୍ତି ଆମର କଣ ଅଛି ମ ? ଘରେ କିଏ ଖାଇଲା ନେଲା ଦେଲା ଏ ଗୁଡ଼ାକର ହିସାବ କାହିଁକି ?

ସ୍ୱାମୀ—ଗୋଟିଏ ବଡ଼ ରାଜ୍ୟ ଚଳାଇବା ଯାହା ଗୋଟିଏ ପରିବାର ଚଳାଇବା ସେଇଆ । ପରିବାରଟି ଗୋଟିଏ ରାଜ୍ୟ । ଶାସନ ମାତ୍ର ସବୁଠାରେ ସମାନ । ହିସାବ ଥିଲେ ଜାଣିପାରିବ କେଉଁ ବାବଦରେ କେତେ ଖର୍ଚ୍ଚ ହେଲା । କେଉଁ ବାବଦରେ ଅଧିକା କେଉଁ ବାଟରେ ଯାଉଛି । ଆମର ଆୟ ହେଲା କେତେ, ଘରକୁ ଜିନଷ ଆସିଲା କେତେ, ଆମେ କେଉଁ ବାଟରେ ଖର୍ଚ୍ଚ କଲେଇଁ କେତେ । କେଉଁଠି ଖର୍ଚ୍ଚ ଊଣା କରିଦେଲେ ଚଳିବ । କେଉଁ ବାଟ ବନ୍ଦ କରିଦେଲେ ଚଳିବ, ଏ କଥା ହିସାବରୁ ଜଣା ପଡ଼ିଯିବ । ହିସାବ ନ ଥିଲେ ତେଲ ନା ଯା ପେଲ । ଅନ୍ଧାର ଘରେ ପଶିଲା ପରି ହେବା । ଏ ସବୁ ନାନା କାରଣରୁ ହିସାବ କିତାପର ମାହାତ୍ମ୍ୟ ସର୍ବବାଦୀସମ୍ମତ ।

ସ୍ତ୍ରୀ—ହଁ ଯାହା କହୁଛ ସତ । ମୁଁ ମନେ କରେ ଏତେ ପରିଶ୍ରମ କରି କିଏ ଏଗୁଡ଼ାକ ଲେଖିବ, ହାତେ ହାତେ କରୁ ଥାଇଁ, କଣ ହାତକୁ ଆଖିକି ଅବିଶ୍ୱାସ କରିବା ?

ସ୍ୱାମୀ—ହାତ କେତେବେଳେ ଲମ୍ବିଯାଏ । ଆଖି କେତେ-ବେଳେ ଭୁଲି ଯାଏ । ଆଖି ସିନା ଦେଖେ, ମନ ମନେ ରଖେ । କିନ୍ତୁ ମନ ଅନେକ କଥା ପାସୋରି ପକାଏ । ବେଶି ଦିନର କଥା ହେଲେ ବିସ୍ମରଣ ହୋଇଯାଏ । ସୁତରାଂ ହାତ ଆଖି ଉପରେ ସବୁବେଳେ ନିର୍ଭର କରି ଯାଇ ନ ପାରେ ! ହିସାବ ଥିଲେ ଶହ ଶହ ହଜାର ହଜାର ବର୍ଷର କଥା ଲେଖାଯାଏ । ଯେତେବେଳେ ଦରକାର ହେବ ତେତେବେଳେ ହିସାବ ଦେଖିଲେ ଜଣା ପଡ଼ିଯିବ । ତେଣୁ ହିସାବ କିତାପକୁ ନିତାନ୍ତ ଅସାର କଥା ବୋଲି ମନେ କରନାହିଁ । ହାତେ ମାପି ଗୃହଖଣ୍ଡେ ଗ୍ଭଲିବା ପାଇଁ ହିସାବ ଆବଶ୍ୟକ ।

ଆମ ଦେଶ ଲୋକେ ହିସାବ ଉପରେ ଯେପରି ନିର୍ଭର ନ କରନ୍ତି ସେହିପରି କରଜ ଜାଲରେ ଛନ୍ଦି ହୋଇ ମରନ୍ତି । ବେହିସାବି ହୋଇ ଲୋକେ ନାନା ଦୁର୍ଦ୍ଦଶା ଭୋଗ କରନ୍ତି । ଗୋଟାଏ କଥା ଦେଖିଲେ ଆମେ ବେହିସାବି ହୋଇ ଲଙ୍ଗଳା ହେଲୁଣି ।

ସ୍ତ୍ରୀ—ବେହିସାବି ହୋଇ ଲଙ୍ଗଳା ହେଲେଁ କିପରି ମ ?

ସ୍ୱାମୀ—ଆହେ, ବର୍ତ୍ତମାନ ଦେଶରେ ଯେଉଁ ବସ୍ତ୍ର ସଙ୍କଟ ପଡ଼ିଛି ଦେଖୁଛ ତ ? ପାଞ୍ଚ ସାତଟଙ୍କା ଦେଲେ ଖଣ୍ଡେ ଲୁଗା ମିଳୁଛି । କେତେ ଟଙ୍କା ଦେଲେ କେତେ ଖଣ୍ଡ ଲୁଗା କେତେଜଣ ପିନ୍ଧିବେ ? ଆମ ଦେଶ ଲୋକେ ଏ ହିସାବ ବୁଝିପାରିବେ ନାହିଁ । ଆମଦେଶରେ କପା ହେଉଥିଲା, ଅରଟ ଥିଲା, ସୂତା କଟା ହୋଇ ଲୁଗା ବୁଣା ହେଉଥିଲା । ବୁଣାଳୀ ସାମାନ୍ୟ ଦାମ୍ ନେଇ ଲୁଗା ବୁଣି ଦେଉଥିଲା, ଜଣା ପଡ଼ୁ ନ ଥିଲା । ଲୋକେ ହୋମଚା ହୋଇ କପାଗୁଡ଼ା ଛାଡ଼ି ଦେଲେ । ଅରଟ ସୂତାକଟା ଛାଡ଼ିଦେଲେ । ବିଦେଶରୁ ବିଦେଶୀ ଲୁଗା ଶସ୍ତାରେ ମିଳିଲାରୁ ଆପଣା ହିସାବ ଆପେ ପାସୋରି ଦେଲେ । ଆମ ଦେଶରୁ କପା ଗଲା, ବିଦେଶରୁ ନାନା ଚିତ୍ର ବିଚିତ୍ର ଲୁଗା ତିଆରି ହୋଇ ଆସି ମଉଜ ଲଗାଇ କଉଡ଼ି ଘୁଣି ନେଲା । ଏବେ ଲୁଗା ଅତ୍ୟଧିକ ମହର୍ଗ ହେବାରୁ ଲୋକଙ୍କର ପୂର୍ବ ହିସାବ ମନେ ପଡ଼ୁଛି । କିଏ ଖଣ୍ଡେ ଖଣ୍ଡେ କପା କରୁଛନ୍ତି, କିଏ ଅରଟ ତାକୁଡ଼ି ଧରି ସୂତା କାଟୁଛନ୍ତି । ଏଥିକିରେ ଯଥେଷ୍ଟ ଉପକାର ଥିଲେ ମଧ୍ୟ ବାହା ବେଳେ ବାଇଗଣ ରୁଆ ନ୍ୟାୟ ପରି ହେଉଛି । ଆଜକୁ ୨୦ ବର୍ଷ ହେବ ଲୋକଙ୍କୁ ଏ ହିସାବ ଚେତାଇ ଦିଆଗଲା, ମାତ୍ର କେତେଣିକି କେହି କାନ ଦେଲେ ନାହିଁ । କିଏ ଥଟ୍ଟା କଲା, କିଏ ଅବହେଳା କଲା ଇତ୍ୟାଦି ଇତ୍ୟାଦି ।

ସ୍ତ୍ରୀ—ହଁ ହେ, ମୁଁ ତ ସୂତା କାଟୁଥିଲି, ଭଲ ସୂତା ହେଉଥିଲା ସରୁ ଲୁଗା ହେଉଥିଲା, ମୁଁ ତ ନିଜେ ଛାଡ଼ିଦେଲି, କହିବି କାହାକୁ ? ଆଜି ପର୍ଯ୍ୟନ୍ତ ହେଉଥିଲେ କେତେ ଲୁଗା ଆମ ଘରେ ହେଉଥାନ୍ତା, ଆମେ କାହିଁକି ବଜାରକୁ ଲୁଗା ପାଇଁ ଯାଇଥାନ୍ତେଇ ।

ସ୍ୱାମୀ—ଏବେ ଦେଖ, ଏବେ ବୁଝ, ଏବେ ହିସାବ କର, ଯେତେବେଳେ ଆମ ଦେଶରେ ଲୁଗା ହେଉଥିଲା ସେ ସମୟରେ ହିସାବ ଖୋଜି ବାହାର କର, ଦେଖ ସେ ହିସାବ ଛାଡ଼ି ଆଜି ଲୋକେ କିପରି ବା'ନେ ପଥ ହେଉଛନ୍ତି । ଏହିପରି ସବୁ ଦିଗକୁ ଦେଖ । ସବୁଆଡ଼ ଫୁଙ୍ଗୁଳା, ସବୁଆଡ଼େ ବେହିସାବ । ପୁଣି ଯେବେ ଲୋକେ ପୂର୍ବ ହିସାବ ବାଟକୁ ଫେରି ନ ଆସନ୍ତି ତେବେ ଲଙ୍ଗଳା ହେବାକୁ ପଡ଼ିବ । ଏ କଥା କଣ ମିଛ ?

ସ୍ତ୍ରୀ—ନାହିଁ ହେ, ଏ କଥା ମିଛ ନୁହେଁ । ତେମେ ତ ଆମକୁ ଲୁଗା ଦେବାକୁ ବଡ଼ ନଅଣ୍ଟିଆ କରି ଦେଉଛ । ଆମେ ଖଣ୍ଡେ ଖଣ୍ଡେ ଲୁଗାରେ ଚଳିବୁ କିପରି ?

ସ୍ୱାମୀ—ଆହେ, ସବୁ ତ ଟଙ୍କା ଉପରେ ନିର୍ଭର କରୁଛି । ଟଙ୍କା ଏତେ ଆସୁଛି କେଉଁଠୁ ? ସବୁ ଜିନିଷର ଭାଉ ବଢ଼ିଲା, ଫସଲ ଆମଦାନି ଊଣା ହେଲା, ରୋଜଗାର ଊଣା ହେଲା । ଏ ସବୁ ହିସାବ କରି ଦେଖ ତେବେ ଜାଣିପାରିବ । ଆଉ ବରାବର ପୂର୍ବ ଶଗଡ଼ ଗଳିରେ ଗଲେ ହେବ କିପରି ? ଯେଉଁ ଅର୍ଥ-ସଙ୍କଟ ପଡ଼ୁଛି ଏଥିରେ ଢେଙ୍ଗା ଲୋକ କାଙ୍ଗାଳ ହୋଇଯିବ । ଘରଲୋକ ସମସ୍ତେ ଜାଗ୍ରତ ଆଉ ନ ହେଲେ ଚଳିହେବ ନାହିଁ । ଆଗୁ ଆଜି ଏତିକି ଥାଉ ।

———

## ୨୨ ଶ ପରିଚ୍ଛେଦ

## କୋଇଲି

ସ୍ତ୍ରୀ—ହଇହେ, ମୁଁ ବୃଦ୍ଧାଳୀରେ ଯେଉଁ କୋଇଲି ଗାଉଥିଲି ସେ ଭାରି ଭଲ ଗୀତ । ସେମିତି ଲେଖା ଆଜି କେହି ଲେଖୁନ୍ତି ? ଭାଷା ବଡ଼ ସରଳ, ଭାବଟି ବଡ଼ ମଧୁର !

ସ୍ୱାମୀ—ସେ କଥା ଆଉ କହିବାକୁ ଅଛି ! ପ୍ରାଚୀନ କବିମାନଙ୍କ ଲେଖାର ତାହାହିଁ ବାହାଦୁରି । ଗୋପାଳକୃଷ୍ଣଙ୍କ ସଙ୍ଗୀତ ପ୍ରଭୃତି ଶୁଣୁ ନାହିଁ, କେଡ଼େ ମଧୁର ଏବଂ କେଡ଼େ ସରଳ । ଆଚ୍ଛା, ମୁଁ ଗୋଟିଏ କୋଇଲି ଲେଖିଛି, ଶୁଣିବ ?

କୋଇଲି କାହୁଁ ଆସୁ କାହିଁ ଲୁଚିଥାଉ
କାହା ସ୍ମୃତି ଗୀତ ମୋଦେ ପଞ୍ଚମରେ ଗାଉ ଲୋ ।୧।
କୁହୁ କୁହୁ କୋମଳ ସଙ୍ଗୀତ
ଜମାଇ ପୁଲକେ ତନୁ କରୁ ବିମୋହିତ ଲୋ ।୨।
କୁହୁସ୍ୱନେ ଅଛି କି ଶକତି
କେଉଁ ଦେବତା ମନାଇ ପାଇଲୁ ବିଭୂତି ଲୋ ।୩।
କେଉଁ ତପ କେବେ ଆଚରିଲୁ
କାହା ବରେ ଏ ଗଳା ଖଣ୍ଡିକ ତୁ ପାଇଲୁ ଲୋ ।୪।
କାହିଁକି ବସନ୍ତ କାଳ ଜଣ୍ଡି
କାହୁଁ ଆସି ତୋ ସ୍ୱନ ଶୁଣାଇ ଯାଉ ଭଣ୍ଡି ଲୋ ।୫।
କୁହୁସ୍ୱନେ ବିଗ ଚମକାଉ
କାହାକୁ ଶୁଣାଉ ଗୀତ ଆଡୁଆଳେ ଥାଉ ଲୋ ।୬।

କାଳିଆ ବରନ ଅସୁନ୍ଦର
କାହିଁକି ରସନ୍ତ ରୂପ ଦେଖ ନାହିଁ ତୋର ଲୋ ।୭।
କେତେ ପକ୍ଷୀ ଅଛନ୍ତି ଜଗତେ
କାମଦେବ ବାନ୍ଧୁ କଥା ଦୂତ କଲେ ତୋତେ ଲୋ ।୮।
କଣ୍ଠରେ ଗୁଣ ଅଛି ଯାର
କରନ୍ତି ଆଦର ଲୋକେ ହେଲେ ଅସୁନ୍ଦର ଲୋ ।୯।
କେତେ କେତେ ପକ୍ଷୀ ତ ଅଛନ୍ତି
କବିମାନେ କଥା ତୋର ଗୁଣ ଗାଉଛନ୍ତି ଲୋ ।୧୦।
କାକ ପୁରେ ବଢ଼ି ଏତେ କାଳ
କଳ ନସ୍ୱନ ଶେଷକୁ ହେଲୁ ତୋର କାଳ ଲୋ ।୧୧।
କଳ ସ୍ୱନ ଚହ୍ଲା ପକାଇଲୁ
କି ବୁଝିବ ଅରସିକ କାକ ଚଞ୍ଚୁ ଦେଲୁ ଲୋ ।୧୨।
କୁହୁ ସ୍ୱନ କରୁ ଘନ ଘନ
କୁହୁକ ଲଗାଇ ଟାଣି ନେଉ ଜନ ମନ ଲୋ ।୧୩।
କୁହୁ ସ୍ୱନ ଅତି ସୁମଧୁର
କି ମୋହନ ମନ୍ତ୍ର ସେ ସ୍ୱନେ ଅଛି ତୋର ଲୋ ।୧୪।
କମନୀୟ କାନ୍ତି ନାହିଁ ତୋର
କଣି ନଏ ଜନମନ କଳ ନାଦ ତୋର ଲୋ ।୧୫।
କଳା କଣ୍ଠ ତନୁ ପାତଳିଆ
କେତେ ସ୍ୱନ ଅଛି ସବୁ ତୋ ପାଆତଳିଆ ଲୋ ।୧୬।
କେଉଁଠାରେ ରଜନୀରେ ଥାଉ
କାକ ନ ବୋବାଉ ଉଠି ଜଗତ ଉଠାଉ ଲୋ ।୧୭।

କୁଞ୍ଜେ କୁଞ୍ଜେ ଗାଉ କୁତୁହଳେ
କୁଞ୍ଜବିହାରୀ କିଶୋରୀ ରାସକ୍ରୀଡ଼ା ବେଳେ ଲୋ ।୧୮।

କୁହୁସ୍ୱନ ବିରହୀର ଅରି
କର୍ଣ୍ଣେ ପଡ଼େ କଳେବର ଉଠୁ ଜ୍ୱାଲି ଥରି ଲୋ ।୨୯।

କି ମଧୁର ଉଠ ଲୋ ଉଠ ଲୋ
କୁମ୍ଭାଟିଆ ତୋ ସହିତ ସ୍ୱର କରେ ମେଳ ଲୋ ।୨୦।

କାମ କ୍ରୀଡ଼ା କନ୍ଦୁକ ସମାନ
କି ପାଞ୍ଚି ବସନ୍ତ ଆଗେ କର ଅନୁମାନ ଲୋ ।୨୧।

କିପରି ତୁ ଜାଣୁ କାଳବେଳ
କାହିଁ ଲୁଚି ଯାଉ ଆସିଲରୁ ଘନକାଳ ଲୋ ।୨୨।

କି ମଧୁର ତୋ ସଙ୍ଗୀତ ସୁଧା
କି ରଙ୍ଗେ ପୁଲକି ଉଠେ ନିଖିଳ ବସୁଧା ଲୋ ।୨୩।

କେଡ଼େ କ୍ଷୁଦ୍ର କେଡେ ଗୁରୁଭାବ
କଣିକାଏ ନାହିଁ ତୋର ମନରେ ଗରବ ଲୋ ।୨୪।

କି ମହତ ଲକ୍ଷ୍ୟ ସାଧୁ ତୁହି
କେଉଁଠି ନିଭୃତ ଲତା ବୃକ୍ଷ ମେଳେ ରହି ଲୋ ।୨୫।

କଳକଣ୍ଠ ନାମ ତୋ ବିହଙ୍ଗ
କି ହେବ ହେଉ ପଛକେ ଅସୁନ୍ଦର ଅଙ୍ଗ ଲୋ ।୨୬।

କି ମଧୁରେ ଗାଉ ତୋ ସଙ୍ଗୀତ
କିନ୍ନର ନର ଗନ୍ଧର୍ବ ସକଳେ ମୋହିତ ଲୋ ।୨୭।

କାଳ ତୋତେ ସହି ନ ପାରଇ
କାଆ କାଆ ରବି ଧାଏଁ ତୋ ପଛେ ଗୋଡ଼ାଇ ଲୋ ।୨୮।

କାଞ୍ଚନ ମୂଲ୍ୟ କି କାଚ ହେବ
କାଆ କୁଉ ଭେଦ ଭାବ କିଏ ନ ବୁଝିବ ଲୋ । ୨୯ ।
କାହିଁକି ତୁ ଲୁଚି ଲୁଚି ଯାଉ
କାହାକୁ ଡରି ତୁ ଘଞ୍ଚ ଗହଳରେ ରହୁ ଲୋ । ୩୦ ।
କେତେ ବ୍ୟାଧ ଧନୁଶର ଧରି
କଣ ବଣେ ବୁଲୁଛନ୍ତି ତୋର ପିଛୁ ଧରି ଲୋ । ୨୧ ।
କଳେ ବଳେ ଦେଖି ପକାଇଲେ
କାଣ୍ଡ ବାନ୍ଧି ଦେବେ ତେଣୁ ଡରି ଲୁଚୁ ଭଲେ ଲୋ । ୩୨
କଣ୍ଠ ତୋର ଜଗତ ମୋହନ
କାଣ୍ଡ ଋଷି ନ ଯିବ କି ଶୁଣିଲେ ତୋ ସ୍ୱନ ଲୋ । ୩୩
ନୃର ବ୍ୟାଧ ଗୁଣ କି ବୁଝିବ
କୁଳଟା ନାୟିକା ଜାଣେ ପତି ପ୍ରେମ ଭାବ ଲୋ । ୩୪ ।
କୋକିଳ ତୋ ଲୁଚିବା ଉଚିତ
କିଏ ଏ ସଂସାରେ ବୁଝେ ଗୁଣର ମହତ୍ତ୍ୱ ଲୋ । ୩୫ ।
କାଳେ କାଳେ ଏ ନିସ୍ୱନ ଶୁଣି
ବନ୍ଧୁ ଭାବେ ଆନନ୍ଦ ଲଭନ୍ତୁ ବିଶ୍ୱପ୍ରାଣୀ ଲୋ । ୩୬ ।



# ୨୯ଶ ପରିଚ୍ଛେଦ

## ବିଶାଳ ଉତ୍କଳ

ସ୍ତ୍ରୀ—ହଇହେ, ଆଗେ ଉତ୍କଳ ସମ୍ମିଳନୀ ହେଉଥିଲା ଦେଶ ମିଶ୍ରଣ ପାଇଁ ସିନା ! ନୂଆ ଓଡ଼ିଶା ପ୍ରଦେଶ ପରା ହେଲା ! ପୁଣି କାହିଁକି ସମ୍ମିଳନୀ ସଭା ହେଉଛି ମ ?

ସ୍ୱାମୀ—ଆହେ, ନୂଆ ଓଡ଼ିଶା ପ୍ରଦେଶ ହେଲା ସିନା ! ସବୁ ଓଡ଼ିଆ ଅଞ୍ଚଳଯାକ ମିଶି ନାହିଁ । ମେଦିନୀପୁର, ସିଂହଭୂମ, ଚକାଟି, ମଞ୍ଜୁଷା ପ୍ରଭୃତି ଆହୁରି ଅନେକ ଗୁଡ଼ାଏ ଅଞ୍ଚଳ ରହି ଯାଇଅଛି ପରା ! ସେଥିପାଇଁ ପୁଣି ସେ ଆନ୍ଦୋଳନ ଲାଗିଛି ।

ସ୍ତ୍ରୀ—ଖାଲି ସଭା କଲେ କଣ ହେବ ମ ? କାମ ହେଲେ ସିନା ହେବ ? ଖାଲି ଗୋପୀଭାଷା ଗାଇଲେ କଣ କୃଷ୍ଣ ଦର୍ଶନ ମିଳିବ ?

ସ୍ୱାମୀ—ଗୋପୀଭାଷା ଗାଉ ଗାଉ କୃଷ୍ଣଙ୍କ ପ୍ରତି ଆଗ୍ରହ ବଢିବ । ଆଗ୍ରହ ବଢ଼ିଲେ ସାଧନ କରୁ କରୁ କୃଷ୍ଣ ଦର୍ଶନ ମିଳିଯିବ । ସେହିପରି ଆଗେ ଏ ସବୁ ଆଲୋଚନା କରୁ କରୁ ସବୁ ଓଡ଼ିଆଙ୍କ ମନରେ ଭାବ ଜାଗ୍ରତ ହେବ । ସମସ୍ତେ ଏକମନ ଏକ ପ୍ରାଣରେ ଲାଗିଲେ ଅବଶ୍ୟ ରହିଯାଇଥିବା ଅଞ୍ଚଳଯାକ ପୁଣି ଯୋଡ଼ା ହେବ । ଘରେ ଘରେ ସ୍ତ୍ରୀ ପୁରୁଷ ସମସ୍ତେ ଏ କଥା ବୁଝିବା ଆବଶ୍ୟକ ।

ସ୍ତ୍ରୀ—ଗୋପୀଭାଷା ପରି ଖଣ୍ଡେ 'ଓଡ଼ିଆ ଭାଷା' ଲେଖି ଦେଉନାହଁ, ସମସ୍ତେ ଘରେ ଘରେ ଗାଇବେ । ସଭା ସମିତିକି କେତେ ଜଣ ଯାଉଛନ୍ତି ? ବଡ଼ବଡ଼ିଆ କେତେଜଣ ଗଲେ, ଶୁଣିଲେ ଆସିଲେ ପୁଣି ନାକରେ ତେଲ ପକାଇ ଶୋଇଲେ । ମୁଁ ତ ଦେଖୁଛି ଅଧିକାଂଶଙ୍କୁ ଏ ବିଷୟ ଆଦୌ ଜଣାନାହିଁ । କେଉଁ ଅଞ୍ଚଳ

ଆସିଲେ କେତେ ନ ଆସିଲେ କେତେ ? କଏ ସେ ହିସାବ ଜାଣୁନାହିଁ କି ଖବର ରଖୁନାହିଁ ।

ସ୍ୱାମୀ—ଆଚ୍ଛା, ହଉ ଖଣ୍ଡେ ଲେଖିଦେବା 'ଓଡ଼ିଆ ଭାଷା' ।

## ଉତ୍କଳ ଜନନୀ—ଭାଷା

ଦେଶ କଥା ଭାଳି ଭାଇ ସକଳ ।
ମେଳା ମଣ୍ଡପେ ହୁଅନ୍ତୁ ବିକଳ ।୧।
କାହୁଁ ଦାରୁଣ ଶାସନ ଆସିଲା ।
ଉତ୍କଳକୁ ଖଣ୍ଡ ଖଣ୍ଡ କାଟିଲା ।୨।
କେଉଁ ପ୍ରଦେଶେ କାହାକୁ ଯୋଡ଼ିଲା ।
ଭିନ୍ନ ଭିନ୍ନ ଥାନେ ନେଇ ରଖିଲା ।୩।
ଏକ ଉତ୍କଳମାତାର ସନ୍ତାନ ।
ଭୋଗ କରେ ଚାରି ପାଞ୍ଚ ଶାସନ ।୪।
ଖଣ୍ଡେ ମାନ୍ଦ୍ରାଜ ପ୍ରଦେଶେ ରହିଲା ।
ଖଣ୍ଡେ ବଙ୍ଗଳା ସଙ୍ଗେ ଯୋଡ଼ା ହେଲା ।୫।
ଖଣ୍ଡେ ମଧ୍ୟପ୍ରଦେଶେ ହେଲା ଯୋଡ଼ା ।
ମିଶି ବିହାରେ ରହିଲାକ ଥୋଡ଼ା ।୬।
ମୁସଲମାନ ଇଂରେଜ ମରହଟ୍ଟା ।
ଶାସନରେ ହେଲା ଏ ହଟହଟା ।୭।
ସୁବିଧାରେ ହେବ କର ଆଦାୟ ।
କଟାକଟି ଯୋଡ଼ାଯୋଡ଼ି ଉପାୟ ।୮।
ବିକଳାଙ୍ଗ ହୋଇ ମାତା ପଡ଼ିଲା ।
କେତେ କାଳ ଏପରି ବିତିଗଲା ।୯।

ଭିନ୍ନ ଭିନ୍ନ ପ୍ରଦେଶରେ ରହିଣ ।
ଭୋଗ କଲେ କେତେ କେତେ କଷଣ ।୧୦।
ଭାଷା ଭାବ ଭଙ୍ଗୀ ଗଲା ବଦଳି ।
ନାନା ବିକୃତି ଭେଦରେ ଉତ୍କଳୀ ।୧୧।
କା'ର ବଙ୍ଗାଳୀ ପରି ଭାବ ଭଙ୍ଗୀ ।
କିଏ ଦିଶଇ ସାକ୍ଷାତ ତେଲଙ୍ଗୀ ।୧୨।
କା'ର ହିନ୍ଦୁସ୍ଥାନୀ ପରି ଆକୃତି ।
ସଙ୍ଗ ଦୋଷେ ଭାଷା ଲଭେ ବିକୃତି ।୧୩।
କେତେ ଦିନ ଅନ୍ତେ କେତେ ସନ୍ତାନ ।
ବୁଝି ପାରିଲେ ଏ ସବୁ କଷଣ ।୧୪।
ସବୁ ଭାଇମାନଙ୍କୁ ଡକାଇଲେ ।
କିସ କରିବା ଉପାୟ ପାଞ୍ଚିଲେ ।୧୫।
ସମ୍ମିଳନୀ ସଭା ତହୁଁ ବସିଲା ।
ସବୁ ଅଞ୍ଚଳ ମିଶୁ ପଣ କଲା ।୧୬।
ସବୁ ଓଡ଼ିଆ ଅଞ୍ଚଳ ମିଶାଇ ।
ଏକ ପ୍ରଦେଶ କର ଡାକେ ଭାଇ ।୧୭।
ଡାକ ଡାକ ଗଲା କେତେ ବରଷ ।
ଏବେ ହୋଇଲା ନୂତନ ପ୍ରଦେଶ ।୧୮।
ହେଲା ପ୍ରଦେଶ ଆଶା ନ ପୂରିଲା ।
କେତେ ଅଞ୍ଚଳ ପୁଣି ରହିଗଲା ।୧୯।
ସେ ଅଞ୍ଚଳଗୁଡ଼ିକ ନ ମିଶିଲେ ।
ଜାତି ଆକାଙ୍କ୍ଷା ନ ପୂରିବ ଭଲେ ।୨୦।
ଗଙ୍ଗାଠାରୁ ଗୋଦାବରୀ ବିଶାଳ ।
ଥିଲା ଶରୀର ଉତ୍କଳ ମାତାର ।୨୧।

ସିଂହଭୂମି ହେଉଅଛି ବ୍ୟାକୁଳ ।
ରହିଗଲା ତ ସେ ମେଦନୀପୁର । ୨୨ ।
ରହି ଯାଇଛି ନିକାଲି, ମଞ୍ଜୁଷା ।
ବୁଢ଼ାସମ୍ବର କରଅଛି ଆଶା । ୨୩ ।
ଏହିପରି ଅଛି ଯେତେ ଅଞ୍ଚଳ ।
ନ ମିଶିଲେ ଦେଶ ହେବ ଦୁର୍ବଳ । ୨୪ ।
ଏ ତ ଜୀବନ ମରଣ ସମସ୍ୟା ।
ଜନନୀ ଯେ ଭୋଗୁଅଛି ଦୁର୍ଦ୍ଦଶା । ୨୫ ।
ଯେତ୍କୁ ଉତ୍କଳୀ ଅଛ ହେ ଯେଉଁଠି ।
ଚେତ ଏ ଦଶା, ହୁଅ ହେ ଏକାଠି । ୨୬ ।
ଏକ ସ୍ୱରେ ଦାବୀ କର ମିଳନ ।
ଧନ ଜନ ଜୀବନ କର ପଣ । ୨୭ ।
ଖାଲି ବଚନ ବୃତ୍ତୁଣିରେ କାର୍ଯ୍ୟ ।
ହେବ ନାହିଁ ନ ହେବ କେବେ ଆର୍ଯ୍ୟ । ୨୮ ।
ସୁମର ହେ ନିଜ ଜାତି କୀର୍ତ୍ତି ।
ମାତୃଭୂମି ସେବାରେ ଯାଅ ମାତି । ୨୯ ।
ନିଜ ଘର ପେଜଟି ମହାସୁଖ ।
ପର ଘରେ ଅମୃତ ପାନ ଦୁଃଖ । ୩୦ ।
ପର ଓଳିତଳରେ ଯେତେ ଦିନ ।
ରହିଥିବ ହୋଇବ ମାନହୀନ । ୩୧ ।
ଯାର ଲେଶମାତ୍ର ଥିବ ଜୀବନ ।
ସେ କି ସହିବ ଏ ଘୋର କଷଣ । ୩୨ ।
ଲଗୁନାହିଁ କି ପରାଣେ ପରଶ ।
ଉଠ ଚଞ୍ଚଳ ଜଡ଼ତା ବିନାଶ । ୩୩ ।

ଅଛ ଯେଉଁଠି ରହିବ ସେଠାରେ ।
ଗାର ଘୁଞ୍ଚିଲେ ମିଶିବ ଉତ୍କଳେ । ୩୪ ।
କଏ ନେଇ ଯାଇ ନାହିଁ ଆସ୍ଥାନ ।
ସୀମାଗାର କରିଛି ଭିନ୍ନ ଭିନ୍ନ । ୩୫ ।
ଗାର ମହିମା ବିଚିତ୍ର ବିଷମ ।
ସୁନା ଉତ୍କଳ ଚୂନା କଲା ଯେମ । ୩୬ ।
ସୀମା ଗାର କଲକ ନାରଖାର ।
ସୁନା ସଂସାର କଲା ଘୁରଖାର । ୩୭ ।
କେହୁ କହେ ବଙ୍ଗଳା କେହି ହିନ୍ଦି ।
କେହୁ ତେଲଙ୍ଗୀ ଭାଷା ଛନ୍ଦାଛନ୍ଦି । ୩୮ ।
ଏଣୁ ପାଞ୍ଚ ସରକାର ଅଧୀନେ ।
ଥାଇ ଚଳୁଛି ଅତି ମାନ ହୀନେ । ୩୯ ।
କେଉଁ ସରକାର ଆଗେ କହିବ ।
କିସ ସବୁରି ଦୁର୍ଗତି ଫେଡ଼ିବ ।୪୦।
ଏକ ପ୍ରଦେଶ ଛତ୍ରତଳେ ଥିଲେ ।
ଦୁଃଖ ଦୁର୍ଗତି ଫେଡ଼ିପାରେ ଭଲେ ।୪୧।
କିଏ ରହିଛି କେଉଁ କୋଣେ ଯାଇ ।
କେହି କା ଦୁଃଖ ସୁଖ ନ ଜାଣଇ ।୪୨।
ବରଷକେ ଥରେ କାଳେ ଅକାଳେ ।
ମୁହଁ ଚୂହାଁ ଚୁହିଁ ନାହିଁ କପାଳେ ।୪୩।
ଏବେ କାଳେ ହେଲା ନୂଆ ଓଡ଼ିଶା ।
ଆସ ସକଳେ କର ଏଠି ବସା ।୪୪।
ଏକ ଘରେ ରହିଲେ ସବୁ ଭାଇ ।
ବଳ ପାଇବ ସବୁ କଥା ପାଇଁ ।୪୫।

ବାପ ଅଜା ଥିଲେ ଖାଣ୍ଟି ଓଡ଼ିଆ ।
ପୁଅ ନାତି ହେଲେ କୁଳ ମୂଳିଆ । ୪୬ ।
କେତେକାଳ ଅପମାନ ସହିବ ।
ଲାଜଭରେ ମୁଣ୍ଡ ପୋତି ଚଳିବ । ୪୭ ।
ସର୍ବେ ମିଳିମିଶି ଦାବୀ ନ କଲେ ।
ଦାବୀ ଦେବ କିବଁ ଭାଇ ବୋଲେ । ୪୮ ।
ଶୁଣିଥିବ ବଙ୍ଗଭାଇ କି କଲେ ।
ବଙ୍ଗ ଅଙ୍ଗ ଛେଦ କଥା ଯେ କାଳେ । ୪୯ ।
ସହି ନ ପାରି ମଣିଲେ ବିପଦ ।
କରି ନ ଦେବା ବଙ୍ଗ ଅଙ୍ଗ ଛେଦ । ୫୦ ।
ଲଗାଇଲେ ତୁମୁଳ ଆନ୍ଦୋଳନ ।
ଗଲା ବଦଳି ସରକାର ମନ । ୫୧ ।
ବଙ୍ଗ ଅଙ୍ଗ ଛେଦ କଥା ନ ହେଲା
ବଙ୍ଗ ଭାଇଙ୍କ ଆପତ୍ତି ଜିଣିଲା । ୫୨ ।
ଆମେ ଧିମାଇ କରୁଛୁ ଗୁହାରି ।
ତେଣୁ ଭୋଗୁଛୁ ଦଶା ଏହିପରି । ୫୩ ।
ଆମ ଆନ୍ଦୋଳନେ ନାହିଁ ଜୀବନ ।
ତେଣୁ ନ ଟଳେ ସରକାର ମନ । ୫୪ ।
ଆହେ ମେଦିନୀପୁର ଭାଇ ଶୁଣ ।
ଧୀରେ ଚିତ୍ତେ ଘେନ ମୋ ନିବେଦନ । ୫୫ ।
ନୁହ ବଙ୍ଗାଳୀ ବଙ୍ଗ ଦେଶବାସୀ ।
ବଙ୍ଗ ପ୍ରଦେଶେ ଅଛ ସିନା ମିଶି । ୫୬ ।
ବଙ୍ଗଭାଷା ଆଗୁରି ବ୍ୟବହାର ।
ମାଡ଼ି ବସିଛି ଭୂତ ପରକାର । ୫୭ ।

ଅଛୁ ଶରୀରେ ଓଡ଼ିଆ ରକତ ।
ବେଳେ ବେଳେ ହେଉଅଛୁ ଜାଗ୍ରତ । ୫୮ ।
ବଙ୍ଗ ଅକ୍ଷରେ ଲେଖି ଭାଗବତ ।
ଗାଅ ଭଣଇ ଦାସ ଜଗନ୍ନାଥ । ୫୯ ।
ବହୁକାଳ ରହି ବଙ୍ଗ ସଙ୍ଗରେ ।
କଥା କହୁଛ ବଙ୍ଗାଳୀ ଢଙ୍ଗରେ । ୬୦।
ଭୁଲିନାହିଁ ଅବଧି ମାତୃଭାଷା
ଅଛୁ ପରାଣେ ଓଡ଼ିଆ ପିପାସା । ୬୧ ।
ମନ ଜାଣୁଛି ଓଡ଼ିଆ ଭିତରେ ।
ବେଶ ସାଜିଛୁ ବଙ୍ଗାଳୀ ବାହାରେ । ୬୨ ।
ଏହିପରି ରହିବ କେତେ କାଳ ।
ମନେ ପଡ଼ୁନାହିଁ କହେ ଉତ୍କଳ । ୬୩ ।
ଜନ୍ମମାଟିକି ଦେବକି ପାସୋରି ।
ଚିରକାଳ କି ଥିବ ଏହିପରି । ୬୪ ।
ବଙ୍ଗ ଜନନୀ ବଡ଼ ଭାଗ୍ୟବନ୍ତି ।
ଅଛି ତାହାର ନାନାଦି ବିଭୂତି । ୬୫ ।
ମାତା ହେଲେହେଁ ଅତି ଦୀନହୀନା ।
ଗତି ପୂର୍ବର ନାହିଁ ତାହା ବିନା । ୬୬ ।
ଅଛି କି ଏ ପାଷାଣ୍ଡ ଏହି ଭବେ ।
ଆନ ମାତା ଖୋଜିବ ଧନ ଲୋଭେ । ୬୭ ।
ହେଲେ ହେଉ ପଛକେ ଅସୁନ୍ଦର ।
ସେହି ଜନନୀ ତାହାକୁ ସୁନ୍ଦର । ୬୮ ।
ନିଜ ଜନନୀ କୋଳ ସ୍ୱର୍ଗ ସୁଖ ।
ହରିନଏ ସକଳ ଶୋକ ଦୁଃଖ । ୬୯ ।

ନୂହଇ କି ଓଡ଼ିଶା ତବ ଘର ।
ଭିନ୍ନ କରିଛନ୍ତି ସିନା ସୀମା ଗାର । ୭୦ ।
ଥିଲ ଯେ କାଳେ ବୋଇତ ବେପାର ।
ତମଲୁକ ଥିଲା ତାର ବନ୍ଦର । ୭୧ ।
ଅଛି ଉପାଧି ଅଛି ଭାଗବତ ।
ଆଉ ଖୋଜୁଛ ଅଧିକ କି ତଥ୍ୟ । ୭୨ ।
ଦେଖ ପ୍ରାଚୀନ ଉତ୍କଳ ମୁକୁରେ ।
କଞ୍ଚା ଓଡ଼ିଆ ନୁହଁ କି ବେଶରେ । ୭୩ ।
ରହିଅଛ ତ ବଙ୍ଗେ ଏତେ ଦିନ ।
ତବ ଭାଷା ପାଇଁକି ନାହିଁ ଥାନ । ୭୪ ।
ରାଜ ଦରବାରେ ପାଠଶାଳାରେ ।
ନାହିଁ ଓଡ଼ିଆ ଭାଷା କେଉଁଠାରେ । ୭୫ ।
ବାଧ୍ୟ ହୋଇ ଶିଖୁଅଛ ବଙ୍ଗଳା ।
ଯେଉଁ ଲଙ୍ଗଳାକୁ ସେହି ଲଙ୍ଗଳା । ୭୬ ।
ହୋଇ ରହିଛ ସଂଖ୍ୟାରେ ନଉନ ।
ରାଜ ଦରବାରେ ନାହିଁ ଆସନ । ୭୭ ।
ଉଚ୍ଛେ ବୋଲି ଶୁଣୁଛ ବାରବାର
ମନ ମାରି ମନେ ରହ ନକର । ୭୮ ।
ନିଜ ଘରେ ସିନା ନିଜେ କେଶରୀ ।
ଆନ ଘରେ ଶୃଗାଳ ସମ ସରି । ୭୯ ।
ହେଲ ଓଡ଼ିଶା ପ୍ରଦେଶ ଆମ୍ଭର ।
ସ୍ୱରଗରୁ ଅମ୍ଭ ଘର ସୁନ୍ଦର । ୮୦ ।
ଆସ ସକଳେ ଏକାଠି ରହିବା ।
କାହା ପରପନ୍ଦାରେ ରହିଥିବା । ୮୧ ।

ଜାତି ଉନ୍ନତି ଦିଗେ ଦେବା ମନ ।
ତେବେ ବଢ଼ିବ ଜାତୀୟ ଜୀବନ ।୮୨।
ଇଚ୍ଛା କଲେ ସୀମା ଗାର ଘୁଞ୍ଚିବ ।
କେତେକାଳ କିଏ ରୋକି ପାରିବ ।୮୩।
ନିଜ ପ୍ରାଚୀନ କୀରତି ସୁମର ।
ଜାଗି ଉଠିବ ଭାଇ ନବ ବଳ ।୮୪।
ଶୁଭ୍ର ମିଳନ ମନ୍ତ୍ରସିଦ୍ଧ ସାଧନ ।
ପୂର୍ବ ଉତ୍ତର ପ୍ରାନ୍ତର ଗିରି ବନ ।୮୫।
ଥରେ ଜାଗିଲେ ଜାଗିବ ଏ ଜାତି ।
ତେଜ ବେଗେ ଏ ଆତ୍ମଧାତ୍ରୀ ମାତି ।୮୬।
ଯାହା ହେଉଛି ହେଉ ସର୍ବଗଲେ ।
ଯଥା ତଥା ରହିବା କାଳେ କାଳେ ।୮୭।
ତେଣୁ କରୁଛି ଭାଇ ନିବେଦନ ।
ଯହିଁ ଅଛ ହେ ଉତ୍କଳ ସନ୍ତାନ ।୮୮।
ସର୍ବେ ଏକସ୍ୱରରେ ଦାବୀ କର ।
ବେଗେ ଘୁଞ୍ଚାଅ ଆତ୍ମ ସୀମା ଗାର ।୮୯।
ଜାତିସ୍ମର ଭାବ ଯେବେ ଜାଗିବ ।
ଭାଇ କେବେହେଁ ରହି ନ ପାରିବ ।୯୦।
ଅତି ଶିଶୁ କାଳର ବ୍ୟାଘ୍ର ପିଲ୍ଲ ।
ରହୁ ରହୁ ଛେଳି ପଲେ ରହିଲ୍ଲ ।୯୧।
ଜାତିସ୍ମର ଜ୍ଞାନ ତାର ହଜିଲ୍ଲ ।
ବାଘ ପିଲ୍ଲ ବୋଲି ସେ ଭୁଲିଗଲ୍ଲ ।୯୨।
ସଙ୍ଗ ଦୋଷରୁ ଛେଳି ପାଲଟିଲ୍ଲ ।
ଛେଳି ପ୍ରକୃତି ବେଶରେ ହୋଇଲ୍ଲ ।୯୩।

ରହୁଥିଲା ଏମନ୍ତେ ବାଘ ଶିଶୁ ।
ମୁନି ନାରଦ ଦେଖିଲେକ ଆସୁ । ୯୪ ।
ଦେଖି ଏ ଅଦ୍ଭୋରୂପ ମହାଧ୍ୱନି ।
ବଡ଼ ଆଶ୍ଚର୍ଯ୍ୟ ମଣିଲେକ ମୁନି । ୯୫ ।
ଏ ତ ଅଦଭୂତ ଦେଖା ନ ଥିଲା ।
ବାଘ ପିଲାଟା ଛେଳି ପାଲଟିଲା । ୯୬ ।
ଖାଦ୍ୟ ଖାଦକ ସମ୍ବନ୍ଧ ଯାହାର ।
ବିପରୀତ ଦେଖେ କେଉଁ ପ୍ରକାର । ୯୭ ।
ଚିନ୍ତାକରି ମୁନି କଲେ ସିଦ୍ଧାନ୍ତ ।
ଜାତି ବିସ୍ମୃତି ଘଟିଛି ନିଶ୍ଚିତ । ୯୮ ।
ଯାଇ ବାଘ ପିଲା ପାଶେ ମିଳିଲେ ।
ତୁ ତ ବାଘ ପିଲା ବୋଲି କହିଲେ । ୯୯ ।
ତାକୁ ଚେତାଇ ଦେଲେ ବାର ବାର ।
ସେହୁ ବିଶ୍ୱାସ ନ କଲା ନିକର । ୧୦୦ ।
ମୁନି ବୋଇଲେ ଆସ ମୋର ସଙ୍ଗେ ।
ମୁଖ ଦେଖ ତୋର ଜଳ ତରଙ୍ଗେ । ୧୦୧ ।
କେତେ ଥର ତା ମୁଖ ଦେଖି ଦେଖି ।
ଶେଷେ ସେହୁ ଉଠିଲାକ ଚମକି । ୧୦୨ ।
ଜାତିସ୍ମର ବୃତ୍ତି ହେଲା ଜାଗ୍ରତ ।
ହେଲା ପ୍ରତ୍ୟୟ ବାଘ ପିଲା ସେ ତ । ୧୦୩ ।
ପ୍ରକାଶିଲା ନିଜ ତେଜ ସବେଗେ ।
ଆକ୍ରମିଲା ଛେଳିଙ୍କି ଯାଇ ବେଗେ । ୧୦୪ ।
ଗାଲ ଗଳପ ନୁହେ ଏହା ସତ୍ୟ ।
ବୁଝି ଭଲ ହେ ଏ ଗଳ୍ପ ମହତ୍ତ୍ୱ । ୧୦୫ ।

ଜାତି ପ୍ରେମ ବହ୍ନି ହୃଦେ ଜାଗିବ ।
ଶତସିଂହ ବଳ ବଳେ ହୋଇବ । ୧୦୬ ।
ନିଜେ ନିଜ ଜାତିକି ନ ଚିହ୍ନିଲେ ।
କିସ ଫଳ ଆନ ଯେତେ କହିଲେ । ୧୦୭ ।
ଦେଖ ପାଶ୍ଚାତ୍ୟ ନିଜ ଜାତି ପାଇଁ ।
ପ୍ରାଣ ମୁହୁର୍ତ୍ତ କିସ ନ କରଇ । ୧୦୮ ।
ପ୍ରାଣ ବଳି ଦେଇ ପଶେ ସମରେ ।
ନିଜ ଜାତିକି ରଖିଣ ଆଗରେ । ୧୦୯ ।
ନିଜ ଜାତି ଇଷ୍ଟ ହେବ ସାଧନ ।
ଜଳାଞ୍ଜଳି ଦିଅଇ ଧନ ଜନ । ୧୧୦ ।
ଅକାତରେ ଦିଏ ସବୁ ଆହୁତି ।
ଏକ ଲକ୍ଷ ତାର ଜାତି କୀରତି । ୧୧୧ ।
ନିଜ ଜାତି ହେବ ଶ୍ରେଷ୍ଠ ଗରିଷ୍ଠ ।
ଏଥିପାଇଁ ଲଗିଛି କେତେ ନାଟ । ୧୧୨ ।
ନୁହେ ଅଧମ ଏ ଓଡ଼ିଶା ଜାତି ।
ନ ଥିଲା କି କେବେ ତାର ଶକତି । ୧୧୩ ।
ଥରେ ଦେଖ ହେ ପୂର୍ବ ଇତିହାସ ।
ସ୍ୱର୍ଣ୍ଣାକ୍ଷରେ ରହିଛି ତାର ଯଶ । ୧୧୪ ।
ବଡ଼ ଦେଉଳେ ଉଡ଼ୁଅଛି ବାନା ।
ଉଚ୍ଚେ ଡାକଇ ନିର୍ଘଣ ହୁଅନା । ୧୧୫ ।
ସାମ୍ୟ ମଇତ୍ରୀ ଧରମ ଯାହାର ।
ତାର ତୁଳନା କାହିଁଛି ଆବର । ୧୧୬ ।
ସେହି ଜାତିର ଦାୟାଦ ଓଡ଼ିଆ ।
ନୁହେ କେବଳ କୁଳି ମଜୁରିଆ । ୧୧୭ ।

ଯାର ଶିଳ୍ପକଳା ଅଟେ ଅତୁଳ ।
ତୋଳଥିଲା ଯେ କୋଣାର୍କ ଦେଉଳ । ୧୧୮ ।
କେତେ ରାଇଜୁ କେତେ ଲୋକ ଆସି ।
ଯାର କୀରତି ହେଉଛନ୍ତି ଘୋଷି । ୧୧୯ ।
ଯାଭା ବାଲି ଦ୍ୱୀପେ ଯାର କୀରତି ।
ଅଦ୍ୟାବଧି ଘୋଷୁଛି ନିତି ନିତି । ୧୨୦ ।
ଆଜ ସବୁମନ୍ତେ ହୋଇ ଦୁର୍ବଳ ।
ଏଏ କେଉଁଠି ରହିଛ କେବଳ । ୧୨୧ ।
ଉର ମାଡ଼ୁଛି ଫିଟାଇବ ପାଟି ।
ଉଚେ କହିବ କର ହେ ଏକାଠି । ୧୨୨ ।
ନାହିଁ ସାହସ ଏତକ କହିବ ।
ତେବେ କପରି ଏ ଦୁଃଖ ହରିବ । ୧୨୩ ।
କଏ ପ୍ରାଣ ଦେଉଛି ଦେଶ ପାଇଁ ।
କୋଟି କୋଟି ଧନ ଦିଏ ଉଡ଼ାଇ । ୧୨୪ ।
ସେମାନଙ୍କ ଠାରୁ କି ଆମ୍ଭେ ହୀନ ।
ନାହିଁ ଓଡ଼ିଆ ପିଣ୍ଡେ କି ପରାଣ । ୧୨୫ ।
ନାହିଁ କିଛି ହାତ ଗୋଡ଼ ତାଙ୍କର ।
ଆମ୍ଭ ପରି ସେ ମାନବ ନକର । ୧୨୬ ।
କାହା କିଏ ବାଡ଼ କେ ଘୁଞ୍ଚାଇଲେ ।
ସହି ନ ପାରେ ପିଣ୍ଡେ ପ୍ରାଣ ଥିଲେ । ୧୨୭ ।
କାଟି ଓଡ଼ିଶା କଲେ ଖଣ୍ଡ ଖଣ୍ଡ ।
ସର୍ବେ ଦେଖୁଛ ଫିଟୁନାହିଁ ତୁଣ୍ଡ । ୧୨୮ ।
ମଡ଼ା ହେଲେ ଶୁଣି ଉଠି ବସିବ ।
ଏକା ଉତ୍କଳେ ଏ କଥା ସମ୍ଭବ । ୧୨୯ ।

ସିଦ୍ଧଭୂମି ସିଦ୍ଧ ପରି ଜାଗିଛି ।
ଘୋର ରଡ଼ି ଦେଇ ଡାକ ଛାଡ଼ୁଛି । ୧୩୦ ।
କରୁଅଛି ତୁମୁଳ ଆନ୍ଦୋଳନ ।
ସବୁ ଅଞ୍ଚଳ କଲେ ଏହି ପଣ । ୧୩୧ ।
ଆସି ମିଶିବ ବିଚ୍ଛିନ୍ନ ଅଞ୍ଚଳ ।
ମନ କାମନା ହୋଇବ ସଫଳ । ୧୩୨ ।
ତେଣୁ ଡାକୁଛି ଉତ୍କଳ ଜନନୀ ।
ଶୁଣ ସନ୍ତାନେ କରୁଣ କାହାଣୀ । ୧୩୩ ।
ଅଛ କୋଟିଏ ସନ୍ତାନ ମୋହର ।
ହୁଅ ଗୋଟିଏ କର ହେ ବଗୁର । ୧୩୪ ।
ଲଗୁନାହିଁ କ ପରଣେ ପରଶ ।
ଜାଗିଉଠ ହେ ଧର ହେ ସାହସ । ୧୩୫ ।
ଥିଲେ ସାହସ ଉତ୍ସାହ ଉଦ୍ୟମ ।
ବାହୁବଳେ ତିନପୁର ଜିଣିମ । ୧୩୬ ।
ବରଷକେ ଥରେ ଚେଇଁ ଉଠିବ ।
ପୁଣି କେତେକ ବରଷ ଶୋଇବ । ୧୩୭ ।
ଥରେ ମେଳା ମଣ୍ଡପ ପରେ ବସି ।
କହି ବଚନ ହେଉଅଛ ଖୁସି । ୧୩୮ ।
ଖାଲି ବଚନ ଯୁଦ୍ଧ କରୁଥିଲେ ।
ଦଶା ଫେରିବ ନାହିଁ କାଳେ କାଳେ । ୧୩୯ ।
କର୍ମ କ୍ଷେତ୍ରକୁ ହୁଅ ଆଗଭର ।
କର ବଞ୍ଚିତ କରମ ନକର । ୧୪୦ ।
ଘରେ ଘରେ ମିଳନ ଶଙ୍ଖଧ୍ୱନି ।
କର ଜାଗ ହେ ପୁରୁଷ ରମଣୀ । ୧୪୧ ।

ଜାଗି ଉଠ ହେ ଯୁବକ ସକଳ ।
ତୁମ୍ଭେ ଦେଶର ମେରୁଦଣ୍ଡ ବଳ । ୧୪୨ ।
ତୁମ୍ଭଠାରେ ଅଛି ମୋର ଭରସା ।
ସହି ପାରବ ନାହିଁ ଏ ଦୁର୍ଦ୍ଦଶା । ୧୪୩ ।
ମାତା ଦୁର୍ଦ୍ଦଶା ଆଜ କେତେକାଳ ।
ସହୁଥିବ ନୋହିଲେ ସେ ବିକଳ । ୧୪୪ ।
ହାଅ ଗୁଡିକ ମିଶାଇ ଗୁଡିରେ ।
ମାତି ଯାଅ ଏ ମିଳନ ସମରେ । ୧୪୫ ।
ମନ ଦେଲେ କେତେ ଧନ ମିଳିବ ।
ତ୍ୟାଗ କଲେ ସିନା ବଡ଼ ହୋଇବ । ୧୪୬ ।
ଧନ ଜନ ମନ କଲେ ଏକାଠି ।
ସୀମାଗାର ବନ୍ଧନ ଯିବ ତୁଟି । ୧୪୭ ।
ହାଅ ମିଶାଇ ଯେଝାର ଶକତି ।
କଲେ ଲଭିବ ଏ ଦେଶ ମୁକତି । ୧୪୮ ।
ଯାଅ ଦରିଆ ପାରେ ନେଡ଼ା ହେଲେ ।
ଥରେ ପାରିଲା ଯଜା ଯାଇଥିଲେ । ୧୪୯ ।
କରି ଆସିଲେ ଅଧା ହଧା କାମ ।
ପୂର୍ଣ୍ଣ କରିବା ତାଙ୍କର ଧରମ । ୧୫୦ ।
କେତେ ପୁଅ ଏ ମିଳନ ମନାସି ।
ଅକାଳରେ ହୋଇଲେ ସ୍ୱର୍ଗବାସୀ । ୧୫୧ ।
ଆଉ ଅଛ ତ କୋଟିଏ ସନ୍ତାନ ।
କର ତାଙ୍କ ପଥ ଅନୁସରଣ । ୧୫୨ ।
ମୋର ବକ୍ଷେ ବିରାଜେ ଜଗନ୍ନାଥ ।
ପୂର୍ଣ୍ଣ କରିବେ ତବ ମନୋରଥ । ୧୫୩ ।

ତାଙ୍କୁ ଡାକଲେ ଦେବେ ସବୁ ବଳ ।
ଯାଙ୍କ ଯୁଦ୍ଧେ କରିଥିଲେ ସମର । ୧୫୪ ।
ତାଙ୍କୁ ସୁମରି କର ଆନ୍ଦୋଳନ ।
ହେବ ବିଚ୍ଛିନ୍ନ ଅଞ୍ଚଳ ମିଳନ । ୧୫୫ ।
ନୀଳଚକ୍ର ଉପରେ ଉଡ଼େ କେତ ।
ଗୃହି ତାହାକୁ କର ହେ ଶପଥ । ୧୫୬ ।
ନ ମିଶିବା ଯାଏ ସବୁ ଅଞ୍ଚଳ ।
ନିଦ ନ ମାଡ଼ୁ ହୁଅ ହେ ଚଞ୍ଚଳ । ୧୫୭ ।
ତେଜ ଆଳସ୍ୟ ହୁଅ କର୍ମବୀର ।
କରମରୁ ଉପୁଜନ୍ତି ସଂସାର । ୧୫୮ ।
କର୍ମ କରିବା ପାଇଁ କଲେ ମନ ।
କରି ପାରିବ ଅସାଧ୍ୟ ସାଧନ । ୧୫୯ ।
କହି କହି ମୋର ଦୁଃଖ ଦୁର୍ଦ୍ଦଶା ।
କଣ୍ଠ ଶୁଖି ଯାଉଛି ଉଡ଼େ ହଂସା । ୧୬୦ ।
ନିଜ କର୍ତ୍ତବ୍ୟ ଧରମ କରିବ ।
ମାତା ବଚନେ ସାହାସ ବଢିବ । ୧୬୧ ।
ମାତୃଭୂମି ଧୂଳି ଶିରେ ଲଗାଇ ।
କର୍ମକ୍ଷେତ୍ରରେ ପଶ ହେ ଝସାଇ । ୧୬୨ ।
ଆଉ ଅଧିକ କହିଲେ ବିଫଳ ।
ଜାଗିଉଠରେ ନବୀନ ଉତ୍କଳ । ୨୬୩ ।

* ସମାପ୍ତ *

ମୁଦ୍ରାକର-ଶ୍ରୀ ଚିନ୍ତାମଣି ମିଶ୍ର, ନବଜୀବନ ପ୍ରେସ, କଟକ-୨

